ଶ୍ରୀ ନାରାୟଣ ବୀରବର ସାମନ୍ତଙ୍କ

# ଜୀବନ-ସ୍ମୃତି

[ଏକ ରାଜର୍ଷି-ପ୍ରତିମ ବିପ୍ଳବୀ ଜୀବନର ବିରଳ ଆଲେଖ୍ୟ]

ସଂପାଦନା :

ବାଣୀ ସାମନ୍ତ

ଗ୍ରନ୍ଥମନ୍ଦିର

ପ୍ରକାଶକ :
ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ପ୍ରକାଶନ ପରିଚାଳନା : ଅଭିରାମ ମହାପାତ୍ର

ଡି.ଟି.ପି. ଓ ମୁଦ୍ରଣ :
ତପନ କୁମାର ମହାପାତ୍ର
**ଅପ୍‌ଟିମା ପ୍ରିଣ୍ଟ୍‌ସ,** ସୂତାହାଟ, କଟକ-୧

ମୁଦ୍ରଣ : ୩୦.୧.୨୦୦୬
(୭୦୦)

ମୂଲ୍ୟ : ଟ ୧୫୦/-
ସାଦା ବନ୍ଧେଇ : ଟ ୧୩୫/-

*[Printed in 70 gsm paper]*

C:\Grantha\Smruti.pm5 (M-1)

# କୃତଜ୍ଞତା

ପିତୃଦେବ ଶ୍ରୀ ନାରାୟଣ ବୀରବର ସାମନ୍ତ(୧୯୦୦-୧୯୯୯)ଙ୍କର ଏ ଜୀବନ-ସ୍ମୃତି ସଙ୍କଳନ ଓ ସଂପାଦନାରେ ମୋତେ ସାହାଯ୍ୟ ଓ ସହାନୁଭୂତି ପ୍ରଦାନ କରିଥିବା ସମସ୍ତ ଶୁଭେଚ୍ଛୁଙ୍କୁ ଶ୍ରଦ୍ଧାଭରେ ସ୍ମରଣ କରୁଛି ।

ମନୋଜଭାଇ ଭୂମିକା ଲେଖିଥିବା ଯୋଗୁଁ ଏବଂ ବିଜିଅପା(ଅଧ୍ୟାପିକା ବିଜୟିନୀ ସିଂହଦେଓ) ମାମାଙ୍କ ଉପରେ ଏକ ସ୍ୱତନ୍ତ୍ର ନିବନ୍ଧ ରଚନାକରି ବହିଟିକୁ ଅପେକ୍ଷାକୃତ ଅଧିକ ତଥ୍ୟସମୃଦ୍ଧ କରିଥିବା ଯୋଗୁଁ ଏବଂ 'ଗ୍ରନ୍ଥମନ୍ଦିର'ର ସ୍ୱତ୍ତ୍ୱାଧିକାରୀ ଶ୍ରୀ ଅଭିରାମ ମହାପାତ୍ର ଏବଂ ତାଙ୍କ ସୁଯୋଗ୍ୟ ସହକାରୀ ଶ୍ରୀ ମନୋଜ କୁମାର ମହାପାତ୍ରଙ୍କ ବିଶେଷ ଉତ୍ସାହଯୋଗୁଁ, ଭ୍ରାତୃପ୍ରତିମ ଶ୍ରୀ ଗୌରମୋହନ ସାହୁ (ଗଉଭାଇ) ବହୁ ଅଜ୍ଞାତ ଓ ବ୍ୟକ୍ତିଗତ ତଥ୍ୟ ପ୍ରଦାନ କରିଥିବା ହେତୁ ତଥା ବିଶିଷ୍ଟ ସମାଜସେବୀ ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକଙ୍କ ଲିଖିତ'ବାବା' ଏବଂ ବାବାଙ୍କ ମହାଯାତ୍ରାର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ସମ୍ୱଳିତ କଲ୍ୟାଣୀୟା ଗୋଲାପରାଣୀ ସାହୁଙ୍କ 'ଶତାବ୍ଦୀର ସୂର୍ଯ୍ୟାସ୍ତ'' ଏଥିରେ ଅନ୍ତର୍ଭୁକ୍ତ କରିଥିବାଯୋଗୁଁ ସେମାନଙ୍କ ପାଖରେ ମୁଁ କୃତଜ୍ଞ ।

ପାରାଦ୍ୱୀପଗଡ଼ | **ବାଣୀ ସାମନ୍ତ**

# ସୂଚୀ



—

# ଭୂମିକା

ଶ୍ରୀ ନାରାୟଣ ବୀରବର ସାମନ୍ତ ଜଣେ ବିରଳ ଶ୍ରେଣୀର ବ୍ୟକ୍ତିତ୍ୱ— ଏ ସଂପର୍କରେ ଏ ଲେଖକକୁ ପ୍ରଥମେ ସୂଚନା ବି ଦେଇଥିଲେ ଜଣେ ବିରଳ ପ୍ରତିଭାବନ୍ତ ଲେଖକ, ଶ୍ରୀ ଗୋପୀନାଥ ମହାନ୍ତି । ଭାବାକୁଳ ଢଙ୍ଗରେ ସେ ଯାହା କହିଥିଲେ, ତା'ର ତଥ୍ୟଗତ ଦିଗଟି କ୍ଷୀଣ ଭାବରେ ମାତ୍ର ମନେଅଛି— କିନ୍ତୁ ଗୋପୀନାଥ ବାବୁଙ୍କ ସଶ୍ରଦ୍ଧ ମନ୍ତବ୍ୟ ଭୁଲିନାହିଁ । ତଥ୍ୟ ହେଲା, ସରକାରୀ ସାହାଯ୍ୟ ପାଇଁ ଆବେଦନ ନକରି ସାମନ୍ତ ମହାଶୟ ସଂପୃକ୍ତ ଗ୍ରାମବାସୀମାନଙ୍କୁ ଉଦ୍‌ବୁଦ୍ଧକରି ଗୋଟାଏ ବନ୍ଧ ନିର୍ମାଣ କରିଥିଲେ ଯାହା ସ୍ଥାନୀୟ ଜମିଜମାକୁ ପ୍ଲାବନରୁ ରକ୍ଷା କରିବ । ସାମୂହିକ ଶ୍ରମଦାନ ସତ୍ତ୍ୱେ ସାମନ୍ତଙ୍କୁ ବହୁ ଅର୍ଥ ବ୍ୟୟ କରିବାକୁ ପଡ଼ିଥିଲା । କିନ୍ତୁ ଯୋଜନାଟି ସଂପୂର୍ଣ୍ଣ ନ ହେଉଣୁ ହେଲା ପ୍ରବଳ ବାରିପାତ, ଅଚାନକ ଆସିଲା ବନ୍ୟା । ଭୁଶୁଡ଼ି ପଡ଼ିଲା ସେ ବିପୁଳ ମେହେନତ୍‌ର ପ୍ରାକାର ।

ସାମନ୍ତ ନିଜ ଶିବିର ଭିତରେ ବସିରହିଲେ; କେତେଦିନ ଧରି ଖାଦ୍ୟ ଜଳ ସ୍ପର୍ଶ କଲେ ନାହିଁ ।

ସେତେବେଳର ମାଜିଷ୍ଟ୍ରେଟ ଗୋପୀନାଥବାବୁଙ୍କ ମନ୍ତବ୍ୟ— ''ସେ ନିର୍ବାକ, ପ୍ରଚାରଶୂନ୍ୟ ଅନଶନର ମର୍ଯ୍ୟାଦା କିଏ ହୃଦୟଙ୍ଗମ କରିବ ? ସାମନ୍ତଙ୍କ ଅଭିଯୋଗରେ ଅଭିଯୁକ୍ତ କେହି ନାହିଁ; ତାଙ୍କ ଅଭିମାନର ଶରବ୍ୟ କେହି ନାହିଁ । ସେ ଏକ ବିରଳ ଚରିତ୍ରର ବିରଳ ଅଭିବ୍ୟକ୍ତି ।''

ପଇଁଚାଳିଶ ବର୍ଷ ପରେ ଆଜି ଯାହା ଲିପିବଦ୍ଧ କଲି, ତାହା ଗୋପୀନାଥବାବୁଙ୍କ ଭାଷା ଓ ଭାବର ଅବିକଳ-ପ୍ରାୟ ପ୍ରତିଲିପି ।

ଗୋପୀନାଥବାବୁଙ୍କ ବସାରୁ ପ୍ରତ୍ୟାବର୍ତ୍ତନ ପଥରେ ମନେହୋଇଥିଲା ସାମନ୍ତଙ୍କ ଚରିତ୍ର ତଥା ମାନସିକତାର ଯେଉଁ ଏକ ସାଙ୍କେତିକ ଝଲକ ସେ ଖେଳାଇଦେଲେ, ତାକୁ ଅନୁସରଣ କରି ସେ ଚରିତ୍ରର ତଥ୍ୟଗତ ଜୀବନୀ ଲେଖାଯାଇପାରେନା; ଲେଖାଯାଇପାରେ ଏକ ପ୍ରାଣବନ୍ତ ଉପନ୍ୟାସ । ସୃଜନଶୀଳ କଳାହିଁ ସେ ଚରିତ୍ରର ଭାବଗତ ପରିବେଷଣ କରିପାରିବ; ତଥ୍ୟଗତ ଘଟଣା ବର୍ଣ୍ଣନ କରିପାରିବ ନାହିଁ ।

ତଥାପି ଇତିହାସ ପାଇଁ ତଥ୍ୟର ଭୂମିକା ଅପରିହାର୍ଯ୍ୟ । ବହୁ ତାତ୍ପର୍ଯ୍ୟପୂର୍ଣ୍ଣ ତଥ୍ୟ ମହାକାଳର ଦିଗ୍‌ବଳୟରେ ଅଦୃଶ୍ୟ ହୋଇଯାଏ, ବିଶେଷତଃ ସେ ତଥ୍ୟର ସ୍ରଷ୍ଟା ବା ଦ୍ରଷ୍ଟା ଯଦି ନିଜର କୃତିତ୍ୱ ପ୍ରତି ବିତସ୍ପୃହ ହୋଇଥିବ; ନିଜକୁ ଜାହିର କରିବା ଦିଗରେ ଯଦି ତା'ର କୁଣ୍ଠା ହୋଇଥିବ ସ୍ୱତଃସ୍ଫୂର୍ତ୍ତ ।

ସାମନ୍ତ ଥିଲେ ସେହି ସ୍ୱଳ୍ପ-ସଦସ୍ୟ-ସମ୍ବଳିତ କୁଣ୍ଠିତ ଗୋଷ୍ଠୀର ଅନ୍ୟତମ । ୧୯୫୯-୬୨ ଭିତରେ ''ଦିଗନ୍ତ'' ସଂପାଦନା ଅବକାଶରେ ତାଙ୍କୁ ପ୍ରବର୍ତ୍ତାଇ ତାଙ୍କ ''ଜୀବନ ସ୍ମୃତି''ର ଅର୍ଦ୍ଧାଧିକ ଲେଖାଇପାରିଥିଲି । ବହୁବର୍ଷ ତାହା ସେମିତି ଅସଂପୂର୍ଣ୍ଣ ରହିବା ଉତ୍ତାରୁ, ଆନନ୍ଦର କଥା, ଜୀବନର ଶେଷ କେତେବର୍ଷ ଯାହାର ଅନନ୍ୟ ଜନନୀସମ୍ଭବ ଯତ୍ନ ଓ ପରିଚର୍ଯ୍ୟା ଭିତରେ ସାମନ୍ତ ନିଜକୁ ଶିଶୁଭଳି ସମର୍ପି ଦେଇଥିଲେ, ସେହି ସୁକନ୍ୟା ବାଣୀ ତାଙ୍କଦ୍ୱାରା ତାହା ସଂପୂର୍ଣ୍ଣ କରାଇନେଇପାରିଲେ ।

ତାଙ୍କ ଜୀବନସ୍ମୃତି ପଢ଼ିବାବେଳେ କିନ୍ତୁ ଏ ଲେଖକର ମନେହୋଇଛି ଏବଂ ତାଙ୍କୁ ଜାଣିଥିବା ଯେ କୌଣସି ଅନ୍ତରଙ୍ଗ ବ୍ୟକ୍ତିର ମନେହେବ— ସେ ବହୁ ମାତ୍ରାରେ ଅବ୍ୟକ୍ତହିଁ ରହିଗଲେ । ତାଙ୍କ ଜୀବନର ଇତିହାସ ଲିପିବଦ୍ଧ କଲାଭଳି କୃତିତ୍ୱର ସଂଖ୍ୟା କମ୍ ନୁହେଁ । ଗାନ୍ଧିଙ୍କ ଆହ୍ୱାନରେ କଲେଜ୍ ତ୍ୟାଗ କରି ସ୍ୱାଧୀନତା ଆନ୍ଦୋଳନରେ ଝାସଦେବାରେ ସେ ଭାରତର ପ୍ରଥମ ଛାତ୍ର; ଜାତିଧର୍ମ ନିର୍ବିଶେଷରେ ସ୍ଥାନୀୟ ଜନସାଧାରଣଙ୍କୁ ମାନବତାରେ ଉଦ୍‌ବୁଦ୍ଧ କରି ଏକ ସୁପ୍ରାଚୀନ ଦେବାଳୟ ହରିଜନ ସଂପ୍ରଦାୟପାଇଁ ଉନ୍ମୁକ୍ତ କରିପାରିବାରେ ସେ ଭାରତରେ ପ୍ରଥମ ସମାଜ-ସଂସ୍କାରକ ।

ସେ ଆଠଗଡ଼ ରାଜପରିବାରକୁ ପୋଷ୍ୟପୁତ୍ର ହୋଇ ଆସିବା ପରେ ରେଭେନ୍‌ସା କଲେଜ ଜୀବନରେହିଁ ଇଂରେଜଶାସକମାନଙ୍କ ବିରୁଦ୍ଧରେ ଜନଆନ୍ଦୋଳନ ସଂଗଠନ କରିବା ଫଳରେ ଆଠଗଡ଼ ଭିତରକୁ ତାଙ୍କ ପ୍ରବେଶ ହେଲା ନିଷିଦ୍ଧ ଏବଂ ସେ ଆସି ଉପନୀତ ହେଲେ ତାଙ୍କ ଆଦିବଂଶର ମୁଖ୍ୟ ଶାଖା କୁଜଙ୍ଗରାଜପରିବାରର ଅତୀତର ରାଜଧାନୀ ପାରାଦ୍ୱୀପଗଡ଼ରେ । କୁଜଙ୍ଗର ଶେଷ ରାଜା ଶ୍ରୀଜଗଦୀଶ କ୍ଷତ୍ର ପରଲୋକଗମନ କରିଥାନ୍ତି ଏବଂ ରାଣୀ ଶ୍ରୀମତୀ ଭାବବତୀ ପାଟମହାଦେଈ ସାମନ୍ତଙ୍କୁ କନ୍ୟାଦାନ କରି ନିଜର ଉତ୍ତରାଧିକାରୀ ରୂପେ ଗ୍ରହଣ କରିବା ପୂର୍ବରୁ ହିଁ ସାମନ୍ତ ସେ ମହନୀୟା ରାଣୀଙ୍କୁ ପ୍ରଭାବିତ କରି ସେ ମୂଳକରେ ସ୍ୱାଧୀନତା ଆନ୍ଦୋଳନର ଏକ ବିଶେଷ ପର୍ଯ୍ୟାୟକୁ ଯେଉଁଭଳି ସାଫଲ୍ୟମଣ୍ଡିତ କରିଥିଲେ, ତା'ର ଯଟାନ୍ତର ନାହିଁ । ବସ୍ତୁତଃ ସମଗ୍ର ଭାରତର ରାଜପରିବାରମାନଙ୍କ ମଧ୍ୟରୁ ଏକମାତ୍ର ରାଣୀ ଭାବବତୀ ପାଟମହାଦେଈ ଲବଣ ସତ୍ୟାଗ୍ରହରେ ନେତୃତ୍ୱ ନେଇଥିଲେ । ଏହା ଶ୍ରୀ ସାମନ୍ତଙ୍କରହିଁ ଏକ ଐତିହାସିକ କୃତିତ୍ୱ ।

ବିହାର ଏବଂ ଓଡ଼ିଶା ଏକତ୍ର ଥିବାବେଳେ ପ୍ରାକ୍-ସ୍ୱାଧୀନତା ଯୁଗରେ ସାମନ୍ତ ସେ ମିଳିତ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସ୍ୱାଧୀନତା ସଂଗ୍ରାମର ମୁଖ୍ୟ ନାୟକମାନଙ୍କ ସହ ସେ ବିଖ୍ୟାତ ହଜାରିବାଗ ଜେଲ୍‌ରେ କାରାରୁଦ୍ଧ ହୋଇଥିଲେ । ସ୍ୱାଧୀନତା ପରେ ସେ ଏକାଧିକଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ ବିପୁଳ ଜନସମର୍ଥନ ପାଇ । ସେ ମନ୍ତ୍ରୀ ହେବାର ପ୍ରଶ୍ନ ନଥିଲା; ସମସ୍ତେ ଅନୁଭବ କରୁଥିଲେ

ତାଙ୍କ ପର୍ଯ୍ୟାୟର ବିଚିତ୍ର ନେତା, ସନ୍ଥ ଏବଂ ସଦାଶୟଙ୍କୁ ସେ ଆସନ ଦେବା ତାଙ୍କ ବ୍ୟକ୍ତିତ୍ୱପ୍ରତି ଅନ୍ୟାୟ ହେବ । ଅଥଚ ତାଙ୍କୁ କୌଣସି ଏକ ବିଶେଷ ସମ୍ମାନଜନକ ସ୍ଥାନ ନଦେଲେ ଅଧିକାଂଶ ନେତାଙ୍କୁ ଅଡୁଆ ଲାଗିବ । ପ୍ରସ୍ତାବ ହେଲା, ତାଙ୍କୁ ବାଚସ୍ପତି କରାଯାଉ । କିନ୍ତୁ ଦୀର୍ଘ ସମୟ ବସିରହି ମାନ୍ୟବର ବୃନ୍ଦଙ୍କ ତର୍କବିତର୍କ ଜନିତ ଗର୍ଜନ ଉପରେ ପୌରୋହିତ୍ୟ କରିବା ତାଙ୍କୁ ପୋଷାଇବନାହିଁ । ସାଲିସ୍ ହେଲା– ତାଙ୍କୁ ଉପବାଚସ୍ପତି ରୂପେ ବରଣ କରାଯାଉ । କହିବାବାହୁଲ୍ୟ, ଏସବୁ ହେଉଥିଲା ତାଙ୍କ ଅଗୋଚରରେ । ତାଙ୍କର ପ୍ରତିକ୍ରିୟା ବୋଲି କିଛି ନଥିଲା ।

ପାରାଦ୍ୱୀପ ବନ୍ଦର ତାଙ୍କରି ସ୍ୱପ୍ନ, ଏକଥା ଠିକ୍, କିନ୍ତୁ ସ୍ୱପ୍ନ ମାତ୍ର ନୁହେଁ– ତା'ର ବାସ୍ତବ ପରିକଳ୍ପନା ଓ ଯୋଜନାର ଆଦି ଖସଡ଼ା ତାଙ୍କରିଦ୍ୱାରା ପ୍ରସ୍ତୁତ ହୋଇଥିଲା । ଜୋବ୍ରାରେ ଅବସ୍ଥିତ ତାଙ୍କ ମାଟି ଓ ଚାଳଘର ଥିଲା ଏକ ଅଦ୍ଭୁତ ପ୍ରତିଷ୍ଠାନ । 'କୁଜଙ୍ଗ କୁଟୀର' ନାମରେ ଖ୍ୟାତ, ମହୁବସା ଜାତୀୟ ଏ ଘରର ବିଭିନ୍ନ କୋଠରୀ ଭିତରେ ହୁଏତ ଏକହିଁ ସମୟରେ କମ୍ୟୁନିଷ୍ଟ କର୍ମୀମାନଙ୍କର ଏବଂ କଂଗ୍ରେସର ବୈଠକ ଚାଲିଥିବ । ତୃତୀୟ କୋଠରୀ ଭିତରେ, ଗୋଟାଏ ଦଦରା ଖଟିଆ ଉପରେ ଚକାମାରି ବସିଥିବେ ସାମନ୍ତ– କେବେ ହୁଏତ ଯୋଡ଼ିଏ କୁକୁର କେବେ ବା ବିଲେଇଟିଏ ସମଭିବ୍ୟାହାରେ । ସାମନାରେ ତଳେ ବସିଥିବେ ଦଳମତ ନିର୍ବିଶେଷରେ ମୁଗ୍ଧ ଅନୁଗତବର୍ଗ– କିଏ ବା ଜ୍ୟୋତିଷ, କିଏ ବା ପଣ୍ଡିତ, କିଏ ବା ପାଲାଗାୟକ ଏବଂ ଅଧିକାଂଶ ପ୍ରାକ୍ତନ ସ୍ୱାଧୀନତାସଂଗ୍ରାମୀ । ଗତ ଶତାବ୍ଦୀର ପଞ୍ଚମ ଦଶକରେ ଅନ୍ତତଃ ଦୁଇଥର ଦେଖିଥିଲି, ସାମନ୍ତଙ୍କ ସାମନାରେ, ଖଣ୍ଡିଏ ଟଳଟଳାୟମାନ ଚୌକିରେ ବସିଥାନ୍ତି ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ । ସମ୍ଭବତଃ ସେତିକିବେଳେ ସମ୍ଭବ ହୋଇଥିଲା ସାମନ୍ତଙ୍କ କଳ୍ପନାରୁ ବିଜୁବାବୁଙ୍କ କଳ୍ପନାକୁ ବନ୍ଦର ପ୍ରକଳ୍ପର ସ୍ୱଚ୍ଛନ୍ଦ ଅଭିଯାତ୍ରା ।

କିନ୍ତୁ ସାମନ୍ତଙ୍କ ବିଶେଷତ୍ୱର ଆକଳନ ଏହିସବୁ ଜଣା ଅଜଣା ସ୍ଥୂଳ କୃତିତ୍ୱର ମୂଲ୍ୟାୟନଦ୍ୱାରା ସମ୍ଭବପର ନୁହେଁ । ତାଙ୍କ ମହତ୍ୱ ଏବଂ ସ୍ୱଭାବଗତ ତ୍ୟାଗଶୀଳତାର ବିଚ୍ଛୁରଣ ଘଟୁଥାଏ ଅସଂଖ୍ୟ ଛୋଟ ଛୋଟ ଘଟଣା ଭିତରେ । ସେସବୁର ସାକ୍ଷ୍ୟ ମିଳୁଥାଏ ଅନୁଭବୀମାନଙ୍କ କୃତଜ୍ଞ ଆତ୍ମ-କଥନ ଭିତରେ– ଲିଖିତ ଦଲିଲ୍‌ରେ ନୁହେଁ । ସେ ସାକ୍ଷୀବର୍ଗଙ୍କ ସଂଖ୍ୟା କ୍ରମେ କ୍ରମେ ହ୍ରାସହୋଇଚାଲିଛି । ସେସବୁ କମ୍ର ଅନୁଭୂତିର ବିବରଣୀ ମଧ୍ୟ କ୍ରମେ ବିଲୁପ୍ତ ହୋଇଯିବ ।

ଏଠାରେ ଗୋଟାଏ ମାତ୍ର ନମୂନା ଉଲ୍ଲେଖ କରାଯାଇପାରେ ସଂବେଦନଶୀଳ ପାଠକମାନଙ୍କ ପାଇଁ । ଘଟଣାଟିର ଲେଖକ ସାମନ୍ତଙ୍କ ବିଶ୍ୱସ୍ତ ରାଜନୈତିକ ସହକାରୀ ଶ୍ରୀ ହରେକୃଷ୍ଣ ସାହୁଙ୍କ ପୁତ୍ର ଶ୍ରୀ ଗୌରମୋହନ ସାହୁ । ସାମନ୍ତ ସର୍ବଦା କ୍ଷମତାକୁ ଏଡ଼ାଇ ରହୁଥିଲେ; କିନ୍ତୁ ତାଙ୍କ ଅନୁରୋଧ ବା ସୁପାରିସ୍‌ପ୍ରତି ସର୍ବଦା ଗୁରୁତ୍ୱ ଦେଉଥିଲେ କ୍ଷମତାସୀନମାନେ । କାରଣ ଅତି ସହଜ– ନିଜର ସ୍ୱାର୍ଥ ତ ଦୂରର କଥା, ସାମାନ୍ୟ

ସ୍ୱାଚ୍ଛନ୍ଦ୍ୟ ପାଇଁ ମଧ୍ୟ ସେ କାହାରି ଅନୁଗ୍ରହପ୍ରାର୍ଥୀ ହେବେ ନାହିଁ– ଏତକ ସ୍ୱତଃସ୍ଫୂର୍ତ୍ତ ଭାବରେ ସଭିଏଁ ବୁଝିପାରୁଥିଲେ ।

ଗୌରମୋହନ ବାବୁଙ୍କ କୌଣସି ବନ୍ଧୁଙ୍କର କିଛି ସମସ୍ୟା ଉପୁଜିଛି । ସବାନ୍ଧବ ଗୌରମୋହନ ବାବୁ ସାମନ୍ତଙ୍କୁ ନେଇ ଭୁବନେଶ୍ୱରରେ ଜଣେ ମନ୍ତ୍ରୀଙ୍କୁ ଭେଟିବା କଥା । କୁଜଙ୍ଗ ବଜାରରେ ଗାଡ଼ିଟିଏର ବ୍ୟବସ୍ଥା ହୋଇଛି । ସେ ନେବ ଦୁଇଶହ ଟଙ୍କା । ସାମନ୍ତ କିନ୍ତୁ ଗାଡ଼ିରେ ନବସି ଏଣେତେଣେ ଅନାଉଛନ୍ତି । ସାଙ୍ଗରେ ଆଉ କାହାକୁ ଭୁବନେଶ୍ୱର ନେଇଯିବାକୁ କଥା ଦେଇଛନ୍ତି କି– ଗୌରମୋହନ ବାବୁ ବୁଝିପାରୁନାହାନ୍ତି ! କିଛି ସମୟ ପରେ ପହଞ୍ଚିଲେ ଜଣେ ବୃଦ୍ଧ । ସାମନ୍ତ ଗୌରମୋହନ ବାବୁଙ୍କଠୁଁ ସେ ଟଙ୍କା ଦୁଇଶହ ଧରିନେଇ ବୃଦ୍ଧଙ୍କୁ ଦେଇଦେଲେ । ଅଶ୍ରୁ ସମ୍ବରଣକରି ବୃଦ୍ଧ ତରବର ହୋଇ ଚାଲିଗଲେ । ବସ୍‌ଟିଏ ଅଟକାଇ ସାମନ୍ତ ସେଥିରେ ଉଠିପଡ଼ିଲେ ଏବଂ ଅଗତ୍ୟା ଗୌରମୋହନବାବୁ ଏବଂ ତାଙ୍କ ବନ୍ଧୁ ମଧ୍ୟ ତାହାହିଁ କଲେ । କୈଫିୟତ୍ ଦେଲେ ସାମନ୍ତ : ''ଲୋକଟିର ପୁଅକୁ କୁକୁର କାମୁଡ଼ିଛି– ଚିକିତ୍ସା ଜରୁରୀ । ସେତକ ଅର୍ଥ ତା'ପାଇଁ ବହୁତ କାମଦେବ । ଆମେ ଟଙ୍କା କେତୁଟାରେ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଯିବା– କାର୍ ଦରକାର କ'ଣ ?''

ଗୌରମୋହନବାବୁ ଏଭଳି ବହୁ ଘଟଣାର ସାକ୍ଷୀ । ସାମନ୍ତ ସର୍ବଦା ରିକ୍ତହସ୍ତ । ପେନ୍‌ସନ୍ ଟଙ୍କା ପହଞ୍ଚିବା ପୂର୍ବରୁ ଭିନ୍ନ ଭିନ୍ନ ଅଭାବୀ ଲୋକଙ୍କୁ ସେ ଯେତିକି ଲେଖାଏଁ ଦେବାପାଇଁ ପ୍ରତିଶ୍ରୁତ ହୋଇଥାନ୍ତି, ମିଳୁଥିବା ପରିମାଣ ସେପାଇଁ ଯଥେଷ୍ଟ ନହେଲେ ନିଜ ହାତଘଣ୍ଟା ବା ଛୋଟ ରେଡ଼ିଓଟି ବିକ୍ରିକରିବା ନିମନ୍ତେ କାହାରି ହାତରେ ବଜାରକୁ ପଠାଇଦିଅନ୍ତି ।

ଜୀବନବ୍ୟାପୀ ସହସ୍ରାଧିକ ଏଭଳି ତ୍ୟାଗର ଶେଷ ଦୃଷ୍ଟାନ୍ତଟି ପାଇଥିଲି ତାଙ୍କ ପ୍ରୟାଣ ପରେ ପରେ, ପାରାଦ୍ୱୀପରେ । ତାଙ୍କ କ୍ଷେତ୍ରରେ ଗତାନୁଗତିକ ଏ ଘଟଣାଟି ଘଟିଥିଲା ଶେଷଥର ସକାଶେ ସେ ପାରାଦ୍ୱୀପ 'ନଅର'ରେ ଥିବାବେଳେ । ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀ ଅନୁସାରେ, ସେତେବେଳେ ସନ୍ଧ୍ୟା ଘୋଟିଆସିଛି । ଦୁଃସ୍ଥ ଲୋକଟିଏ ଆସି ବାରନ୍ଦାରେ ଚକାସୀନ ସାମନ୍ତଙ୍କୁ ଜୁହାରହେଲା । ତା'ର ସାମାନ୍ୟ କିଛି ଦରକାର । ସାମନ୍ତ ନିଜ ଖଦଡ଼ଥଳି ଦରାଣ୍ଡିଲେ । ଅଳ୍ପ ରେଜା ବାହାରିଲା– ଦାନ ପାଇଁ ଯଥେଷ୍ଟ ନୁହେଁ । ହଠାତ୍ ତାଙ୍କ ଆଖିରେ ପଡ଼ିଲା ମାମାଙ୍କ (ଶ୍ରୀମତୀ ରତ୍ନମାଳି ଜେମା) ସଦ୍ୟ କ୍ରୀତ ଗୋଟିଏ ବଡ଼ ଧରଣର ପିତଳ ଗଡ଼ୁ । ଦୁସ୍ଥକୁ ସେ ନିର୍ଦ୍ଦେଶ ଦେଲେ, ''ସେଇଟା ଚଟାପଟ ନେଇଯାଅ ।'' କେଉଁ ଦୋକାନରେ ଦେଲେ ଉପଯୁକ୍ତ ମୂଲ୍ୟ ମିଳିବ, ସେକଥା ବି କହିଦେଲେ । ଲୋକଟି ଦ୍ୱିଧା କରିବାର ଦେଖି ସେ ନିଜେ ଉଠିପଡ଼ି ପାତ୍ରଟି ତାକୁ ଧରାଇଦେଇ ତା' ପିଠି ଥାପୁଡ଼େଇ ଫାଟକଆଡ଼େ ତା'ର ଗତି ନିର୍ଣ୍ଣୟ କରିଦେଲେ ।

କିଛି ସମୟ ପରେ ମାମା ଆସି ସମ୍ଭବତଃ ଗୋଡ଼ ଧୋଇବା ନିମନ୍ତେ ଗଡୁଟି ଖୋଜିବା ବେଳକୁ ସାମନ୍ତ କୌଣସି ଗୁରୁତର ପ୍ରସଙ୍ଗର ଅବତାରଣା କରି ତାଙ୍କ ଧ୍ୟାନର ମୋଡ଼ ବୁଲାଇଦେଲେ ।

ଏକମାତ୍ର ସାକ୍ଷୀ ଜଣକ ଏହା କହିବା ବେଳେ ନିଜର ଆବେଗ ସମ୍ବରଣ କରିପାରୁନଥିଲେ ।

ତେବେ ସବୁବେଳେ ଯେ ଦୁଃସ୍ଥମାନେହିଁ ତାଙ୍କ ସହାୟତା ଲାଭକରୁଥିଲେ ତାହାନୁହେଁ, ସୁସ୍ଥମାନେ ବି ତାହା ହାସଲ କରିନେଉଥିଲେ । ଥରେ ମାତ୍ର ତାଙ୍କୁ ସେଥିରେ ବାଧାଦେବାର ଚେଷ୍ଟା କରିଥିଲି । ଜଣେ ପ୍ରଖ୍ୟାତ ବ୍ୟକ୍ତିଙ୍କ ଝିଅ ବାହାଘର । ସାହାଯ୍ୟପାଇଁ ସେ ଉପସ୍ଥିତ କୁଜଙ୍ଗକୁଟୀରରେ । ସାମନ୍ତଙ୍କର ଖଣ୍ଡିଏ ଭୂସଂପତ୍ତି ଜାମିନରଖି ଶିଳ୍ପବିକାଶ ନିଗମରୁ 'ଦିଗନ୍ତ'ମୁଦ୍ରଣ ହେଉଥିବା ଯୁଗରୂପା ପ୍ରେସ୍ ପାଇଁ କିଛି ଋଣ ପାଇବାର ବ୍ୟବସ୍ଥା କରିଥାଏଁ ଏବଂ ସେହିଦିନ ସେ ଅର୍ଥ ମିଳିବାର ସମ୍ଭାବନା ଥାଏ ବୋଲି ଜାଣି ସାମନ୍ତ ପ୍ରଖ୍ୟାତ ବ୍ୟକ୍ତିଙ୍କୁ ସାରାଦିନ ଘରେ ରଖାଇଥାନ୍ତି । କିନ୍ତୁ ସେଦିନ ଋଣ ନ ମିଳନ୍ତେ ସେ କିଂକର୍ତ୍ତବ୍ୟବିମୂଢ଼ ଦେଖାଗଲେ । ମୁଁ କହିଲି, ''ଦେଖନ୍ତୁ, ସେ ଭଦ୍ରଲୋକଙ୍କର ବିରାଟ କୋଠା । ତାଙ୍କ ବନ୍ଧୁବାନ୍ଧବମାନେ ଜଣେ ଜଣେ ବିପୁଳ ବିତ୍ତଶାଳୀ ବ୍ୟକ୍ତି । ମହତାବ୍‌ଜୀ ତାଙ୍କ ସହାୟକ ମଧ୍ୟ । ଆଉ ତାଙ୍କ ପୁଅ କେତେ ଦରମା ପାଆନ୍ତି ଜାଣନ୍ତି ?'' ପ୍ରଶ୍ନ କରି ସେ ମୋଟା ପରିମାଣର ଉଲ୍ଲେଖ କଲି ।

ନମ୍ର କଣ୍ଠରେ ସାମନ୍ତ କହିଲେ, ''କ'ଣ ସେତିକି ?'' ଏହାପରେ ସେ ସ୍ୱୟଂ ଭଦ୍ରଲୋକଙ୍କ ଅନ୍ୟ କେତେକ ସଂପଦର ଉଲ୍ଲେଖ କଲେ । ଆଚମ୍ବିତ ହୋଇ ପଚାରିଲି, ''ଏହା ସତ୍ତ୍ୱେ ସେ ଆପଣଙ୍କଠୁଁ କାହିଁକି ସାହାଯ୍ୟ ଆଶାକରିବେ ?''

''ତମେ ତ ନିଜେ ଉତ୍ତର ଦେଇଛ । ଆଶା... ଆଶାର କୌଣସି ଯୁକ୍ତିନାହିଁ । କଥାହେଲା, ସ୍ୱାଧୀନତା ଆନ୍ଦୋଳନ ଓ କାରାବାସବେଳେ ତାଙ୍କର ବିଶେଷ କିଛି ନଥିଲା, ମୋର ଥିଲା । ଜମିଦାରି ବିକ୍ରୀକରି ଦେଉଥିଲି । ଟଙ୍କା ଯୋଗାଡ଼ କରି ସେମାନଙ୍କ ସଚ୍ଚା ଆବଶ୍ୟକତା ଯଥାସମ୍ଭବ ପୂରଣ କରୁଥିଲି । ଆଜି ଆର୍ଥିକ ଅବସ୍ଥା ବଦଳିଯାଇଛି; କିନ୍ତୁ ତାଙ୍କ ଅଭ୍ୟାସ ବଦଳି ନାହିଁ । ଅଭ୍ୟାସରୁ ଆଶା । ବାବା ! ମୁଁ ତାଙ୍କୁ ହତାଶ କରିବାକୁ କିଏ ? ଦେଖେଁ, କେଉଁଠି କିଛି ଯଦି...''

ସହକର୍ମୀଙ୍କୁ ଧରି ତାଙ୍କ ଆଶା ପୂରଣ କରିବା ନିମନ୍ତେ ବାହାରିଗଲେ ସାମନ୍ତ । ଭାବୁଥିଲି ତାଙ୍କର ସେ ମନୋଭାବ, ସେ ଅପୂର୍ବ ଦୃଷ୍ଟିକୋଣ ବଦଳାଇବାକୁ ମୁଁ ବା କିଏ ? ତାଙ୍କ ଯୁକ୍ତିର ପ୍ରତିଯୁକ୍ତି କ'ଣ ବା ହୋଇପାରିବ ?

ତାଙ୍କ ଯୁକ୍ତିର ଅନ୍ୟ ଏକ ଅବିସ୍ମରଣୀୟ ଦୃଷ୍ଟାନ୍ତ । ନୂଆ କାରଟିଏ କିଣା ହୋଇଥାଏ । ବିଶେଷ ବ୍ୟବହାରର ହେତୁ ନଥିଲା । ଜୀବନର ନବମ ଦଶନ୍ଧିର ଶେଷ ଭାଗରେ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କ ପଦଯାତ୍ରା ଥାଏ କ୍ଳାନ୍ତିହୀନ ।

ଦିନେ କୁଜଙ୍ଗ କୁଟୀରରେ ବସି ସେ ଲେଖାଲେଖି କରୁଛନ୍ତି, ଜଣେ ଯୁବକ ଆସି ବିନୀତ ଭାବରେ ନିଜକୁ ତାଙ୍କର କୌଣସି ସ୍ୱର୍ଗତ ବନ୍ଧୁଙ୍କ ସନ୍ତାନ ଭାବରେ ପରିଚିତ କରାଇଲେ। ସ୍ନେହବିଗଳିତ ସାମନ୍ତଙ୍କୁ ତତ୍ପରେ କହିଲେ, ''ଗାଡ଼ିଟି ଅବ୍ୟବହୃତ ରହିଥିବ କାହିଁକି ? ମୁଁ ନେଇ ଚଳଉଥିବି। ଆପଣଙ୍କର ପ୍ରୟୋଜନ ହେବାମାତ୍ରେ ଆସି ହାଜର୍ ହୋଇ ଯୁଆଡ଼େ ଯିବେ ନେଇଯିବି।''

''ବେଶ୍, ବେଶ୍ ! ଖୁବ୍ ଭଲକଥା।'' ସାଆନ୍ତେ ପୁଣି ଲେଖାଲେଖିରେ ମନଦେଲେ।

ପରଦିନ ଯେତେବେଳେ କାର୍ କିଏ ନେଇଗଲା ଏବଂ ସାଇକେଲ୍‌ଟି ସେ ଛାଡ଼ିଯାଇଥିବା କଥା ଯଥାକ୍ରମେ ପ୍ରଶ୍ନରୂପେ ଏବଂ ସମ୍ବାଦରୂପେ ସାମନ୍ତଙ୍କୁ କୁହାଗଲା, ଦେଖାଗଲା, ପ୍ରଶ୍ନର ଉତ୍ତର ତାଙ୍କଠିଁ ନାହିଁ; କିନ୍ତୁ ସମ୍ବାଦର ପ୍ରତିକ୍ରିୟା ଥିଲା ଯୌକ୍ତିକତାର ପରାକାଷ୍ଠା : ''କେଉଁ ଗୋଟିକର ବାସ୍ତବ ପ୍ରୟୋଜନୀୟତା ଅଧିକ– ସାଇକେଲ୍‌ର ନା କାର୍‌ର ? ଯଦି କାର୍ ବଦଳରେ ସାଇକେଲ୍ ପାଇଲ, ତେବେ ଆପତ୍ତି କରିବାର କ'ଣ ଅଛି ?''

କହିବା ବାହୁଲ୍ୟ, ଏଡ଼େ ସହଜରେ କାର୍ଯ୍ୟ ହାସଲ ହେବ ଜାଣିଥିଲେ 'ବଂଧୁପୁତ୍ର'ଟି ସାଇକେଲ୍ ନ ଆଣି ଚାଲିଚାଲି ବା ରିକ୍ସାଯୋଗେ ଆସିଥାନ୍ତେ।

ତେବେ ସେ ଯୁବକଙ୍କୁ ଧନ୍ୟବାଦ ଦେବା କଥା, ସେ ସଂପର୍କର ପ୍ରଥମ ପର୍ଯ୍ୟାୟରେ ଥରେ ଦୁଇଥର କଟକ-ଭୁବନେଶ୍ୱର ଭିତରେ ମାମାଙ୍କୁ ସେବାଦାନ କରିଛନ୍ତି। ସେତକ ବି ସେ ନକରିପାରିଥାନ୍ତେ। ଯେହେତୁ ସେ ସାମନ୍ତଙ୍କ କାର୍ ପାଇଛନ୍ତି, ଅତଏବ ସେ ସାମନ୍ତଙ୍କ ନିଜ ଲୋକ, ଏହି ଯୁକ୍ତିରେ ଅତର୍କିତ ଜଟଣୀରେ ଡାକ୍ତର ବାଣୀର ରେଳବାଇ ବସାଘରେ ସଦଳବଳ ପହଞ୍ଚି ଏକାଧିକଥର ଆତିଥ୍ୟ ଗ୍ରହଣ କରିବା ଅନ୍ତେ ନିରୁଦ୍ଦିଷ୍ଟ ହୋଇଗଲେ।

ସାମନ୍ତଙ୍କ ପରିବାରପାଇଁ ଯେମିତି ଆଜି 'ନିରୁଦ୍ଦିଷ୍ଟ' ବହୁ ଘଟଣା, ବହୁଚରିତ୍ର ଓ ସ୍ମୃତି ସମୃଦ୍ଧ ଜୋବ୍ରାସ୍ଥିତ 'କୁଜଙ୍ଗ କୁଟୀର'– ସାମନ୍ତଙ୍କ ଉଦାରତା ବା ଉଦାସୀନତାର ଅନ୍ୟ ଏକ ପରିଣତି !

## ( ୨ )

ଯେଉଁ ପ୍ରକାରର ଜନପ୍ରିୟତା ଏବଂ ଶ୍ରଦ୍ଧାର ପ୍ରାଚୁର୍ଯ୍ୟ କୁଜଙ୍ଗ ମୁଲକରେ ସାମନ୍ତଙ୍କ ଉପରେ ଓଜାଡ଼ିହୋଇପଡୁଥାଏ, ତା'ର କଳ୍ପନା ମଧ୍ୟ ପରବର୍ତ୍ତୀ କାଳରେ ସୁଦୂର ପରାହତ। କୌଣସି କୌଣସି ବ୍ୟକ୍ତିତ୍ୱର ମାଧ୍ୟାକର୍ଷଣ ଶକ୍ତି ଧରଣର ଅଦୃଶ୍ୟ ଆକର୍ଷଣ ଥାଏ। ସାମନ୍ତଙ୍କର ଅବଶ୍ୟ ତାହା ଥିଲା। ତେବେ ସ୍ଥୂଳ ସ୍ତରରେ ସେ ଜନପ୍ରିୟତା ଓ ଶ୍ରଦ୍ଧାର ଦୁଇଟି ମୁଖ୍ୟ କାରଣ ନିରୂପଣ କରାଯାଇପାରେ। ପ୍ରଥମତଃ ନିଃସ୍ୱାର୍ଥପରତା

ସାଙ୍କୁ ଜନସାଧାରଣଙ୍କର ମନ ଓ ହୃଦୟ ବୁଝିବାରେ ତାଙ୍କର ଅସାଧାରଣ ମନସ୍ତାତ୍ତ୍ୱିକ ଦକ୍ଷତା ତଥା ସେମାନଙ୍କୁ ଅନୁପ୍ରାଣିତ କରିବାଭଳି ବାଗ୍ମିତା ଏବଂ ସଂଗଠନ ବା ଆନ୍ଦୋଳନର ଉପାୟ ନିରୂପଣ ଶକ୍ତି । ଦ୍ୱିତୀୟତଃ ସ୍ତିମିତ କୁଜଙ୍ଗରାଜବଂଶ ପ୍ରତି ଜନସାଧାରଣଙ୍କ ଅବଚେତନ ଶ୍ରଦ୍ଧା ଓ ରାଜବଂଶର ଦୁର୍ଦ୍ଦଶା ଜନିତ ଅଭିମାନକୁ ଜୀବନ୍ୟାସଦେଇ ତା'ର ଉଜ୍ଜ୍ୱଳ ଦାୟାଦ ରୂପେ ତାଙ୍କର ଆବିର୍ଭାବ ।

ଗତ ଅର୍ଦ୍ଧଶତାବ୍ଦୀ ଭିତରେ ଜନସାଧାରଣଙ୍କ ଜୀବନଶୈଳୀ ଓ ମାନସିକତାର ଏଭଳି କ୍ଷିପ୍ର ପରିବର୍ତ୍ତନ ସମ୍ଭବ ହୋଇଛି, ଦ୍ୱିତୀୟ କାରଣଟିର ତାତ୍ପର୍ଯ୍ୟ ଅଧିକାଂଶ ପାଠକ ଆଜି ବୁଝିବା ସମ୍ଭବପର ନୁହେଁ । କୁଜଙ୍ଗ ରାଜବଂଶ ଥିଲେ ବ୍ରିଟିଶ-ବିରୋଧୀ, ପ୍ରାୟ ବିଦ୍ରୋହୀ । ଆମ ଐତିହାସିକମାନେ ଓଡ଼ିଶାର ବହୁ ଘଟଣା ଉପରେ ଯଥେଷ୍ଟ ଗବେଷଣା କରିନାହାନ୍ତି । (ଭାରତବର୍ଷ ପାଇଁ ମଧ୍ୟ ଏ ମନ୍ତବ୍ୟ ପ୍ରଯୁଜ୍ୟ ।) ତେବେ ଜଣେ ଇଂରେଜ ଔପନିବେଶିକ ଶାସକ ଓ ଲେଖକ ଟୟନବିଙ୍କ ନିମ୍ନୋକ୍ତ ଲେଖା ସେ ଦିଗରେ କିଞ୍ଚିତ୍ ଆଭାସ ଦେଇପାରିବ । ଏହା ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର କଥା :

"After the three principal towns in the province had fallen into our hands, a part of the force was, in pursuance of the original plan of the campaign, despatched under Major Forbes to force the pass of Barmul. Colonel Harcourt with another detachment macrched against Kujang by the way of Patamundai. The Raja of that place had been detected carrying on a correspondence with the Rajas of Khurdha and Kanika with a view of entering into a triple alliance, offensive and defensive, against the British authority. The Raja of Kujang fled... who was captured shortly afterwards and confined in the fort at Cuttack. His fortifications were all dismantled, and the cannon found in them carried away to Cuttack. Among them Colonel Harcourt was not a little surprised to find two brass guns, nearly new, which bore the stamp of the honourable East India Company. How these came into the Raja's possession was, I believe, never ascertained. It is possible, however, that they were received from the wreck of some ship which had either been driven on shore or attacked and captured by pirates..."

– *A Sketch of the History of Orissa (1873) G. Toynbee*

ଟୟନବି ସାହେବ କୁଜଙ୍ଗର ଯେଉଁ ରାଜାଙ୍କୁ ବାରବାଟି କିଲ୍ଲାରେ ବନ୍ଦୀକରିରଖିବା କଥା ଲେଖିଛନ୍ତି, ସେ ନିଶ୍ଚୟ ପ୍ରବାଦ ପୁରୁଷ ଚନ୍ଦ୍ରଧ୍ୱଜ ଷଣ୍ଢ । ରାଜାଙ୍କର ଜଣେ ଅମାତ୍ୟଙ୍କ ବିଶ୍ୱାସଘାତକତା ଯୋଗୁଁ ହିଁ ଇଂରେଜ୍‌ମାନେ ସେ ଧ୍ୟାନରେ ବସିଥିବା ଅବସ୍ଥାରେ ତାଙ୍କୁ କାବୁକରିନେଇଥିଲେ ।

ଚନ୍ଦ୍ରଧ୍ୱଜଙ୍କ ବଂଶଧରମାନଙ୍କ ପାଇଁ ଇଂରେଜମାନଙ୍କ କ୍ରମାଗତ ବିଦ୍ୱେଷ ସତ୍ତ୍ୱେ ରାଜତ୍ୱ ବଜାୟ ରହିଥିଲା, ତେବେ ରାଜାମାନେ ପ୍ରତ୍ୟକ୍ଷ ବିଦ୍ରୋହରୁ ବିରତ ହୋଇଯାଇଥିଲେ । ଇଂରେଜମାନେ କୁଜଙ୍ଗରାଜ୍ୟର ଏକ ଏକ ସ୍ଥାନ ନାମକୁ ମାତ୍ର ମୂଲ୍ୟରେ ପଟ୍ଟାନେଇ ପରେ ନିଜ ପକ୍ଷରୁହିଁ ଆଇନ୍ ପ୍ରଣୟନ କରିଦେଇ ତାକୁ ନିଜ ସଂପତ୍ତି କରିନେଉଥିଲେ । ୧୫.୧୦.୧୮୭୦ରେ 'ଉତ୍କଳଦୀପିକା'ରେ ପ୍ରକାଶିତ ଏକ ସଂବାଦ ଏ କାର୍ଯ୍ୟକ୍ରମର ନମୁନା : ''ବର୍ତ୍ତମାନ ବତୀଘର ନିକଟ କଂସାରିଡିହା ନାମକ ଟାପୁରେ ଯାହାର କି ଇଂରାଜୀ ନାମ ପ୍ଲାଉଡ଼ି ଦ୍ୱୀପ ଅଟେ... କାରଖାନା ହେବାର ସ୍ଥିର ହୋଇଅଛି । ଉକ୍ତ ଟାପୁ କୁଜଙ୍ଗ ରାଜାଙ୍କଠାରୁ ଫ୍ରେସାଞ୍ଜ ସାହେବ ରଣିବାଲା ଇସ୍ତମରାରୀ ପଟ୍‌ଟା ନେଇଥିଲେ । ଗଇର୍ଣ୍ଣମେଣ୍ଟର ସେ ସ୍ଥାନ ପ୍ରୟୋଜନ ହେବାରୁ ଆଇନ୍ ଜାରିକରି ତାହା ଗ୍ରହଣ କରିଅଛନ୍ତି ।''

ଜାରିହେଲା କୁଖ୍ୟାତ 'ସନସେଟ୍' ଆଇନ୍ । ରାଜାଙ୍କ ଖାଜାଞ୍ଚି ଖଜଣା ପଇଠ କରିବାକୁ ଆସି ଉଛୁର କରିପକାଇଲେ ଅଜାଣତରେ ନା ପ୍ରରୋଚନାରେ, ତାହା ଏକ ବିବଦମାନ ବିଷୟ ଏବଂ ଅନ୍ୟାନ୍ୟ ଅନେକ ବିବଦମାନ କଥା ଭଳି ତାହା ସବୁଦିନ ପାଇଁ ଅସମାହିତ ରହିବ । ତେବେ ରଜାଙ୍କର ଥିଲା ବିପୁଳ ଭୂସଂପତ୍ତି ଏବଂ ଦେବୋତ୍ତର । ଦିନେ ସେସବୁ ମଧ୍ୟ ଚାଲିଗଲା । ୧୪.୨.୧୮୭୪ ସଂଖ୍ୟା 'ଉତ୍କଳ ଦୀପିକା'ରେ ସଂପାଦକୀୟ ମନ୍ତବ୍ୟ ସମ୍ବଳିତ ସମ୍ବାଦଟି ଏହିପରି: ''ଗତ ସୋମବାର କୁଜଙ୍ଗ ରାଜାଙ୍କର ସମ୍ପଦ ଶେଷହେଲା । ଏଥିପୂର୍ବରୁ ତାହାଙ୍କର ରାଜ୍ୟ ନିଲାମ୍‌ହୋଇ ବର୍ଦ୍ଧମାନର ମହାରାଣୀଙ୍କର ହସ୍ତଗତ ହୋଇଅଛି । କେବଳମାତ୍ର ଦେବୋତ୍ତର ଭୂମିଯାକ ଏହାଙ୍କ ହସ୍ତରେ ଥିଲା ଓ ଦେବତାଙ୍କ ସେବାୟତ ସ୍ୱରୂପ ଏ ମହାଶୟ ଆପଣା ଆୟ କିଞ୍ଚିତ ପରିମାଣ ରକ୍ଷାକରିଥିଲେ । ଏ ବିଷୟରେ ବର୍ଦ୍ଧମାନଙ୍କ ପକ୍ଷରୁ ଯେଉଁ ନାଲିଶ୍ ଉପସ୍ଥିତ ହୋଇଥିଲା ତାହା ଉକ୍ତ ଦିନ ଡିକ୍ରିହେବାରୁ ତହିଁରୁ ସୁଦ୍ଧା କୁଜଙ୍ଗ ରାଜା ବଞ୍ଚିତ ହେଲେ । ...ସଂପ୍ରତି ଏତିକି ବୋଲୁଅଛୁଁ ଯେ ଓଡ଼ିଶାର ଗୋଟିଏ ପ୍ରଧାନ ରାଜବଂଶର ଏହିଠାରେ ସର୍ବନାଶ ହେଲା ... ।''

ବର୍ଦ୍ଧମାନ ରାଜା ପୁରୁଷାନକ୍ରମିକ ରାଜା ନୁହଁନ୍ତି– ଜମିଦାର । ବ୍ରିଟିଶ୍ ସରକାର ପ୍ରୀତିବଶତଃ ପ୍ରତି ପୁରୁଷର ଜମିଦାରଙ୍କୁ ପ୍ରଥମେ ରାଜା ଓ ପରେ ବହୁତ ଅଧିକ ଭେଟି ପାଇ 'ମହାରାଜା' ଉପାଧି ବ୍ୟବହାର କରିବାକୁ ଅନୁମତି ଦେଉଥିଲେ ।

କୁଜଙ୍ଗ ଭଳି କେତେକ ଇଲାକା ଆୟତ୍ତ କରି ଜମିଦାର 'ମହାରାଜାଧିରାଜ' ଉପାଧି ପାଇଲେ। କିନ୍ତୁ କୁଜଙ୍ଗର ଜନସାଧାରଣଙ୍କ ଆନୁଗତ୍ୟ ପାଇବାର ସୌଭାଗ୍ୟ ହେଲାନାହିଁ।

କୁଜଙ୍ଗ ରାଜବଂଶ ପ୍ରତି ଥିବା ସୁପ୍ତ ଶ୍ରଦ୍ଧା ଓ ଅବଚେତନକୁ ଚାଲିଯାଇଥିବା ସହାନୁଭୂତିର ବ୍ୟାପକ ସାମୂହିକ ପରିପ୍ରକାଶକୁ ସାମନ୍ତ ସ୍ୱାଧୀନତା ଆନ୍ଦୋଳନ ଦିଗକୁ ମୁହାଁଇଦେଲେ ସଫଳ ଭାବରେ। ଇତିହାସରେ ଅନାଲୋଚିତ ଏହା ଏକ ଅଭୂତପୂର୍ବ ଉତ୍ସର୍ଗ। ସର୍ବଶ୍ରଦ୍ଧେୟା ସଂଗ୍ରାମୀ ଓ ସଂସ୍କାରକ ଶ୍ରୀମତୀ ରମାଦେବୀଙ୍କ ସ୍ମୃତିକଥା ''ଜୀବନପଥେ''ରୁ ଉଦ୍ଧାର କରୁଛି 'ଲୁଣମରା ଆନ୍ଦୋଳନ'ର ଏକ ଦୃଶ୍ୟ–

''ସାଆନ୍ତଙ୍କଠୁଁ ଆଭାସ ପାଇଲି ଯେ ପାରାଦ୍ୱୀପ ରାଣୀଙ୍କର ଏ କାମ ପ୍ରତି ସମର୍ଥନ ଅଛି। ଆମେ କୁଜଙ୍ଗ ପାଖ ଚଟୁଆ ଗାଁର ବେଡ଼ିମଠ ନାମକ ଗୋଟିଏ ମଠରେ ରହୁଥାଉଁ। ଜଣେ ସତ୍ୟାଗ୍ରହୀ ଓ ଜଣେ ବାନର ସେନାକୁ ସଙ୍ଗରେ ନେଇ ପାରାଦ୍ୱୀପ ଗଲି। ରାଣୀଙ୍କ ସହ ଦେଖାକଲି। ରାଣୀ ଖୁବ୍ ଆଦରଯତ୍ନ କଲେ। ସେ ରାଣୀ ହେଉଛନ୍ତି ଶ୍ରୀମତୀ ରତ୍ନମାଳି ଜେମାଙ୍କ ମାମା। ରାଣୀ କାଳିଆପାଟରେ ଲୁଣମାରିବାକୁ ସମ୍ମତ ହେଲେ। ସେ ବରଂ ପରାମର୍ଶ ଦେଲେ ଯେ ସନ୍ଧ୍ୟାବେଳେ ଗାଁ ସ୍ତ୍ରୀଲୋକମାନଙ୍କ ଏକ ସଭା କରାଯାଉ– ସେମାନଙ୍କ ଭିତରୁ ଯେଉଁମାନେ ବାହାରିବେ ସେମାନେ ଆମ ସାଙ୍ଗରେ କାଳିଆପାଟ ଯିବେ। ଏଣେ ମୁଁ ପାରାଦ୍ୱୀପ ଆସିବା ଶୁଣି କୁଜଙ୍ଗ ଅଞ୍ଚଳରେ ଲୁଣମରା କାମ ବନ୍ଦକରିବା ପାଇଁ ନିଯୁକ୍ତ ହୋଇଥିବା ମାଜିଷ୍ଟ୍ରେଟ ମାଧବ ମିଶ୍ର ପାରାଦ୍ୱୀପରେ ପହଞ୍ଚିଲେ ଏବଂ ଘାଟବାଲା ନାଉରୀମାନଙ୍କୁ ଆଦେଶ ଦେଲେ ଯେ ସେମାନେ ଆମକୁ ଯେପରି ଡଙ୍ଗାରେ ପାରି ନକରିବେ। ଏ ଖବର କ୍ଷଣକ ଭିତରେ ବ୍ୟାପିଗଲା। ଆମର କଥା ହୋଇଥାଏ ଯେ ରାତିରେ ଡଙ୍ଗାରେ ଯାଇ ଭୋରରୁ କାଳିଆପାଟରେ ପହଞ୍ଚିବୁ। କାଳିଆପାଟ ପର୍ଯ୍ୟନ୍ତ ଚାଲିକରିଯିବା ରାଣୀଙ୍କ ପକ୍ଷେ ଅସମ୍ଭବ। ଘାଟବାଲା ନାଉରୀଙ୍କ ଛଡ଼ା ରାଣୀଙ୍କ ପାଖରେ ଡଙ୍ଗା ବାହିନେବାପାଇଁ ଅନ୍ୟ ଲୋକ ଥାନ୍ତି–କେବଳ ଡଙ୍ଗା ଖଣ୍ଡେ ଯୋଗାଡ଼ କରିବାକୁହେବ। ସନ୍ଧ୍ୟାପରେ ରାଣୀଙ୍କ ଲୋକ ଯାଇ ଖଣ୍ଡେ ଛୋଟ ଡଙ୍ଗା ଆଣିଲେ। ରାତି ପ୍ରାୟ ଏଗାରଟା ବେଳକୁ ଲୋକେ ଯାଇ ଦେଖିଆସିଲେ ଯେ ଡେପୁଟି ମାଜିଷ୍ଟ୍ରେଟ ଓ ତାଙ୍କ ସାଙ୍ଗୋପାଙ୍ଗ ସମସ୍ତେ ଗାଢ଼ ନିଦ୍ରାରେ ଶୋଇଛନ୍ତି। ଆମେ ଆମ ଡଙ୍ଗାରେ ବସି ଯାତ୍ରା ଆରମ୍ଭକରିଲୁ। ଆଲୁଅ ଦେଖାଯିବା ଭୟରେ ଗୋଟିଏ ମାତ୍ର ଲଣ୍ଠନ ନାମକୁ ମାତ୍ର ଜାଳି ସାଙ୍ଗରେ ନେଲୁଁ। ବୋଧହୁଏ ସେଦିନ ଶୁକ୍ଳପକ୍ଷର ଅଷ୍ଟମୀ ତିଥି ଥିଲା। ଆମେ ବାହାରିବା ବେଳକୁ ଜହ୍ନ ଦେଖାଗଲା। ସେହି ଜହ୍ନ ଆଲୁଅରେ ଡଙ୍ଗା ନିଃଶବ୍ଦରେ ଚାଲିଲା।

''ସକାଳେ କାଳିଆପାଟର ଲୋକେ ତା'ଙ୍କ ଗାଁରେ ଖୋଦ୍ ରାଣୀଙ୍କୁ ଉପସ୍ଥିତ ହେବାର ଦେଖି ଅବାକ୍ ହୋଇଗଲେ । ରାଣୀ ଲୋକଙ୍କୁ କହିଲେ ଯେ ଘରର ସ୍ତ୍ରୀଲୋକମାନେ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଟୋକେଇ ବା ପାଛିଆ ଧରି ଆସନ୍ତୁ– ଆମେ ସମସ୍ତେ ମିଳି ଲୁଣମାଟି ଆଣିବାକୁ ଯିବା । ରାଣୀ ଅବଶ୍ୟ ସଂକ୍ଷେପରେ ଲୁଣମାଟି ଆଣିବାକୁ ଯିବାର ଉଦ୍ଦେଶ୍ୟ ସଂପର୍କରେ ଏକତ୍ରିତ ହୋଇଥିବା ଗାଁର ପୁରୁଷ ଓ ସ୍ତ୍ରୀଲୋକମାନଙ୍କୁ ବୁଝାଇ କହିଦେଲେ । ...ରାଣୀଙ୍କ କଥାରେ ଘରୁ ସ୍ତ୍ରୀଲୋକମାନେ ପାଛିଆ ଟୋକେଇ ଧରି ବାହାରିଆସିଲେ । ପୁରୁଷ କେହି ନଥାନ୍ତି । କାଳିଆପାଟ ଗୋଟାଏ ବଡ଼ ଗାଁ । ପ୍ରତ୍ୟେକ ଘରୁ ଜଣେ ଦୁଇଜଣକରି ଆସିବାରୁ ଲୋକ ସଂଖ୍ୟା ବହୁତ ହେଲା । ପିଲାମାନେ ମଧ୍ୟ ଆସିଲେ । କିଛି ଦୂରରେ ପୋଲିସ୍‌ବାଲା ଗୋଟିଏ ଦଳ ଠିଆହୋଇଥାନ୍ତି । ରାଣୀଙ୍କ ନେତୃତ୍ୱରେ ଆମେମାନେ ଗଣ୍ଡକୀପୁର ଗଲୁଁ । ପିଲା ଓ ବଡ଼ ସମସ୍ତେ ପାଛିଆରେ ମାଟି କିଛି କିଛି ନେଇ ଆସିଲୁଁ । ପୋଲିସ୍‌ମାନେ ଦର୍ଶକ ଭଳି ଠିଆହୋଇଥାନ୍ତି ।...''

[''ଜୀବନପଥେ'', ରମାଦେବୀ; ଗ୍ରନ୍ଥମନ୍ଦିର ।]

ବ୍ରିଟିଶ୍ ଜୁଲୁମ ସହିତ କୁଜଙ୍ଗ ରାଜ୍ୟକୁ ବର୍ଦ୍ଧମାନ ନିଜର ଜମିଦାରି ବନାଇନେବା ପରେ ବର୍ଦ୍ଧମାନ କର୍ମଚାରୀମାନଙ୍କ ଅନ୍ୟାୟରେ ସାଧାରଣ ଲୋକେ ଅତିଷ୍ଠ ହୋଇଉଠିବା ବେଳକୁ ସାମନ୍ତ ଏବଂ ମାମାଙ୍କ ନେତୃତ୍ୱ ସେମାନଙ୍କୁ କିଭଳି ସଂଗଠିତ କରିଥିଲା, ତା'ର ଏକ ଝଲକ ଦେଖାଯାଉ ନେତା ଏବଂ ଓଡ଼ିଶା ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ସେକ୍ରେଟାରି ଶ୍ରୀ ଲୋକନାଥ ଚୌଧୁରୀଙ୍କ ଆତ୍ମକଥାରୁ –

''କୁଜଙ୍ଗର କୈବର୍ତ୍ତମାନଙ୍କର ଷୋଳଭାଇ ନାମରେ ଏକ ମହାସଭା ଥିଲା । ଏହି ମହାସଭା ସହିତ ଜମିଦାର (ବର୍ଦ୍ଧମାନରାଜା) ଚୁକ୍ତିନାମା କରିଦେଇଥିଲେ । ଏହି ଚୁକ୍ତିନାମା ଅନୁସାରେ, ପୂର୍ବରୁ ପାଇଥିବା ସନନ୍ଦ ଅନୁଯାୟୀ କୈବର୍ତ୍ତମାନେ ନଦୀକୁ ଭୋଗକଲେ । ଏଥିପାଇଁ ବର୍ଦ୍ଧମାନ ମହାରାଜା ଓ କୈବର୍ତ୍ତମାନଙ୍କ ଭିତରେ ନାନାପ୍ରକାର ମାଲିମକଦ୍ଦମା ହୋଇଥିଲା । ଏ ମକଦ୍ଦମା ଚଳାଇବା ପାଇଁ କୈବର୍ତ୍ତମାନେ ଅସମର୍ଥ ହେବାରୁ ଶ୍ରୀ ନାରାୟଣ ବୀରବର ସାମନ୍ତ ତାଙ୍କ ସ୍ତ୍ରୀଙ୍କର, ଯିଏ କି କୁଜଙ୍ଗ ରାଜଜେମାଥିଲେ, ସମସ୍ତ ଅଳଙ୍କାର ବିକ୍ରୟ କରିଦେଇଥିଲେ । ତାଙ୍କର ଏହିଭଳି କାର୍ଯ୍ୟଯୋଗୁଁ ସେ କୁଜଙ୍ଗର ଅବିସମ୍ବାଦିତ ନେତା ଥିଲେ ଏବଂ ତାଙ୍କରି ପ୍ରେରଣାରେ କୁଜଙ୍ଗ ଅଞ୍ଚଳରେ କଂଗ୍ରେସ୍ ଆନ୍ଦୋଳନ ଅତ୍ୟନ୍ତ ବ୍ୟାପକ ହୋଇଥିଲା । କୁଜଙ୍ଗରାଣୀ (ରତ୍ନମାଳି ଜେମାଙ୍କ ମା') ଏହି ଆନ୍ଦୋଳନରେ ନେତୃତ୍ୱ ନେବା ଫଳରେ କୁଜଙ୍ଗରେ ବ୍ୟାପକ ଭାବରେ ମହିଳାମାନେ ଲବଣ ସତ୍ୟାଗ୍ରହରେ ଯୋଗଦେଇଥିଲେ ।''

[''ମୋ ଜୀବନ'', ଲୋକନାଥ ଚୌଧୁରୀ ।]

ପ୍ରସଙ୍ଗକ୍ରମେ, ସାମନ୍ତ ଏବଂ ମାମା କିଭଳି ଆଦର୍ଶାନୁପ୍ରାଣିତ ଭାବରେ ଜନସେବାରେ ଜୀବନ ଉତ୍ସର୍ଗ କରିଥିଲେ ଏବଂ ଅନ୍ୟମାନଙ୍କୁ କିଭଳି ମାତ୍ରାରେ ପ୍ରଭାବିତ କରୁଥିଲେ, ତା'ର ଏକ ଝଲକ ଲୋକନାଥ ବାବୁଙ୍କ ଜୀବନସ୍ମୃତିରେ ଦେଖିବାକୁ ମିଳେ : ''ମୁଁ ନିଜେ ଏଲାହାବାଦ୍‌ଯାଇ ପଢ଼ିବାପାଇଁ ବିଶେଷ ଇଚ୍ଛୁକ ଥିଲି । ମୁଁ ମୋର ଇଚ୍ଛା ଯେତେବେଳେ ମାମା(ରତ୍ନମାଳିଜେମା)ଙ୍କ ପାଖେ ପ୍ରକାଶ କଲି, ସେ ମୋ ଉପରେ ଅଭିମାନ ପ୍ରକାଶ କରି କହିଲେ, ଆମେ ଲୋକଙ୍କୁ ଜବାବ୍ ଦେଇଛୁଁ ତାଙ୍କ ସେବା କରିବୁ ବୋଲି– ସେୟାହିଁ କର ।''

ଲୋକନାଥବାବୁଙ୍କ ଆଭିମୁଖ୍ୟ ବଦଳିଗଲା । ପରବର୍ତ୍ତୀ ସମୟରେ ସେ କମ୍ୟୁନିଷ୍ଟ ପ୍ରାର୍ଥୀ ଭାବରେ ବିଧାନସଭା ଓ ଲୋକସଭାର ସଦସ୍ୟ ହେଲେ । ଏହାର ପଟ୍ଟଭୂମି ମଧ୍ୟ ଆମୋଦଦାୟକ । ସାମନ୍ତ ଏବଂ ମାମାଙ୍କ ସର୍ବାଦୃତ ପୁତ୍ର ଶ୍ରୀ ବିଶ୍ୱମ୍ଭର ସାମନ୍ତ ସ୍କୁଲଜୀବନରୁ କମ୍ୟୁନିଷ୍ଟ ବନିଗଲେ । ବଂଶର ପଟ୍ଟଭୂମିରେ ତାଙ୍କ ପ୍ରଭାବ ବି କମ୍ ନଥିଲା । ଲୋକନାଥବାବୁ ତାଙ୍କ ପ୍ରଥମ ନିର୍ବାଚନ ରଣରେ ସାମନ୍ତ ଏବଂ ମାମାଙ୍କ ପରୋକ୍ଷ ସ୍ନେହଶୁଭେଚ୍ଛା ପାଇଥିବା ଯୋଗୁହିଁ କମ୍ୟୁନିଷ୍ଟ ଜୀବନରେ ତାଙ୍କ ରାଜନୈତିକ ଭିତ୍ତିକୁ ଅପେକ୍ଷାକୃତ ସହଜରେ ଦୃଢ଼ କରିପାରିଥିଲେ ।

କଂଗ୍ରେସର ନୀତିଗତ ସିଦ୍ଧାନ୍ତ ଅନୁସାରେ ବିହାର-ଓଡ଼ିଶା କାଉନ୍‌ସିଲ୍‌ରୁ ସାମନ୍ତ ଇସ୍ତଫା ଦେବା ପରେ ୧୯୩୭ରେ ପୁଣି ଯେତେବେଳେ କଂଗ୍ରେସ୍ ନିର୍ବାଚନ ଲଢ଼ିବା ସ୍ଥିରହେଲା ସେତେବେଳକୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ (୧୯୩୬) ହୋଇସାରିଥାଏ । ଏରସମା-ତିର୍ତ୍ତୋଲ ଅଞ୍ଚଳରୁ ସାମନ୍ତହିଁ ପ୍ରାର୍ଥୀ ହେବେ– ଏହା ସାଧାରଣଜ୍ଞାନର କଥା ବୋଲି ଅଧିକାଂଶ ରାଜନୈତିକ ବ୍ୟକ୍ତି ମନେକରୁଥିଲେ । କିନ୍ତୁ କେହି କେହି ସାମନ୍ତଙ୍କୁ ଈର୍ଷା କରୁଥିବାର ଆଭାସ ପାଇ ସାମନ୍ତ ସ୍ୱୟଂ ଘୋଷଣା କଲେ ଯେ ସେ ନିର୍ବାଚନ ଲଢ଼ିବାକୁ ପ୍ରସ୍ତୁତ ନୁହଁନ୍ତି । ସେ ପ୍ରସ୍ତାବକଲେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନାମ । ଏକଦା ବିଶିଷ୍ଟ ସର୍ବୋଦୟ ନେତା ଓ ପରେ ଆମେରିକାପ୍ରବାସୀ ଶ୍ରୀ ଅନାଦି ନାୟକଙ୍କ ରଚିତ ନବକୃଷ୍ଣ ଚୌଧୁରୀଙ୍କ ଜୀବନୀରୁ ସେ ନିର୍ବାଚନର ଦୃଶ୍ୟ ଦେଖାଯାଉ : ''ନିର୍ବାଚନ ପ୍ରଚାରର ମୁଖ୍ୟ ଦାୟିତ୍ୱ ନେଇଥାନ୍ତି ଶ୍ରୀ ନାରାୟଣ ବୀରବର ସାମନ୍ତ । କୁଜଙ୍ଗ ଜମିଦାର (ଅର୍ଥାତ୍ ବର୍ଦ୍ଧମାନରାଜ)ଙ୍କ ସବୁ କର୍ମଚାରୀ, ଖାସ୍‌କରି ମ୍ୟାନେଜର ରାଜେନ୍ଦ୍ର କୁମାର ସେନ୍ ନବବାବୁଙ୍କୁ ହରାଇବା ଉଦ୍ୟମରେ ଥାନ୍ତି । ମାତ୍ର କୁଜଙ୍ଗ ହେଲା ନାରାୟଣ ବୀରବର ସାମନ୍ତଙ୍କ ଅଞ୍ଚଳ । ଏଣୁ ଜମିଦାରଙ୍କ ପ୍ରଭାବ କଟେଇବାକୁ ତାଙ୍କ ଉପସ୍ଥିତି ବେଶ୍ ଫଳପ୍ରଦ ହେଲା । ସ୍ଥାନୀୟ ଲୋକେ ନାରାୟଣ ବୀରବର ସାମନ୍ତଙ୍କୁ 'ସାଆନ୍ତେ' ଓ ରତ୍ନମାଳିଜେମାଙ୍କୁ 'ଜେମା' ବୋଲି ଡାକନ୍ତି । ସ୍ଥାନୀୟ ଲୋକଙ୍କ ଭିତରେ ପୂରାପୂରି ମିଶି ଲୋକଙ୍କୁ କେମିତି କଂଗ୍ରେସ୍ ପାଇଁ ଉଦ୍‌ବୁଦ୍ଧ କରିବାକୁ ହେବ– ସାଆନ୍ତଙ୍କର ଏହି ଯୋଜନା ଚାଲିଥାଏ । ଗାଁରେ କେଉଁଠି କୀର୍ତ୍ତନ ହେଲେ ବା ସତ୍ୟନାରାୟଣ ପୂଜା

ହେଲେ ସାଆନ୍ତେ ଯାଇ ସେଠି ପହଞ୍ଚନ୍ତି । ଖଞ୍ଜଣି ଓ ଝାଞ୍ଜବଜା ଚାଲେ । କଂଗ୍ରେସ କଥା ମଧ୍ୟ ପଡ଼େ ।... ସେ ଅଞ୍ଚଳର ଜଣେ ପାଲାବାଲା ଭଗବାନ ସିଂ ବିଭିନ୍ନ ଗ୍ରାମରେ ସାମନ୍ତଙ୍କ ରଚିତ ଗୀତ ଗାଇ ଜନସାଧାରଣଙ୍କ ଭିତରେ ଖୁବ୍ ଉନ୍ମାଦନା ସୃଷ୍ଟିକରିଥିଲେ । ଚଉତିଶା ଶୈଳୀରେ ଲେଖା ଗୀତଟି ହେଲା :

''କଂଗ୍ରେସର ଡାକେ କଂପଇ ଭାରତ
କଳ୍ପନାରେ ଦେଲେ ଚାହିଁ,
ଖସାଇବା ଭାର କ୍ଷୀତି ମଣ୍ଡଳରୁ
ଖଟିଣ ଜଗତ ପାଇଁ... ଇତ୍ୟାଦି''

[''ଲୋକଶକ୍ତିର ସଂଧାନେ : ନବକୃଷ୍ଣ ଚୌଧୁରୀ'', ଅନାଦି ନାୟକ, ଗନ୍ଧମନ୍ଦିର ।]

ପୂର୍ବରୁ ଜଣେ କମ୍ୟୁନିଷ୍ଟ ନେତାଙ୍କ ସ୍ମୃତିଚୟନ କରିଛୁଁ । ବର୍ତ୍ତମାନ ଜଣେ ସୋସାଲିଷ୍ଟ ନେତା ଏବଂ ଏକଦା ବିଧାୟକ ଶ୍ରୀ କସ୍ତୁରିଚରଣ ମଲ୍ଲିକଙ୍କ ସ୍ମୃତି ପ୍ରତି ଦୃଷ୍ଟି ଦିଆଯାଉ:

''ସ୍ୱାଧୀନତା ସଂଗ୍ରାମର ମହାରଥୀଙ୍କ ସହ ମୋର ସାକ୍ଷାତ୍ ହୁଏ ୧୯୪୨ ମସିହା ମେ ମାସରେ, ଜଗତସିଂହପୁର ଜିଲ୍ଲାର ତରତଙ୍ଗ ମଠରେ । ଏଠାରେ ଓଡ଼ିଶାର ଖଦୀକର୍ମୀମାନଙ୍କ ମହାସମ୍ମିଳନୀ ଅନୁଷ୍ଠିତ ହୋଇଥାଏ । ବରୀରୁ ପୁଣ୍ୟଶ୍ଳୋକ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଶହ ଶହ ଖଦୀକର୍ମୀ ପଦଯାତ୍ରାରେ ଆସିଥାନ୍ତି । ହାତରେ ଅରଟଟିଏ ଧରି ଦାଢ଼ିରଖିଥିବା ଜଣେ ବାଙ୍ଗରାମଣିଷ ଖଦୀ ଧୋତିଟିଏ ପିନ୍ଧି ଓ ଦେହରେ ଖଦୀ ଚାଦର ଖଣ୍ଡିଏ ଘୋଡ଼ିହୋଇ ଏଠାରେ ପହଞ୍ଚିଲେ । ଏହି ହେଉଛନ୍ତି କୁଜଙ୍ଗର ରାଜା... ।''

ଏଥର ଭାରତର ପ୍ରଥମ ଉପନିର୍ବାଚନ ସଂପର୍କରେ କସ୍ତୁରୀବାବୁଙ୍କ ସ୍ମୃତି ପ୍ରତି ଦୃଷ୍ଟି ଦିଆଯାଉ:

''୧୯୪୬ ମସିହାରେ ପୂଜ୍ୟ ସାରଙ୍ଗଧର ଦାସ ତିର୍ତ୍ତୋଲ ଓ ଏରସମାରୁ ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇଥାନ୍ତି । ... ସେ ଇସ୍ତଫା ଦେବା ପରେ ୧୯୪୯ରେ ଉପନିର୍ବାଚନ ହେଲା । ...ତିର୍ତ୍ତୋଲରୁ ପ୍ରାର୍ଥୀ (କଂଗ୍ରେସ) ଥାନ୍ତି ନାରାୟଣ ବୀରବର ସାମନ୍ତ । ସୋସ୍‌ଲିଷ୍ଟ ପାର୍ଟି ତରଫରୁ ପ୍ରାର୍ଥୀ ସ୍ୱାଧୀନତାସଂଗ୍ରାମର ମହାରଥୀ ଚାଷୀନେତା ନିଶାମଣି ଖୁଣ୍ଟିଆ । ସେତେବେଳେ ମୁଁ, ରବିରାୟ ଓ ବିଶ୍ୱନାଥ ପଣ୍ଡିତ କୁଜଙ୍ଗ ନିର୍ବାଚନ ଦାୟିତ୍ୱରେ ଥାଉଁ । କଂଗ୍ରେସ ପାର୍ଟି ତରଫରୁ ସାଆନ୍ତେ ଜିତିଲେ— ଆମେ ହାରିଲୁଁ । ଏହାହିଁ ହେଉଛି ଭାରତବର୍ଷରେ କଂଗ୍ରେସ ବିରୁଦ୍ଧରେ ସୋସ୍‌ଲିଷ୍ଟ ପାର୍ଟିର (ପ୍ରଥମ) ନିର୍ବାଚନ ଲଢ଼େଇ । ଏ ନିର୍ବାଚନରେ ସାଆନ୍ତଙ୍କ ଲୋକସଂପର୍କ ଓ ଜନନେତାପଣିଆ ପ୍ରମାଣିତ ହେଲା ।''

ଏସବୁ ରାଜନୈତିକ ଓ ସାମାଜିକ ଘଟଣା ବହୁଳତା ସହ ସମାନ୍ତରାଳ ଭାବରେ ଗତିକରୁଥିଲା ସାମନ୍ତଙ୍କ ସୃଜନଶୀଳତା । ସମାଜସଂସ୍କାରଠୁଁ ଆରମ୍ଭକରି ସୂକ୍ଷ୍ମ ରହସ୍ୟବାଦୀ ଓ ଆଧାତ୍ମିକଭାବ ପର୍ଯ୍ୟନ୍ତ ବ୍ୟାପ୍ତ ତାଙ୍କ କାବ୍ୟିକ ପ୍ରେରଣା । କନ୍ୟା ବାଣୀ ଏବଂ ଭାଣିଜୀ ବିଜୟିନୀଙ୍କ ଉଦ୍ୟମରେ ୧୭୩ଟି କବିତା ଓ ତିନୋଟି ଗଦ୍ୟରଚନା ସମାହାରରେ ସଂପ୍ରତି ତାଙ୍କର ଏକ ସଙ୍କଳନ ‘‘ଚିନ୍ମୟ ଚେତନା’’ ପ୍ରକାଶିତ ହୋଇଛି । କିନ୍ତୁ ଏ ସଙ୍କଳନ ବାହାରେ ତାଙ୍କର ଅସଂଖ୍ୟ ରଚନା ଓ ଗୀତ ଭିନ୍ନ ଭିନ୍ନ ପରିସ୍ଥିତିରେ ବାଟବଣା ହୋଇ କ୍ରମେ ଅଶ୍ରୁତ ଓ ଅଦୃଶ୍ୟ ହୋଇଯାଇଛନ୍ତି । କିଛିଦିନ ତଳେ ମୋର ଆକୈଶୋର ବଂଧୁ, ପ୍ରଖ୍ୟାତ କବି ବ୍ରଜନାଥ ରଥଙ୍କ ପାଖରୁ ପାଇଲି ଏକ ଅପ୍ରତ୍ୟାଶିତ ଭେଟି : ସାମନ୍ତଙ୍କ ରଚିତ ‘ନରବଳି’ ନାମକ କବିତା-ପୁସ୍ତିକା । ୧୯୩୧ରେ ମୁଦ୍ରିତ, କଟକର ସତ୍ୟାଗ୍ରହ ସାହିତ୍ୟ ସଦନ ନାମକ ସଂସ୍ଥା ଦ୍ୱାରା ପ୍ରକାଶିତ ଏ କବିତାରେ ନରବଳି ପ୍ରଥାରଏକ କରୁଣ ଚିତ୍ର ଉପସ୍ଥାପନ କରାଯାଇଛି । ଅଷ୍ଟଦୁର୍ଗ ବା ଆଠଗଡ଼ ରାଜମାତା ଶ୍ରୀମତୀ କୃଷ୍ଣପ୍ରିୟା ମହାଦେବୀଙ୍କୁ ବହିଟି ଉତ୍ସର୍ଗ କରିଛନ୍ତି‘‘ବିନୟାବନତ, ଅଷ୍ଟଦୁର୍ଗର ନିର୍ବାସିତ ସନ୍ତାନ ଶ୍ରୀ ନାରାୟଣ ବୀରବର ସାମନ୍ତ’’ । (ସେତେବେଳେ ଆଠଗଡ଼ ଭିତରେ ତାଙ୍କ ପ୍ରବେଶ ନିଷିଦ୍ଧ କରିଥିଲେ ଇଂରେଜ ସରକାର ।) ଏ ପୁସ୍ତିକା ସଂପର୍କରେ ସାମନ୍ତଙ୍କ ନିଜ ଲୋକେ କେହି କିଛି ଜାଣି ନଥିଲେ । କେହି ଆନ୍ତରିକ ଭାବରେ କୌତୂହଳୀ ନହେଲେ ସେ ନିଜ ସଂପର୍କରେ କିଛି କହୁନଥିଲେ । କିନ୍ତୁ ଦର୍ଶନ, ସାହିତ୍ୟ ଓ ସଂସ୍କୃତିର ନାନାଦି ଦିଗ ଉପରେ ସେ ତାଙ୍କର ଅଭିନବ ବ୍ୟାଖ୍ୟା ଶୁଣାଇବାରେ କାର୍ପଣ୍ୟ କରୁନଥିଲେ ୯ ତା. ଏପ୍ରିଲ ୧୯୯୯ରେ ଶେଷନିଃଶ୍ୱାସ ତ୍ୟାଗ କରିବାର ଅବ୍ୟବହିତ ପୂର୍ବ ପର୍ଯ୍ୟନ୍ତ । ଜଟଣୀରେ କନିଷ୍ଠ କନ୍ୟା ବାଣୀଙ୍କ ବାସଭବନ ସେତେବେଳେ କେତେ ସ୍ୱାଧୀନତାସଂଗ୍ରାମୀ, ସମାଜସେବକ, ସାହିତ୍ୟିକ ଓ ରାଜନୈତିକ ନେତାଙ୍କ ଆଖିରେ ଏକ ଐତିହାସିକ ପବିତ୍ର କୋଠିରେ ପରିଣତ ହୋଇଥାଏ । ଶତାବ୍ଦୀ-ସ୍ୱର୍ଣ୍ଣମୁଖୀ ଏହି ଅପୂର୍ବ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧା ନିବେଦନ କରିବାକୁ ଆସୁଥିଲେ ସେମାନେ । ଦେହର ସମସ୍ତ ଜଟିଳ ଦାୟିତ୍ୱ ନିୟତ-ସତର୍କ ଡାକ୍ତର ବାଣୀ ଉପରେ ନ୍ୟସ୍ତକରି ନିଶ୍ଚିନ୍ତ ସାମନ୍ତ ନିଜ ସ୍ୱନିତ ଭାବନାର ଐଶ୍ୱର୍ଯ୍ୟ ବିତରଣ କରି ସବୁ ଆଗନ୍ତୁକଙ୍କୁ ଦେଉଥିଲେ ଗଭୀର ସନ୍ତୋଷ ।

ଭୂମିକାର ପ୍ରଥମରେ ମୋର ଏକ ଅନୁଭବ ଲିପିବଦ୍ଧ କରିଥିଲି– ଯେ ସାମନ୍ତ ଏମନ୍ତ ଏକ ଚରିତ୍ର, ତଥ୍ୟ ସମାବେଶ ମାଧ୍ୟମରେ ଯା’ର ଜୀବନ୍ୟାସ ସମ୍ଭବପର ନୁହେଁ– ଉପନ୍ୟାସ ଦ୍ୱାରା ସମ୍ଭବ ହୋଇପାରେ । ଏ ଲେଖକ ଯେହେତୁ ସେ କାର୍ଯ୍ୟଟି କରିପାରୁନାହିଁ, ଏକ କବିତା ମାଧ୍ୟମରେ କରୁଛି ତା’ର ମୁଗ୍ଧ ଶ୍ରଦ୍ଧାର୍ପଣ :

ପୃଥିବୀର ପଥପ୍ରାନ୍ତେ ଗୁଳ୍ମଲତା କେତେ ଭଳିଭଳି
ତା' ମଧ୍ୟେ ବିରାଜୁଥାଏ କଦାଚିତ୍ ବିଶାଳ ଶାଳ୍ମଳୀ,
ଆକାଶ ଆୟତ୍ତ କଲେ ଗୋଧୂଳିର ଉଦାସୀନ ରଂଗ
ତହିଁ ଆଶ୍ରା ଲୋଡ଼ିଥାନ୍ତି ରୌଦ୍ରକ୍ଳାନ୍ତ ଶତେକ ବିହଙ୍ଗ ।

ଶାଳ୍ମଳୀ କରେନା ପ୍ରଶ୍ନ ସେମାନଙ୍କ ନାମ ବା ଜାତକ
ଜାତି ଅବା ଗୋତ୍ର କିମ୍ବା କା'ର କେତେ ପୁଣ୍ୟ ବା ପାତକ,
ପତ୍ରଭରା ସେ ତରୁର ଶାଖା ଏବଂ ପ୍ରଶାଖା ଉଦାର
ବନିଯାଏ ସମାଗତ ଅତିଥିଙ୍କ ନିର୍ଭୟ ଶିବିର ।

ସେ ତରୁର ଶାଖାଯୋଗେ ନିର୍ମିତ ଯେ କୁଠାରର ଦଣ୍ଡ
ସେ ଅସ୍ତ୍ର ପ୍ରୟୋଗ କରି ଦେଲେ ତାକୁ ପ୍ରହାର ପ୍ରଚଣ୍ଡ,
ସେ କୁଠାରଧାରୀ ପ୍ରତି ଶାଳ୍ମଳୀର ଏମନ୍ତ କରୁଣା
ଘର୍ମାକ୍ତ ତା'କଳେବରେ କରେନା ସେ ଛାୟାଦାନ ଊଣା ।

ମଣିଷ ଭିତରେ ଥିଲେ ଶାଳ୍ମଳୀ ଏମନ୍ତ
ଶୁଭେଚ୍ଛାର ଅନ୍ୟ ନାମ, ଅନନ୍ୟ ସାମନ୍ତ ।

ଦଦରା ଖଟିଆ ପରେ ଚକ୍ରାସନେ ଥାଇ ବିରାଜିତ
ତୁମେ ଯେବେ କରୁଥାଅ, କେତେ କେତେ ରହସ୍ୟର
ବ୍ୟାଖ୍ୟା ଅବିରତ
ସେତେବେଳେ ମନେହୁଏ ସେ ଆସନ ଉଡ଼ନ୍ ଖଟୋଲା,
ଉଡ଼ିଉଡ଼ି ଛୁଇଁଯାଏ କଳ୍ପଲୋକେ ଅନେକ ମହଲା,
ତୁମ ମୁଗ୍ଧ ଶ୍ରୋତୃବର୍ଗ (ତହିଁ ମଧ୍ୟେ କୁକୁର ବିଲେଇ)
ସେତେବେଳେ ସତେ ଅବା ସମସ୍ତେ ହିଁ ଛୋଟବଡ଼ ନାନାଦି ଚଢ଼େଇ,
ତୁମକୁ ବେଷ୍ଟନ କରି ସମସ୍ତେ ଉଡ଼ନ୍ତ
ସମସ୍ତେ ଅବୋଲକରା, ପ୍ରବାଦର ତୁମେହିଁ ସାମନ୍ତ ।

ଶ୍ରୀ ଅରବିନ୍ଦ ଆଶ୍ରମ
ପଣ୍ଡିଚେରୀ

**ମନୋଜ ଦାସ**



ଶ୍ରୀମତୀ ରତ୍ନମାଳି ଜେମା

ଦୁଇ କନ୍ୟା ବାଣୀ ଓ ପ୍ରତିଜ୍ଞାଙ୍କ
ଗହଣରେ ଶ୍ରୀଯୁକ୍ତ ସାମନ୍ତ ।

କନ୍ୟା ଡ. ବାଣୀ ଓ ଭାଣିଜୀ ବିଜୟିନୀ
ସିଂହଦେଓଙ୍କ ମଧ୍ୟରେ ଜେମା ।

ଦୁଇ କନ୍ୟା ଡ. ବାଣୀ  ସାମନ୍ତ ଓ ପ୍ରତିଜ୍ଞା
ଦେବୀଙ୍କ ଗହଣରେ ଜେମା ।

ବାମରୁ ପୁତ୍ର ବିଶ୍ୱମ୍ଭର, ଜେମା, ଶ୍ରୀ ସାମନ୍ତ,
ଜ୍ୟେଷ୍ଠା କନ୍ୟା ପ୍ରତିଜ୍ଞା, ପଶ୍ଚାତରେ କନିଷ୍ଠା କନ୍ୟା ବାଣୀ ।



ସାମନ୍ତ ପରିବାର : ଶ୍ରୀ ସାମନ୍ତ ଓ ଜେମା,
ଦଣ୍ଡାୟମାନ ବାଣୀ, ମନୋଜ, ବିଶ୍ୱମ୍ଭରଓ ପ୍ରତିଜ୍ଞା ।



ଜେମା ବିଧାନସଭାକୁ ନିର୍ବାଚିତ ହେବାବେଳେ
ପଣ୍ଡିତ ନେହେରୁଙ୍କ ସହ ।

କୁଜଙ୍ଗ ରାଜବଂଶର ଆରାଧ୍ୟ ଶିବ
ପାରେଶ୍ୱରଙ୍କ ମନ୍ଦିର ହରିଜନମାନଙ୍କ ପାଇଁ ଉନ୍ମୁକ୍ତ ।

କୁଜଙ୍ଗ ରାଜବଂଶର ଆରାଧ୍ୟ ଶ୍ରୀ ଲୋକନାଥଙ୍କ ମନ୍ଦିର,
ଏହାର ମୁଖ୍ୟାଂଶ ହାତୀ ଆକାର ।

ରାଜ୍ୟ ସରକାରଙ୍କ ତରଫରୁ ସାମନ୍ତଙ୍କ
ଶବାଧାର ଉଦ୍ଦେଶ୍ୟରେ ଗାର୍ଡ ଅଫ୍ ଅନର୍ ।




ସମାଧି ପୀଠ (ପାରାଦ୍ୱୀପରେ)
ସାମନ୍ତଙ୍କ ପ୍ରତିମୂର୍ତ୍ତି ।

# ଆଭିଜାତ୍ୟର ଅଭିବ୍ୟକ୍ତି

୧୯୦୦ ମସିହା କାର୍ତ୍ତିକ କୃଷ୍ଣପକ୍ଷ ଏକାଦଶୀରେ ମୋର ଜନ୍ମ, କଟକ ଜିଲ୍ଲାର ଇନ୍ଦୁପୁର ଗ୍ରାମରେ । ପିତାଙ୍କ ନାମ ପରମାନନ୍ଦ ଜଗଦ୍ଦେବ ଓ ମାତାଙ୍କ ନାମ ନକ୍ଷତ୍ରମାଳୀ । ମୁଁ ପିତାମାତାଙ୍କର ୪ର୍ଥ ସନ୍ତାନ । ମୋର ପାଞ୍ଚବର୍ଷ ବୟସ ବେଳକୁ ପିତାଙ୍କର ଅପସ୍ମାର ରୋଗ ବାହାରିଲା ଏବଂ ପ୍ରାୟ ଚାରି ପାଞ୍ଚଦିନ ମଧ୍ୟରେ ତାଙ୍କର ଦେହାନ୍ତ ହେଲା ।

ଶୈଶବାବସ୍ଥାର ଠିକ୍ ପରେ ପରେ ପାଞ୍ଚ ଓ ଛଅବର୍ଷ ବୟସ ବେଳେ ମୋତେ ଭାଇଭଉଣୀ ଓ ମା'ଙ୍କ ସୁସ୍ଥ ପରିବେଶ ମଧ୍ୟରୁ ଦୂରେଇଯିବାକୁ ହେଲା । ମୋର ମାମୁ ଅପୁତ୍ରିକ ଥିଲେ ଏବଂ ମୋ ପିତୃବିୟୋଗ ଘଟିବାର ମାତ୍ର ୨୧ ଦିନ ପରେ ମୋ ସଦ୍ୟ-ବିଧବା ମାତାଙ୍କୁ ସଙ୍ଖୋଳିବାକୁ ଯାଇ ମାମୁଙ୍କର ଆମ ଇନ୍ଦୁପୁର ଘରଠାରେ ବିୟୋଗ ଘଟିଲା । ସେ ମୃତ୍ୟୁର ଅବ୍ୟବହିତ ଆଗରୁ ମୋତେ ପୋଷ୍ୟପୁତ୍ର ଗ୍ରହଣକରି ତାଙ୍କର ଯାବତୀୟ ସମ୍ପତ୍ତି ମୋ ନାମରେ ଗୋଟିଏ ଉଇଲ ସମ୍ପାଦନ କରିଦେଇଥିଲେ । ତେଣୁ ମୋତେ ବିଧବା ମାଈଁଙ୍କ ପାଖକୁ ଆସିବାକୁ ପଡ଼ିଥିଲା ।

ମାମୁ ଆଠଗଡ଼ରେ ଆଶ୍ରୟ ନେଇଥିଲେ । ଏଠାରେ ଲେଖିଲେ ଅବାନ୍ତର ହେବ ନାହିଁ ଯେ, ଖୋର୍ଦ୍ଧା ବିଦ୍ରୋହବେଳେ ଖୋର୍ଦ୍ଧା, କୁଜଙ୍ଗ ଓ କନିକା ରାଜାମାନେ ମିଳିତ ଉଦ୍ୟମରେ ବ୍ରିଟିଶ ଆକ୍ରମଣକୁ ସଶସ୍ତ୍ର ବିରୋଧ କରିଥିଲେ । ପାଇକ ବିଦ୍ରୋହର ରକ୍ତାକ୍ତ ଇତିହାସ ଏହି ବିରୋଧ ଫଳରେ ଘଟିଥିଲା । କୁଜଙ୍ଗର ରାଜା ଚନ୍ଦ୍ରଧ୍ୱଜ ଷଣ୍ଢ ପରାଜୟ ସ୍ୱୀକାର କଲା ପରେ ତାଙ୍କୁ ଗାଦିଚ୍ୟୁତ କରାଯାଇ ତାଙ୍କ ଭାଇ ମଧୁସୂଦନ ଷଣ୍ଢଙ୍କୁ କୁଜଙ୍ଗ ସିଂହାସନ ଦିଆଯାଇଥିଲା ଓ ଚନ୍ଦ୍ରଧ୍ୱଜ ଷଣ୍ଢ ରାଜ୍ୟରୁ ବିତାଡ଼ିତ ହୋଇ ଏଣେ ତେଣେ ବୁଲୁଥିଲାବେଳେ କେନ୍ଦ୍ରାପଡ଼ାର ସ୍ୱନାମଧନ୍ୟ ପ୍ରାତଃସ୍ମରଣୀୟ ରାଧାଶ୍ୟାମ ନରେନ୍ଦ୍ର ତାଙ୍କୁ ନିଜ ସହୋଦରାଙ୍କ ସହିତ ବିବାହ ଦେଇ କେନ୍ଦ୍ରାପଡ଼ାରେ ଆଶ୍ରୟ ପ୍ରଦାନ କରିଥିଲେ । ତାଙ୍କ ପୁଅ ଜଗନ୍ନାଥ ବୀରବର ଆଠଗଡ଼ ରାଜା ଜଗନ୍ନାଥ ଦେବବର୍ମାଙ୍କ କନିଷ୍ଠା କନ୍ୟାଙ୍କ ପାଣିଗ୍ରହଣ କରିଥିଲେ ଏବଂ ନରେନ୍ଦ୍ରଙ୍କ ଘରର ବୈଷୟିକ ଅବସ୍ଥା ଟିକିଏ ଖରାପ ଆଡ଼କୁ ଗତିକରିଥିବାରୁ ଏବଂ ଜଗନ୍ନାଥ ବୀରବର ସନ୍ନ୍ୟାସ ଗ୍ରହଣ କରିବାରୁ ଆଠଗଡ଼ର ତତ୍କାଳୀନ ରାଜା ବିଶ୍ୱନାଥ ଦେବବର୍ମା ନିଜ ଭଉଣୀ ଓ ଭଣଜାଙ୍କୁ ଆଠଗଡ଼ରେ ନିଜ ରାଜବାଟୀରେ ଆଶ୍ରୟ ପ୍ରଦାନ କଲେ ।

ଏହିପରି କୁଜଙ୍ଗ ରାଜବଂଶର ଶେଷ ସନ୍ତାନ ବଳରାମ ବୀରବର ଆଠଗଡ଼ରେ ତାଙ୍କ ମାମୁଙ୍କ ଆଶ୍ରୟରେ ଖଞ୍ଜାବାଡ଼ି ପାଇ ଅବସ୍ଥାନ କଲାବେଳେ ଅପରିଣତ

ବୟସରେ ମୃତ୍ୟୁମୁଖରେ ପତିତ ହେଲେ । ମୁଁ ତାଙ୍କଦ୍ୱାରା ପୋଷ୍ୟପୁତ୍ର ଗୃହୀତ ହୋଇଥିବାରୁ ମୋ ପିତ୍ରାଳୟ ଇନ୍ଦୁପୁର ଗ୍ରାମରୁ ଆଠଗଡ଼କୁ ଯଥାସମୟରେ ପ୍ରେରିତ ହେଲି ।

ଆଠଗଡ଼ ରାଜବାଟୀ ମଧ୍ୟରେ ଆମ୍ଭମାନଙ୍କର ସ୍ୱତନ୍ତ୍ର ବାସଭବନ ଥିଲା । ଏହାକୁ 'ଉଆସ' କୁହାଯାଏ । କେବଳ ସେତିକିନୁହେଁ, ଖାଇବାକୁ 'ଠାଆ', ଯିବାକୁ 'ବିଜେକର', ଗାଧୋଇବାକୁ 'ନୀତି ବଢ଼ଇବା', ଝାଡ଼ା ଯିବାକୁ 'ଶୁଳେଇ ବିଜେକରିବା' ଇତ୍ୟାଦି କିମ୍ଭୂତକିମାକାର ବହୁଳ ଶବ୍ଦମାନଙ୍କ ସହିତ ସେହି ବାଲ୍ୟାବସ୍ଥାର ସଂସ୍ପର୍ଶରେ ଆସି ମୁଁ ତିଳେମାତ୍ର କୌତୂହଳାକ୍ରାନ୍ତ ନହୋଇ ବଡ଼ ବ୍ୟାକୁଳ ହୋଇପଡ଼ିଥିଲି । ଅତି ସନ୍ତର୍ପଣଭାବେ ସାବଧାନତା ସହିତ ମୋତେ କଥାକହିବାକୁ ପଡୁଥିଲା ଏବଂ ଘୁଣାକ୍ଷରରେ ଟିକିଏ ଭୁଲ ଘଟୁଥିଲେ ପୋଇଲୀ ପରିବାରୀ ସମସ୍ତେ ଖୁଣିପକାଇବାକୁ ଟିକିଏ ହେଲେ ଛାଡୁନଥିଲେ । ଶେଷରେ ମା (ପୋଷ୍ୟ) ମଧ୍ୟ ସେଥିରେ ଆଂଶିକ ଯୋଗଦେଉଥିଲେ ।

ମୋର ଜନ୍ମସ୍ଥାନ ଇନ୍ଦୁପୁରର ପରିବେଶ ସଂପୂର୍ଣ୍ଣ ବିପରୀତ ଥିଲା । ଯଦିଓ ସେ ଘରକୁ ସମସ୍ତେ 'ହାବେଳି' କହୁଥିଲେ ଓ ସେମାନଙ୍କର ବୁନିଆଦି ଖୁବ୍ ଉଚ୍ଚସ୍ତରର ଥିଲା, କିନ୍ତୁ ମୋଗଲବନ୍ଦୀର ପରିବେଶ ଟିକିଏ ସ୍ୱତନ୍ତ୍ର ଥିଲା । ମନୁଷ୍ୟ-ମନୁଷ୍ୟ ମଧ୍ୟରେ ପ୍ରଭେଦଟା ଏତେ ଉତ୍କଟ ନଥିଲା, ଯେପରି ଆଠଗଡ଼ରେ ଛଅ ସାତବର୍ଷର ପିଲା ମୁଁ ଅନୁଭବ କରିପାରିଲି । ନଦୀ-ନାଳସେଚିତ ସମତଳଭୂମି; ଦିଗନ୍ତ ବିସ୍ତୃତ ଶସ୍ୟଶ୍ୟାମଳ କ୍ଷେତ୍ର; ତାଳ-ନାରିକେଳ-ଖର୍ଜୁର ବନମଣ୍ଡିତ ଗ୍ରାମରାଜି; ନୀଳ, ରକ୍ତ, ଶ୍ୱେତ ଉତ୍ପଳ ଶୋଭିତ ଅସଂଖ୍ୟ ତଡ଼ାଗ, ପୁଷ୍କରିଣୀ; ଗୁରୁଗୁରୁ ଟିପା ସ୍ୱନ ଧ୍ୱନିତ ଗୋରୁମହିଷର ପଲ; କୋଟି ଶ୍ୱେତ ଚାମର ଲୁଳାୟିତ ନଦୀଗର୍ଭସ୍ଥିତ ପଠା ଇତ୍ୟାଦି ନୈସର୍ଗିକ ଶୋଭା ବିଚ୍ଛୁରଣ ସାଙ୍ଗକୁ ପଲ୍ଲିସୁଲଭ ବାଳକ ବାଳିକାମାନଙ୍କ ସରଳ ବ୍ୟବହାର; ଶ୍ରୀପଞ୍ଚମୀ, ଗଣେଶଚତୁର୍ଥୀ, ଭାଲୁକୁଣୀ ପୂଜା ଉପଲକ୍ଷେ ସାଙ୍ଗହୋଇ ଫୁଲତୋଳିବା ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା; ଦୋଳ, ରଜ ଇତ୍ୟାଦି ପର୍ବପର୍ବାଣି ଯାତ୍ରାପାଇଁ କି ଉତ୍ସାହ ଉଦ୍ଦୀପନା ସବୁ ଯେପରି ଆଠଗଡ଼ର ରାଜକୀୟ ପରିବେଶ ମଧ୍ୟରେ ଓଲଟିଗଲା । ଅବଶ୍ୟ ତାହାସବୁ ଏଠାରେ ଯେ ନଥିଲା ତାହାନୁହେଁ, ବରଂ କେତେକ କ୍ଷେତ୍ରରେ ଅଧିକରୁ ଅଧିକ ଥିଲା । ଜାକଯମକ, ସାଜସଜ୍ଜା କ୍ଷେତ୍ରବିଶେଷରେ ଅସାଧାରଣ ଥିଲା; କିନ୍ତୁ ସବୁ ହେଉଥିଲା ନାଟକୀୟ ଢଙ୍ଗରେ । ନଥିଲା ତହିଁରେ ଉନ୍ମାଦନା, ନଥିଲା ତହିଁରେ ସ୍ୱତଃସ୍ଫୂର୍ତ୍ତତା । ଗଡ଼ଜାତର ପାର୍ବତ୍ୟ ଟଙ୍କିଳ ଭୂମି, ଗ୍ରୀଷ୍ମ ସମୟରେ ପର୍ବତରେ ନିଆଁ ଲାଗିବାର ରୁଦ୍ରବେଶ, ବାଘ, ଭାଲୁ ହିଂସ୍ର ଜୀବଜନ୍ତୁମାନଙ୍କ ଆକ୍ରମଣର ଦୈନନ୍ଦିନ ସମ୍ବାଦ, ଲୋକମାନଙ୍କର ଡରୁଆ ଡରୁଆ ସ୍ୱଭାବ, ରାଜବାଟୀର ଇସ୍ପାତ ନିୟମବନ୍ଧା ଦୈନନ୍ଦିନ

କାର୍ଯ୍ୟସୂଚୀ, କଚେରୀ ବିଚାର, ଦଣ୍ଡାଦେଶ, ଜେଲ, ଜୋରିମାନା, ହାତୀ ଘୋଡ଼ା, ସାରା ରାତ୍ରି ଉଜାଗର ପ୍ରହରୀମାନଙ୍କ ଚିତ୍କାର ଏସବୁ ସେହି କୋମଳ ବାଲ୍ୟାବସ୍ଥାରେ ମୋତେ ସର୍ବଦା ଅର୍ଗଳରୁଦ୍ଧ ବନ୍ୟପଶୁର ଦୁରବସ୍ଥାପରି ଲାଗୁଥିଲା । ଅବଶ୍ୟ ଯେଉଁମାନେ ମୂଳରୁ ଏହିସବୁ ପରିବେଷ୍ଟନୀ ମଧ୍ୟରେ ଅଭ୍ୟସ୍ତ ସେମାନେ ଅଭ୍ୟାସ ଦୋଷରୁ ତାର ଉତ୍କଟତା ଅନୁଭବ କରିବାକୁ ସକ୍ଷମ ହୋଇପାରୁନଥିଲେ; କିନ୍ତୁ ହାତୀ ଘୋଡ଼ାଗାଡ଼ି ଇତ୍ୟାଦି ଚଢ଼ିବାବେଳେ ଯଦିଓ କ୍ଷଣିକ ସୁଖ ଉପଭୋଗବେଳେ ଭୁଲିଥିଲି, ମାତ୍ର ଆନନ୍ଦ ଓ ପ୍ରଫୁଲ୍ଲଭାବ ଚିରଦିନପାଇଁ ମୋ ଅନ୍ତରରୁ ନିର୍ବାସିତ ହୋଇଯାଇଥିଲା ଏବଂ ଏପରି ଦିନ ନଥିଲା କିମ୍ବା ଏପରି ଅବସର ନଥିଲା, ଯେତେବେଳେ ମୁଁ ମୋ ଜନ୍ମଭୂମି ଇନ୍ଦୁପୁରର ସ୍ନେହବାତ୍ସଲ୍ୟମୟ ଶାନ୍ତିନୀଡ଼ଟି ବିଷୟରେ ଝୁରୁନଥିଲି । ସ୍ୱର୍ଣ୍ଣପିଞ୍ଜରାବଦ୍ଧ ପକ୍ଷୀଟିପରି ମୋର ସେହି ଦୁର୍ଦ୍ଦଶା ମାସେ ଦୁଇମାସପାଇଁ ନୁହେଁ, ବର୍ଷେ ଦୁଇବର୍ଷପାଇଁ ନୁହେଁ, ଦୀର୍ଘ ସାତବର୍ଷ ଧରି ମୋତେ ଘାଣ୍ଟିରଖିଥିଲା ।

ଏହିସବୁ ମାନସିକ ଦ୍ୱନ୍ଦ୍ୱ ଭିତରେ ମୋର ପାଠପଢ଼ା ଚାଲିଥାଏ । ଶିଶୁଶ୍ରେଣୀର ଡବଲ ପ୍ରମୋଶନ ପାଇ ପ୍ରଥମ ଶ୍ରେଣୀରେ ନପଢ଼ି ଏକାବେଳେ ଦ୍ୱିତୀୟ ଶ୍ରେଣୀରେ ପଢ଼ିଲି । ରାଜା ବିଶ୍ୱନାଥ ଦେବବର୍ମା ମୋର ଉଭୟଆଡୁ ହିସାବରେ ଅଜା ଥିଲେ, କାରଣ ମୁଁ ଥିଲି ତାଙ୍କ ଭାଣିଜୀର ପୁଅ ଏବଂ ତାଙ୍କ ଭଣଜା ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । ସେପର୍ଯ୍ୟନ୍ତ ସେ ଅପୁତ୍ରିକ ଥିଲେ ଏବଂ ତାଙ୍କର ସବୁ ସ୍ନେହ ମୋ ଉପରେ ଅଜାଡ଼ିଦେଇଥିଲେ । ପଢ଼ାପଢ଼ି କିପରି କ'ଣ କରୁଛି ତାହା ସେ ଶିକ୍ଷକମାନଙ୍କଠାରୁ ଘନ ଘନ ବୁଝୁଥିଲେ ଏବଂ ମୋର ଡବଲ ପ୍ରମୋଶନ କଥା ଶୁଣି ସେ ନିରତିଶୟ ପ୍ରୀତ ହୋଇଥିଲେ । ପ୍ରତ୍ୟହ ସେ ସାନ୍ଧ୍ୟଭ୍ରମଣପାଇଁ ଘୋଡ଼ାଗାଡ଼ିରେ ଗଲାବେଳେ ମୋତେ ସାଙ୍ଗରେ ନେଉଥିଲେ ଏବଂ ଗଡ଼ର ଉପକଣ୍ଠ ଅଞ୍ଚଳରେ ବଗିଟି ଅତିକ୍ରମ କରୁଥିଲାବେଳେ ମୋତେ ଛୋଟ ଛୋଟ ମାନସାଙ୍କ, ପଣିକିଆ, ସାହିତ୍ୟର କବିତା ଓ ସରଳ ବ୍ୟାକରଣ ଇତ୍ୟାଦିରୁ ଅତି ସହଜ ପ୍ରଶ୍ନମାନ ପଚାରୁଥିଲେ । ତତ୍ପରତାର ସହିତ ମୋର ଉତ୍ତର ତାଙ୍କୁ ଏପରି ଆନନ୍ଦ ଦେଉଥିଲା ଯେ ତାଙ୍କ ମୁଖମଣ୍ଡଳରେ ଯୁଗପତ୍ ହର୍ଷ ଓ ସନ୍ତୋଷର ଲକ୍ଷଣମାନ ଫୁଟିଉଠୁଥିଲା । ମୋର ଅସରନ୍ତା ଅନ୍ତର୍ଦାହ ମଧ୍ୟରେ ତାଙ୍କର ଏହି ତୁଷ୍ଟି ମରୁଭୂମିରେ ମରୂଦ୍ୟାନ ତୁଲ୍ୟ ମୋତେ ସରସ ଲାଗୁଥିଲା । ତାଙ୍କ ଇଚ୍ଛା ଅନୁଯାୟୀ ମୁଁ ନିଜକୁ ଗଢ଼ିବାପାଇଁ ସଂକଳ୍ପ କରିଥିଲି ଏବଂ ସଂସ୍କୃତରେ ସେ ଜଣେ ମହାପଣ୍ଡିତ ଥିବାରୁ, ସାହିତ୍ୟ ମୋ ସାଧନାର ବିଷୟ ହେବା ମୁଁ ବାଛିନେଇଥିଲି । ପୂର୍ବରୁ ଲେଖାଅଛି ରାଜା ଅପୁତ୍ରିକ ଥିଲେ ବୋଲି । କେହି କେହି ପରାମର୍ଶ ଦେଲେ ଦ୍ୱିତୀୟ ଦାର ପରିଗ୍ରହ କଲେ ତାଙ୍କର ନିଶ୍ଚୟ ପୁତ୍ରସନ୍ତାନ ହେବ ବୋଲି, ଫଳରେ ତାହାହିଁ ଘଟିଲା । ଦ୍ୱିତୀୟାରାଣୀଙ୍କ ଗର୍ଭରୁ ପୁତ୍ରସନ୍ତାନ ଲାଭ ହେଲା ଏବଂ ଆଠଗଡ଼ର

ବାୟୁମଣ୍ଡଳ ଆନନ୍ଦୋଲ୍ଲାସରେ ପ୍ଳାବିତ ହୋଇଉଠିଲା । ମୋତେ ସେତେବେଳେ ମାତ୍ର ନଅବର୍ଷ ଏବଂ ସବୁଠାରୁ ବେଶି ମୁଁ ସୁଖୀ ହେଲି । କାରଣ ରାଜ-ଅବରୋଧ ମଧ୍ୟରେ ଏକମାତ୍ର ପୁରୁଷ ପିଲାଭାବେ ମୋର ସର୍ବତ୍ର ଅବାଧ ପ୍ରବେଶର ଅଧିକାର ଥିଲା ଏବଂ ସେହି ସୁଯୋଗରେ ମୁଁ ଶିଶୁ ଯୁବରାଜ ଓ ନୂତନ ମହିଷୀଙ୍କର ଏଡ଼େ ପ୍ରିୟ ହୋଇଉଠିଲି ଯେ ସେମାନେ ମୋତେ ପାଖରୁ ଛାଡ଼ିବାକୁ କେହିହେଲେ ମନକରୁନଥିଲେ । ମୋର ଅନ୍ତର୍ନିହିତ ଦୁଃଖ ସେହିମାନଙ୍କ ସମାବେଶରେ ଲାଘବ ହୋଇଗଲା । ଏହିପରି ତେର ବର୍ଷ ହେବାଯାଏ ମୋତେ ଅବିଚ୍ଛିନ୍ନଭାବେ ଆଠଗଡ଼ରେ ରହିବାକୁ ପଡ଼ିଥିଲା । କିନ୍ତୁ ଆଠଗଡ଼ରେ ମୋର ଉପଯୁକ୍ତ ଶିକ୍ଷା ନହେବାର ଆଶଙ୍କା କରି ରାଜାଙ୍କର ବରାବର ଇଚ୍ଛା ଥିଲା ମୋତେ କଟକ ପଠାଇବାକୁ । ଏ ସମୟରେ ତାଙ୍କର କର୍ଣ୍ଣଗୋଚର ହେଲା ଯେ ମୋର ବଡ଼ଭାଇ ପୀତାମ୍ବର କଟକରେ B.A. ପଢୁଛନ୍ତି । ସେ ମୋତେ ତାଙ୍କ ପାଖକୁ ପଠାଇବାକୁ ଅଧୈର୍ଯ୍ୟ ହୋଇଉଠିଲେ ଏବଂ ଯଦିଓ ମାଇନର ପାଠ୍ୟ ଶେଷ କରିବାକୁ ଗୋଟିଏ ବର୍ଷ ବାକିଥିଲା, ସେ ମୋତେ କଟକ ପଠାଇଦେବାକୁ ମୋ ମା'ଙ୍କୁ ବାଧ୍ୟକଲେ ।

ଖୁବ୍ ଉତ୍ସାହର ସହିତ ଆମ ବଡ଼ ଦନ୍ତାହାତୀରେ ବସି ଚହଟା ଘାଟବାଟେ କଟକ ଆସିଲି । ସେଦିନ ସନ୍ଧ୍ୟା ହୋଇଯିବାରୁ ଘାଟ ପାରିନହୋଇ ଚହଟାରେ ରହିଲୁ; କିନ୍ତୁ ରାତିରେ ଆଠଗଡ଼ କଥା ମନେପଡ଼ି କାନ୍ଦଲାଗିଲା । ଇନ୍ଦୁପୁରରୁ ଆଠଗଡ଼ ଆସିବା ପରେ ଯେଉଁ ରୋଗ ବହୁବର୍ଷଯାଏ ମୋତେ ଘାରିରଖିଥିଲା ପୁଣି କଟକ ଆସିବାବେଳକୁ ଠିକ୍ ସେହି ରୋଗ ଧରିଲା ଏବଂ ଆଠଗଡ଼ର ବଣ-ଜଙ୍ଗଲ, ପାହାଡ଼-ପର୍ବତ, ନଈ-ପୋଖରୀ, ହାତୀ, ଘୋଡ଼ା, କୋଠାବାଡ଼ି, ପୁଣ୍ୟପର୍ବ ଓ ଯାନିଯାତ୍ରା ସବୁ ଯେପରି ମୋ ପକ୍ଷରେ ଘୋର ଆକର୍ଷଣୀ ପରି ଜଣାଗଲା । କେବଳ ମହାନଦୀର ସ୍ୱଚ୍ଛ ନୀଳବେଣୀ, ଦିଗନ୍ତବିସ୍ତୃତ ଧବଳ ସୈକତ, ରାତ୍ରିରେ ଟେଣ୍ଟେଇ ପକ୍ଷୀର ଚକିତ ରବ ପ୍ରକୃତି ସୌନ୍ଦର୍ଯ୍ୟପିପାସୁ ମୋ ମନରେ ଗୋଟିଏ ମିଳନାନ୍ତକ ବିରହର କିମ୍ବା ବିରହାନ୍ତକ ମିଳନର ଅସ୍ପଷ୍ଟ ସଙ୍ଗୀତ ବୋଲିଯାଉଥିଲେ । ନଦୀ ମଧ୍ୟସ୍ଥିତ ବାଲୁକାଶଯ୍ୟା କୋଳରେ ଅବସ୍ଥିତ ଗୋଟିଏ ଅସ୍ଥାୟୀ ଶିବିର ମଧ୍ୟରେ ଅନନ୍ତ ନୀରବତା ମଧ୍ୟରେ ଝିଲ୍ଲିସ୍ୱନକୁ କାନେଇ କାନେଇ ଶୋଇପଡ଼ିଲି । ମୋ ନିଜ ମା'ଙ୍କୁ ଛବର୍ଷ ବୟସ ବେଳେ ଛାଡିଥିଲି, କିନ୍ତୁ ଅନୁଭବ କରିବାର ଶକ୍ତି ଅଭାବରୁ ସେ ବିଚ୍ଛେଦ ଏଡ଼େ ପୀଡ଼ାଦାୟକ ହୋଇନଥିଲା ଏଥର ଯେପରି ହେଲା । ଦୀର୍ଘ ସାତବର୍ଷ ମୋତେ ଦିନକପାଇଁ ମୋର ଏହି ମା ଆଖିରୁ ଅନ୍ତର କରିନଥିଲେ ଏବଂ ଆଜି ବିଦାୟ ଘେନି ଆସିବାବେଳେ ତାଙ୍କର ଅନର୍ଗଳ ଅଶ୍ରୁ ଏ ଅବଧି ବନ୍ଦ ହୋଇନଥିବ ଏହା ଭାବିଲା ବେଳକୁ ମୋ ବୈକଲ୍ୟର ସୀମା ରହିଲାନାହିଁ । କେବଳ ଆଭିଜାତ୍ୟର ଇସ୍ପାତ୍‌ମୟ ବନ୍ଧନୀ ମଧ୍ୟରେ ଅଭ୍ୟସ୍ତଭାବେ

ବାନ୍ଧିହୋଇଥିବା କୃତ୍ରିମତାର ଏକ ପରଦା ଅନ୍ତରାଳରେ ହୃଦୟକୁ ଘୋଡ଼ାଇ ରଖିବାର ଯେଉଁ ଆର୍ଟ ମୁଁ ଏହି ଅଳ୍ପ ବୟସରେ ଶିଖିନେଇଥିଲି, ତାହାଦ୍ୱାରା ସେହି ସ୍ମରଣୀୟ ରାତ୍ରିରେ ଭୋ-ଭୋ ହୋଇ କାନ୍ଦି-ନପକାଇ ସମ୍ଭାଳିନେଲି, ମର୍ଯ୍ୟାଦାରେ କୌଣସି ଆଞ୍ଚ ଯେପରି ନଆସେ ।

ପରଦିନ ସକାଳେ ମହାନଦୀ ପାରହୋଇ ଯଥାସମୟରେ କଟକ ବସାରେ ପହଞ୍ଚିଲି । ଭାଇ ଗୋଟିଏ ମେସ୍‌ରେ ଥିଲେ ଏବଂ ସମସ୍ତେ କଲେଜ ପିଲା । ଅଳ୍ପ ସମୟ ପରେ ମୋ ପଢ଼ାପଢ଼ିର ପରୀକ୍ଷା ଚାଲିଲା । ଇଂରେଜୀ ବ୍ୟାକରଣରେ ମୋର ଅସାଧାରଣ ପ୍ରବେଶ ଲକ୍ଷ୍ୟକରି ସେମାନେ ଆଶ୍ଚର୍ଯ୍ୟ ନହୋଇ ରହିପାରିଲେନାହିଁ । ସାହିତ୍ୟ, ଇତିହାସ, ଭୂଗୋଳ ଇତ୍ୟାଦିରେ, କେବଳ ଅଙ୍କକୁ ଛାଡ଼ି, ସେମାନେ ଯତ୍ପରୋନାସ୍ତି ଆନନ୍ଦ ଅନୁଭବ କଲେ । ବିଶେଷତଃ ଗଡ଼ଜାତ ଅନ୍ଧାରିଆ ରାଜ୍ୟର ଶିକ୍ଷାଦୀକ୍ଷା ମୋଗଲବନ୍ଦୀ ସ୍କୁଲ ଷ୍ଟାଣ୍ଡାର୍ଡ ପାଠ ଅପେକ୍ଷା କେତେଗୁଣ ଅଧିକ, ତାହା ସେମାନେ ପ୍ରଥମେ ଏହିଥର ଅନୁଭବ କରି ବିସ୍ମିତ ହେଲେ । ଭାଇଙ୍କ ପାଖକୁ ଆସିବାରେ ମୋ ପଢ଼ାପଢ଼ିରେ ବିଶେଷ କିଛି ଉନ୍ନତି ହେବା ଲକ୍ଷ୍ୟ କରିପାରିଲିନାହିଁ । ଭିକ୍‌ଟୋରିଆ ସ୍କୁଲରେ ପଢିଲି ସତ, କିନ୍ତୁ ପ୍ରକୃତରେ କହିବାକୁ ଗଲେ ମାଟ୍ରିକ ପରୀକ୍ଷା ପର୍ଯ୍ୟନ୍ତ ସେହି ମାଇନର କ୍ଲାସରେ ଆଠଗଡ଼ରେ ଯାହା ପଢ଼ିଥିଲି, ସେହି ମୂଳଧନରେ ପ୍ରାୟ ଶେଷପର୍ଯ୍ୟନ୍ତ ଚଳିଗଲା ।

ଆଠଗଡ଼ରେ ଯେତେବେଳେ ଥିଲି ସାଧାରଣ ପିଲାଙ୍କ ସହିତ ମିଳାମିଶା କରିବାର ସୁବିଧା ନଥିଲା । ସ୍କୁଲ ସମୟ ମୋ ପକ୍ଷରେ ସବୁଠାରୁ ଆନନ୍ଦଦାୟକ ଥିଲା ଏବଂ ଖେଳଛୁଟି ସମୟଟିକ ଯଥାସମ୍ଭବ ଭଲଭାବେ ଖେଳୁଥିଲି । ସାଙ୍ଗ ପିଲାଙ୍କ ସହିତ ମୋର ଆନ୍ତରିକତା ଆଦର୍ଶସ୍ଥାନୀୟ ଥିଲା ଏବଂ ସେମାନଙ୍କ ସହିତ ମିଳାମିଶା କରିବାକୁ ଯେଉଁ ଟିକକ ସମୟ ପାଉଥିଲି ତାହା ଯେତେଦୂର ପାରେ ଉପଭୋଗ କରୁଥିଲି; କିନ୍ତୁ କଟକ ଆସିବା ପରେ ତାହା ସମ୍ପୂର୍ଣ୍ଣ ବଦଳିଗଲା । ପିଲାମାନଙ୍କ ସ୍ୱଭାବରେ ମାନମର୍ଯ୍ୟାଦାହୀନ ବଜାରୀ ଢଙ୍ଗ ବେଶି ଜଣାପଡୁଥିଲା । ସେମାନଙ୍କ କଥାଭାଷା ଚାଲିଚଲଣ ପାଠପଢ଼ା ପିଲାଙ୍କଠାରୁ ଏପରି ପୃଥକ ଥିଲା ଯେ ମୁଁ କୌଣସିମତେ ସେମାନଙ୍କ ସହିତ ତାଳପକାଇ ଚାଲିପାରୁନଥିଲି । ଫଳରେ ଅଜାତିଆ, ଏକଘରିଆ ଭଳି ଯଥାସମ୍ଭବ ଦୂରେଇ ହୋଇ ରହୁଥିଲି । କଟକକୁ ଆସିଲେ ସବୁପିଲାଙ୍କ ସହିତ ଅବାଧ ମିଳନର ଯେଉଁ ସ୍ୱପ୍ନ ଓ ଆକର୍ଷଣୀ ଥିଲା ତାହା ଏହିପରି ଭାଙ୍ଗିପଡ଼ିଲା ଏବଂ ଆଭିଜାତ୍ୟର ଯେଉଁ ବନ୍ଧନୀକୁ ଭାଙ୍ଗିବାକୁ ଆଠଗଡ଼ରେ କେତେ ଚେଷ୍ଟା କରୁଥିଲି, କଟକରେ ମୋତେ ସାବଧାନତାର ସହିତ ତାହାସବୁ ସୁରକ୍ଷିତ କରିବାକୁ ପଡ଼ିଥିଲା । କ୍ଲାସ ପିଲାମାନଙ୍କ ଭିତରୁ ସାଧାରଣତଃ ଯେଉଁମାନେ ସୁଦୂର ମଫସଲ ଅଞ୍ଚଳରୁ

ଆସିଥିଲେ ସେମାନଙ୍କ ସଂସ୍କୃତି ଖାସ୍ କଟକ ପିଲାମାନଙ୍କଠାରୁ ପୃଥକ ଥିଲା ଏବଂ ସେମାନେ ପ୍ରାୟ ସମସ୍ତେ ମୋତେ ଭଲପାଉଥିଲେ ଏବଂ କଟକ ପିଲାମାନେ ଯଦିଓ ଚେଷ୍ଟାକରୁଥିଲେ ମୋ ସହିତ ମିଳିମିଶିଯିବାକୁ; କିନ୍ତୁ ମୁଁ ସେମାନଙ୍କଠାରୁ ଦୂରରେ ରହିବାକୁ ଇଚ୍ଛା କରୁଥିଲି । ସେଥିପାଇଁ ସେମାନେ କେବେ କେବେ ନିର୍ଦ୍ଦୋଷ ଅପମାନ ଦେବାର ସୁବିଧାପାଇଲେ ଛାଡୁନଥିଲେ । ସେମାନଙ୍କର ଶିକ୍ଷକମାନଙ୍କ ପ୍ରତି ଅବାଧ ଆଚରଣ ମୋତେ ସର୍ବାପେକ୍ଷା ଖରାପ ଲାଗୁଥିଲା । ଶିକ୍ଷାନୁଷ୍ଠାନର ଶୃଙ୍ଖଳା ଲଙ୍ଘନ କରିବା ସେମାନଙ୍କପକ୍ଷେ ଏକ ବାହାଦୁରୀ ବୋଲି ଗଣ୍ୟ ହେଉଥିଲା । କ୍ରମଶଃ ଦେଖାଗଲା ଉଚ୍ଚକ୍ଲାସ ବେଳକୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରମୋଶନ ନପାଇ ତଳ କ୍ଲାସରେ ରହିଗଲେ କିମ୍ବା ସ୍କୁଲ ଛାଡ଼ି ଚାଲିଯାଇଥିଲେ । ଯେଉଁମାନେ କୃତିତ୍ୱର ସହିତ ଆଗେଇ ଗଲେ ସେମାନେ ପ୍ରାୟ ମଫସଲର ପିଲା ।

ମୋର ଅଠରବର୍ଷ ବୟସରେ ଆଠଗଡ଼ ବୁଢ଼ାରାଜାଙ୍କର କାଳ ହୋଇଗଲା । ସେହି ବର୍ଷ ମାଟ୍ରିକ୍ ପରୀକ୍ଷାପାଇଁ ମୁଁ ପ୍ରସ୍ତୁତ ହେଉଥାଏ । ତାଙ୍କ ମୃତ୍ୟୁ ମୋ ପକ୍ଷରେ ବଜ୍ରପାତ ପରି ଜଣାଗଲା । ସାରା ବର୍ଷଟିଯାକ ବିପଦ ପରେ ବିପଦ— ସତେଯେପରି ମୋ ବିରୋଧରେ ଏକ ଅଭିଯାନ ଚାଲିଥାଏ । ବଛାବଛି (test) ପରୀକ୍ଷା ବେଳକୁ ଦେଖାଗଲା ସେବର୍ଷର ସ୍କୁଲରେ ମୋର ଉପସ୍ଥିତି ମାତ୍ର ବୟାଳିଶ ଦିନ ହୋଇଛି । ପୁଣି ସଂସ୍କୃତ ଦୁଇଟିଯାକ ପେପର ଡ୍ରପ କରିଥିଲି । ଫାଇନାଲ ପରୀକ୍ଷା ଦେବାର ମନୋବୃତ୍ତି ମୋର ଆଦୌ ନଥିଲା । ତଥାପି ହେଡ଼ମାଷ୍ଟର ମୋତେ ବାଛିଲେ ଏବଂ ଦୁଇଟିମାସ ପଢ଼ାପଢ଼ିକରି ଦ୍ୱିତୀୟ ଶ୍ରେଣୀରେ ପାସ୍‌କଲି । ପ୍ରଥମ ଶ୍ରେଣୀ କାଳେ ନହେବ, ଏହି ଆଶଙ୍କାରେ ପରୀକ୍ଷା ଦେବାକୁ ପଛାଉଥିଲି; କିନ୍ତୁ ଫଳରେ ସେଇୟା ହେଲା । ଆଠଗଡ଼ ବୁଢ଼ାରାଜାଙ୍କ ସଂକଳ୍ପ ଥିଲା ମୋତେ ବିଲାତ ପଠାଇବାକୁ; ତାଙ୍କ ମୃତ୍ୟୁସହିତ ମୋର ସେ ଆଶା ଆଗରୁ ନିର୍ମୂଳ ହୋଇଥିଲା । ତେଣୁ କଲେଜରେ କୃତିତ୍ୱର ସହିତ ପଢ଼ା ଶେଷକରିବି ଏହି ସଂକଳ୍ପ ରଖି ନାମ ଲେଖାଇଲି ।

ରାଜନୀତି ସହିତ ମୋର କୌଣସି ସମ୍ପର୍କ ନଥିଲା । ଖବରକାଗଜ ମଧ୍ୟରେ 'ଗଡ଼ଜାତବାସିନୀ' ଏକମାତ୍ର ସମ୍ବାଦପତ୍ର ମୁଁ ନିୟମିତ ପଢୁଥିଲି ଏବଂ 'ଦି ଷ୍ଟାର ଅଫ ଉତ୍କଳ' ଇଂରେଜୀ କାଗଜର ଆତ୍ମପ୍ରକାଶ ସଙ୍ଗେ ସଙ୍ଗେ ଯଦିଓ ମୁଁ ଗ୍ରାହକ ହୋଇଥିଲି କିନ୍ତୁ ପୂର୍ବାପର ସମ୍ବନ୍ଧ ଜାଣିନଥିବାରୁ ତାକୁ ପଢ଼ି ଠିକ୍ ଠିକ୍ ଭାବେ ହଜମ କରିପାରୁନଥିଲି । 'ହିତବାଦୀ', 'ବସୁମତୀ' ପ୍ରଭୃତି ବଙ୍ଗଳା ଖବରକାଗଜ ପଢ଼ିବାକୁ ମୋତେ ବରଂ ଭଲଲାଗୁଥିଲା, କେବଳ ସାହିତ୍ୟ ଦୃଷ୍ଟିରୁ ।

୧୯୨୦ ପ୍ରଳୟଙ୍କରୀ ବନ୍ୟାରେ ଯାଜପୁର କେନ୍ଦ୍ରାପଡ଼ା ସବ୍‌ଡିଭିଜନ ଛାରଖାର ହୋଇଗଲା । କଟକରୁ ଗୋପବନ୍ଧୁ ଦାସଙ୍କ ନିର୍ଦ୍ଦେଶରେ ଗୋଟିଏ ରିଲିଫ୍ କମିଟି ସଙ୍ଗଠିତ

ହେଲା, ନିରୋଳା କଲେଜ ଛାତ୍ରମାନଙ୍କୁ ଘେନି । ମୁଁ ଗୋଟିଏ ଦଳର ନେତୃତ୍ୱରେ କେନ୍ଦ୍ରାପଡ଼ାର ଇନ୍ଦୁପୁର ଅଞ୍ଚଳକୁ ପ୍ରେରିତ ହେଲି । ମୋ ଘର ଇନ୍ଦୁପୁର ଥିବାରୁ ପରିଚିତ ଅଞ୍ଚଳରେ କାମକରିବା ସହଜସାଧ ହେବା ବିବେଚନାରେ ମୁଁ ସେହି ଅଞ୍ଚଳଟି ବାଛିଲି । ଏହି ରିଲିଫ୍ କମିଟିର ସଭାପତି ସ୍ୱୟଂ କମିଶନର ସାହେବ ଥିଲେ । ରିଲିଫ୍ କାମ ଖୁବ୍ ଘମାଘୋଟ ଭାବରେ ଆରମ୍ଭ ହେଲା । ଲୋକମାନଙ୍କ ଦୁରବସ୍ଥା ଏଡ଼େ ଶୋଚନୀୟ ହୋଇପାରେ ଏ ଧାରଣା ମୁଁ ପ୍ରଥମଥରପାଇଁ ଅନୁଭବ କଲି । ସେତେବେଳକୁ ଉତ୍କଳ ସମ୍ମିଳନୀର ଜାତୀୟତାବୋଧ ସେହିମାତ୍ର ମୁଁ ମଡ଼ାଉଥାଏଁ । ମୋ ଦେଶବାସୀମାନଙ୍କର ବଞ୍ଚିରହିବା ଦାବି ନାହିଁ, ଏ ବିଷୟ ମୁଁ ପ୍ରଥମଥରପାଇଁ ଉପଲବ୍ଧି କରିବା ମାତ୍ରେ ମୋ ମନ ବିଦ୍ରୋହୀ ହୋଇଉଠିଲା । କାରଣ କେନ୍ଦ୍ରାପଡ଼ା ମାଜିଷ୍ଟ୍ରେଟ୍ କୋଲ୍ (?) ସାହେବ ଯେଉଁ ଲୋକଙ୍କୁ ରିଲିଫ୍ ପାଇବା ଯୋଗ୍ୟ ବୋଲି ବାଛି ଅନ୍ୟମାନଙ୍କୁ କାଟିଦେଲେ ସେମାନେ କେହିହେଲେ ବଞ୍ଚିବାର ଆଶା ନଥିଲା । ଯେଉଁ ପିଲାଗୁଡ଼ିଙ୍କୁ ବାଛିଲେ ସେମାନେ ପ୍ରାୟ ମୁମୂର୍ଷୁ ଏବଂ ଯେଉଁମାନଙ୍କୁ କାଟିଦେଲେ ସେମାନେ କାମ କରିବାକୁ ଅକ୍ଷମ । ସେ ଅକ୍ଷମମାନଙ୍କ ପ୍ରତି ଟିକିଏ ଦୟାପରବଶ ହେବାକୁ ମୁଁ ଯେତେ ଅନୁରୋଧ କଲି ଦେଖିଲି ତାଙ୍କ ନିଷ୍ଠୁରତା ସେହି ପରିମାଣରେ ବଢ଼ିଉଠୁଥାଏ । ତେଣୁ ମୁଁ ନିରସ୍ତ ହୋଇ 'ଦାସେ ଆପଣଙ୍କୁ' ସମସ୍ତ କଥା ଜଣାଇବାକୁ କଟକ ଫେରିଗଲି ।

ମୁଁ ଜାଣେ ମୋ ମନ ଲୁହାପରି ଟାଣୁଆ, କୌଣସି କାରଣରୁ ଏପାଖ ସେପାଖ ହେବାର ନୁହେଁ । ଧରାବନ୍ଧା ରୀତିନୀତିରେ ଅବିଚଳିତଭାବେ ଆଗେଇବା ହେଲା ମୋର ଅଭିଜାତ ଅଭ୍ୟାସ । କିନ୍ତୁ କୋଲ୍ ସାହେବଙ୍କର ଏହି ଯେଉଁ ଅସଭ୍ୟ ବର୍ବରୋଚିତ ଆଘାତ ତାହା ମୋର ମୌଳିକ ଭିତ୍ତିକୁ ଚହଲାଇ ଦେଇଥିଲା । ଦେଶବାସୀଙ୍କ ଶୋଚନୀୟ ନିଃସହାୟ ଦୁରବସ୍ଥା ଓ ଶାସକମାନଙ୍କ ଦୟାମାୟାହୀନ ଉପେକ୍ଷା, ଦୁଇଟି ଦିଗରୁ ମୋର ହୃଦୟ-ରାଜ୍ୟରେ ଏକ ପ୍ରବଳ ଆଲୋଡ଼ନ ଚଳାଇଥିଲା । ମୁଁ କ'ଣ କରିବି କିଛି ଭାବି ସ୍ଥିର କରିପାରୁନଥିଲି ସତ, କିନ୍ତୁ ନିଶ୍ଚୟ ଯାହାକିଛି କରିବାକୁ ହେବ ଏହା ସଙ୍କଳ୍ପ କରିସାରିଥିଲି । 'ଦାସେ ଆପଣେ' ସବୁକଥା ମୋଠାରୁ ଶୁଣିଲେ ଏବଂ ସେହି ସୁଯୋଗରେ ଦେଶର ପରିସ୍ଥିତି, ବିଦେଶୀୟ ଶାସକମାନଙ୍କ ହୃଦୟହୀନତା, ପରାଧୀନତାର ଦାସତ୍ୱ, ସ୍ୱାଧୀନତାର ମୂଲ୍ୟ, ଶିକ୍ଷକମାନଙ୍କର ଦାୟିତ୍ୱ ଇତ୍ୟାଦି ବିଷୟରେ ମୋତେ ଯତ୍‌କିଞ୍ଚିତ ସୂଚନାଦେଲେ ଏବଂ ସର୍ବଶେଷରେ ଧାରାବାହିକ ଖବର କାଗଜ ପଢ଼ିବାକୁ ନିର୍ଦ୍ଦେଶ ଦେଲେ । ସେତେବେଳକୁ ମୁଁ ମାତ୍ର ବର୍ଷକ ପୂର୍ବେ ଭଗବଦ୍‌ଗୀତା ଏକାଧିକବାର ପଢ଼ିସାରିଥାଏ । ଆଭିଜାତ୍ୟିକ ଅଭିମାନ ଇତ୍ୟାଦି ବଳିଦେଇ ନିଷ୍କାମ କର୍ମରେ ନିର୍ଲିପ୍ତଭାବେ ଜୀବନ ଖଟାଇବା ମୋ ପକ୍ଷରେ କେତେଦୂର ସମ୍ଭବ ହେବ ସେହି ଅନୁଶୀଳନ ଅନ୍ୱେଷଣରେ ବ୍ୟାପୃତ ଥାଏଁ । ଏକ ଦୁର୍ବାର

ପ୍ରେରଣାରେ ବନ୍ୟାଞ୍ଚଳରେ ରିଲିଫ୍ କାମ କରିବାକୁ ଧାଇଁଯାଇଥିଲି, ତଥାପି ମୋର ପୂର୍ବ ସଂସ୍କାର ସବୁ ଜୀବନ୍ତ ଥାଏ ଏବଂ ଏହି ରିଲିଫ୍ ଘଟଣାରେ ମୋ ଦୁର୍ଦ୍ଦମନୀୟ ଅଭିମାନ ଏପରି ଜୁଳୁଜୁଳୁ ହୋଇଉଠିଲା ଯେ, ଯେକୌଣସି ବିପ୍ଳବ, ଯେକୌଣସି ବିଦ୍ରୋହ ମୋ ପକ୍ଷରେ ଏକମାତ୍ର ପଥ ବୋଲି ଉନ୍ମୁକ୍ତ ହୋଇଗଲା । ଶ୍ରୀକୃଷ୍ଣଙ୍କ ଗୀତା ଉପଦେଶ ମୋର ପ୍ରତି ଲୋମ-ରନ୍ଧ୍ରରେ ସତେଯେପରି ତରଙ୍ଗାୟିତ ହୋଇରହିଲା । ''ଯୁଦ୍ଧାୟକୃତ ନିଶ୍ଚୟ'' ଆଜ୍ଞାଟି ଗୀତା ଉପଦେଶର ସାରମର୍ମଭାବେ ଶିରୋଧାର୍ଯ୍ୟ କରିନେଲି । କିନ୍ତୁ କାହିଁ ଅସ୍ତ୍ର, କାହିଁ ସଙ୍ଗଠନ, କାହିଁ ସାରଥି, କାହିଁ ରଥ ? କିଛି ନ ଥାଉ ପଛେ ସମସ୍ୟା ତ ଠିକ୍ ଅଛି । ଯୁଦ୍ଧ ମନୋଭାବଇ ଆପାତତଃ ଯଥେଷ୍ଟ ଯାହାକି କୌଣସି କାରଣରୁ ବଦଳାଇ ଦିଆଯାଇପାରିବନାହିଁ । ପ୍ରଲୋଭନ, ସ୍ୱାଚ୍ଛନ୍ଦ୍ୟ, ଭବିଷ୍ୟତ୍ ଦାୟିତ୍ୱ,– ଛିଃ, ଏସବୁ କେଡ଼େ ତୁଚ୍ଛ, କେଡ଼େ ନିରର୍ଥକ ! ଏସବୁ ଥାଇ ଯଦି ଆତ୍ମମର୍ଯ୍ୟାଦା ନାହିଁ, ପଦେ ପଦେ ଅପମାନ, ପଦେ ପଦେ ତାଚ୍ଛଲ୍ୟ, ପଦେ ପଦେ ଉପେକ୍ଷା, ପୁଣି କାହାଠାରୁ– ବିଦେଶୀୟମାନଙ୍କଠାରୁ ! ତା ପୂର୍ବରୁ ମୃତ୍ୟୁହିଁ ବରଂ ଶ୍ରେୟସ୍କର । ଏପରି ପଦାନତ ଦେଶରେ ମୃତ୍ୟୁଇ ଏକମାତ୍ର ସାନ୍ତ୍ୱନା, ଏକମାତ୍ର କାମନା ଯଦି ଏହାର ବିପରୀତ କେହି ଭାବେ ସେ ଦେଶଦ୍ରୋହୀ, ସେ କାପୁରୁଷ, ଭୀରୁ– ତାହାର ଏ ଦେଶରେ ବଞ୍ଚିବାର ଅଧିକାର ନାହିଁ; ବରଂ ବିଦେଶୀ ଶାସକ ହାତରେ ତା'ର ମୃତ୍ୟୁହିଁ ଶ୍ରେୟଷ୍କର ।

ଏହିପରି ଦ୍ୱିଧାହୀନ, ଦ୍ୱନ୍ଦ୍ୱହୀନ ଏକ ସ୍ତରରେ ମୁଁ ଉର୍ଦ୍ଧ୍ୱମୁହାଁଭାବେ ବିଚରଣ କଲାବେଳେ ସମସ୍ତ ବିରୋଧ ଶକ୍ତି ମୋ ଆଖିକୁ ଅତ୍ୟନ୍ତ କ୍ଷୀଣ ଓ ମ୍ରିୟମାଣ ଜଣାଯାଉଥିଲା । ଏ ସ୍ତରରେ ଗତି କଲା ପରେ ନିମ୍ନସ୍ତରକୁ କୌଣସି କାରଣରୁ ଖସିଆସିବା ମୋ ପକ୍ଷରେ ଘୋର ଲଜ୍ଜା, ଘୋର ଆତ୍ମଗ୍ଲାନି ଘଟିବ ଏବଂ ସେହି ପରିସ୍ଥିତି ସହିତ ମୁଁ କୌଣସି ମତେ ସନ୍ଧି ବା ବୁଝାମଣା କରିପାରିବିନାହିଁ, ଏ ଦମ୍ଭ ମୋର ମୌଳିକ ଆଭିଜାତ୍ୟ ଯୋଗାଉଥିଲା । ଅସ୍ପଷ୍ଟ ଭବିଷ୍ୟତ୍‌ର କେତେ ନିର୍ଯାତନା, କେତେ ଅତ୍ୟାଚାର, କେତେ ଅପମାନ ସହିବାକୁ ହେବ ଏହା ସ୍ପଷ୍ଟ ପ୍ରତୀୟମାନ ହେଉଥିଲା; କିନ୍ତୁ ମୃତ୍ୟୁକୁ ବରଣ କରିଥିବା ଯେକୌଣସି ବୀର ପକ୍ଷରେ ତାହା କାମ୍ୟ ବୋଲି ସେ ଦୁଶ୍ଚିନ୍ତାକୁ ହସରେ ଉଡ଼ାଇଦେଉଥିଲି । ଗୀତାର ''ସ୍ୱର୍ଗପ୍ରାପ୍ତି କିମ୍ବା ମହିଭୋଗ'' କରିବା ପରିଣତିମାନ ମଧ୍ୟ ମୋ ବିବେଚନାରେ ଘୃଣ୍ୟଜଣାଗଲା । କାରଣ କୌଣସି ପୁରସ୍କାର ପ୍ରଲୋଭନରେ ମୁଁ ଏହା କରିବାକୁ ବାହାରୁନଥିଲି । ମୋର ହୃଦୟସ୍ଥିତ ଏକ ଦୁର୍ନିବାର ତୃଷ୍ଣା ମେଣ୍ଟାଇବାକୁ, ଏକ ବିଷମ ସମସ୍ୟାର ସମାଧାନ କରିବାକୁ, ଏବଂ ଏକ ମହତ୍ତ୍ୱମୟ ଆବେଗକୁ ପଥଦେବାକୁ ମୋ ନିଜପାଇଁ ଆତ୍ମହତ୍ୟା ନକରି କିପରି ଆତ୍ମରକ୍ଷାକରି ଏହା ସାଧିତ ହୋଇପାରିବ ଏହାହିଁ ମୋର ଏକାଗ୍ର ଚିନ୍ତା ଥିଲା । ନିଜେ ମରିବା ଆଗରୁ ଶତସହସ୍ର ବିରୁଦ୍ଧବାଦୀଙ୍କୁ ଅତର୍କିତଭାବେ ମାରିପାରିବି ଏହାହିଁ ମୋର

ଶେଷ ସିଦ୍ଧାନ୍ତ, ସଙ୍କଳ୍ପ– ଯାହାକୁହ ଏକମାତ୍ର ବିଚାର ଥିଲା । ସମସ୍ତ ହୃଦୟଟି ବିସ୍ଫୋରକ ଦ୍ରବ୍ୟପରି ଅଗ୍ନିସଂଯୋଗ ଓ ବିସ୍ଫୋରଣକୁ ଅପେକ୍ଷାକରି ରହିଥିଲା ମାତ୍ର ।

ଦାସେ ଆପଣେଙ୍କ ନିର୍ଦ୍ଦେଶମତେ ଖବରକାଗଜ ନିୟମିତ ପଢ଼ିବାକୁ ଆରମ୍ଭ କଲି ଏବଂ କିଛି କିଛି ବୁଝୁଥାଏ, କିଛି କିଛି ବୁଝୁନଥାଏଁ– ଏହିପରିଭାବେ କିଛିଦିନ ପରେ ବୁଝିପାରିଲି 'ଅହିଂସା ଅସହଯୋଗ'ର ମର୍ମ; କିନ୍ତୁ ଧୈର୍ଯ୍ୟର ଯେ ସୀମା ଅଛି । ଅସ୍ତ୍ରର ତାତ୍‌କାଳିକ ସମାଧାନକୁ ଛାଡ଼ି ଏ ଅହିଂସା ପଥକୁ ଗୀତାଶିଷ୍ୟ ଭାରତବାସୀ ଗ୍ରହଣ କରିବାରେ ମୋର ଘୋର ସନ୍ଦେହ ହେଲା । ତଥାପି ଆପାତତଃ ଆଲୋଡ଼ିତ ଅବସ୍ଥାରେ ମୁଁ କାଳକ୍ଷେପଣ କରିବାଠାରୁ ଅହିଂସା ଅସହଯୋଗକୁ ବରଣ କରିନେବା ଶ୍ରେୟ ମନେକଲି । ଦାସେ ଆପଣେଙ୍କ ନିକଟରେ ସବୁ ମନକଥା ପ୍ରକାଶ କରିବାର ସୁଯୋଗ ଉଣ୍ଟୁଥାଏ । କିନ୍ତୁ ଏଦିଗରେ କିଛି ଆଲୋଚନା କିମ୍ବା ସମାଲୋଚନା ନହେଲେ ମୁଁ ମନକଥା ପ୍ରକାଶକଲେ କାଳେ ବେହେଡା ହବ, ଏଥିପାଇଁ ମୁଁ ସଙ୍କୋଚ ବୋଧକଲି; କିନ୍ତୁ ମନମଧ୍ୟରେ ବିଶ୍ଳେଷଣ କରୁଥାଏଁ ଏହା ମୋର ସତ୍‌ସାହସର ଅଭାବ ନୁହେଁ ତ ? କ୍ରମଶଃ ଗାନ୍ଧିଜୀଙ୍କ ପ୍ରବନ୍ଧ ପରେ ପ୍ରବନ୍ଧ ମୋ ଭ୍ରାନ୍ତିକୁ ସମ୍ପୂର୍ଣ୍ଣ ତୁଟାଇଦେଲା ଏବଂ ଅକୂଳ ସମୁଦ୍ରରେ କୂଳ ପାଇବାଭଳି ଏପରି ଏକ ଅବସ୍ଥାରେ ପହଞ୍ଚିଲି ଯେ କୋଷମୁକ୍ତ ପ୍ରଜାପତି ପରି ଉଡ଼ିଯାଇ ଦାସେ ଆପଣେଙ୍କୁ ମୋ ସିଦ୍ଧାନ୍ତ ଜଣାଇଦେଲି । ସେ ଟିକିଏ ବିସ୍ମିତ ହୋଇଯାଇ ପଚାରିଲେ– "ଆମ ପିଲାଏ ତେବେ ଗାନ୍ଧୀ ମହାତ୍ମାଙ୍କ କଥା ବିଚାରୁଛନ୍ତି ।" ତା'ପରେ କେତେ ଆଲୋଚନା ହେଲା, ଅବଶ୍ୟ ଏକାନ୍ତରେ । ମୋ ଦୃଢ଼ତା ଦେଖି ସେ ଖୁବ୍ ଖୁସିହେଲେ ଏବଂ ଘୁଣାକ୍ଷରେ ମଧ୍ୟ ମତେ ନିବର୍ତ୍ତାଇନାହାନ୍ତି । କେବଳ ଆଇ.ଏ. ଟେଷ୍ଟ ପରୀକ୍ଷାଟା ଦେବାକୁ ଓ କଲିକତା ସ୍ୱତନ୍ତ୍ର କଂଗ୍ରେସ ଅଧିବେଶନ ପ୍ରସ୍ତାବକୁ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଲେ । କଲିକତା ଅଧିବେଶନ ଲାଲା ଲଜପତ ରାୟଙ୍କ ସଭାପତିତ୍ୱରେ ବସିଲା ଓ ଗାନ୍ଧିଜୀଙ୍କ ପ୍ରସ୍ତାବ ଗୃହୀତ ହୋଇପାରିଲାନାହିଁ । ତଥାପି ଦାସେ ଆପଣେ ଆନୁଷ୍ଠାନିକଭାବେ ମା'ଙ୍କ ଦ୍ୱାରା କଲେଜ ପ୍ରିନସ୍‌ପାଲଙ୍କଠାକୁ ଅସହଯୋଗ ମର୍ମରେ ପତ୍ର ଲେଖିବାକୁ ପତ୍ର ଖଣ୍ଡେ ନକଲ କରିଦେଲେ । ଟେଷ୍ଟ ପରୀକ୍ଷା ଫଳକୁ ଅପେକ୍ଷା କରିବାକୁ ମୋର ଅବସର ନଥିଲା । ଭାରତବର୍ଷରେ ପ୍ରଥମ ଅସହଯୋଗୀ ଛାତ୍ରଭାବେ ମୋ ନାଁ ପ୍ରାୟ ସବୁ କାଗଜରେ ବାହାରିଗଲା । ମୋ ଆଭିଜାତ୍ୟରେ ଯେଉଁ ଘନ ଘନ ଆଘାତ ଲାଗୁଥିଲା ତାହା କ୍ରମଶଃ ପ୍ରଶମିତ ହୋଇଗଲା ।

—

# ଓଡ଼ିଶାରେ ଅସହଯୋଗର ଅଗ୍ରଗତି

୧୯୨୦ ସେପ୍‌ଟେମ୍ବର ମାସରେ କଲିକତାର ସ୍ୱତନ୍ତ୍ର ଅଧିବେଶନ ଗାନ୍ଧିଜୀଙ୍କ ଅସହଯୋଗ ନୀତିକୁ ପ୍ରସ୍ତାବଭାବେ ଗ୍ରହଣ କରିଥିଲେ ମଧ୍ୟ କାର୍ଯ୍ୟତଃ ଗ୍ରହଣ କରିବାର ବହୁ ଦୂରରେ ଥିଲା; ବିଶେଷତଃ ନାଗପୁର ସାଧାରଣ ଅଧିବେଶନକୁ ସମସ୍ତେ ଚାହିଁ ରହିଥିଲେ ।

କଲିକତାର ସ୍ୱତନ୍ତ୍ର ଅଧିବେଶନ ପ୍ରସ୍ତାବ ପ୍ରଥମେ ମୋଠାରେ, ଦ୍ୱିତୀୟରେ ମାନ୍ଦ୍ରାଜର ଗୋଟିଏ ଛାତ୍ରଠାରେ, ତୃତୀୟରେ ଗୁଜରାଟର ଆଉ ଗୋଟିଏ ଛାତ୍ରଠାରେ କାର୍ଯ୍ୟକାରୀ ହେଲା, କଲେଜ ଛାଡ଼ିବାଦ୍ୱାରା ।

ମୁଁ ପ୍ରଥମ ଅସହଯୋଗୀ ଛାତ୍ର ଥିବାରୁ ଚାରିଆଡେ ମୋତେ ଖୁବ୍ ପ୍ରଶଂସା କଲେ ଏବଂ ଯଦିଓ ମୋ ଭବିଷ୍ୟତ୍ ଉନ୍ନତିରୁ ସୁବିଧା ଓ ଲାଭ ଉଠାଇବାପାଇଁ ଆଶା ରଖିଥିବା କେତେ ସମ୍ପର୍କରୁ ମୁଁ ଯଥେଷ୍ଟ ବାଧାପାଇଥିଲି, ତଥାପି ମୋ ମନରେ ମୁଁ ଗୋଟାଏ ସ୍ୱତନ୍ତ୍ର ଶ୍ଲାଘା ଅନୁଭବ କରୁଥିଲି ।

ସେତେବେଳକୁ ରାଜନୈତିକ ମର୍ମ ସମ୍ବନ୍ଧରେ ମୁଁ ଯଥେଷ୍ଟ ସଚେତ ହୋଇ ସାରିଲିଣି ଏବଂ ଖବରକାଗଜ ବର୍ଣ୍ଣିତ ରାଜନୈତିକ ପ୍ରତ୍ୟେକଟି ଘଟଣା ସହିତ ସୁପରିଚିତ ହେବାକୁ ମୋତେ ସହଜ ବୋଧହେଲାଣି । ଏପରିକି ଯେତେ ଯେତେ ଶିକ୍ଷିତ ସ୍ଥଳୀମାନଙ୍କରେ ମୋ ଅବାଧ ପ୍ରବେଶର ଅଧିକାର ଥାଏ, ସେଠାରେ ଯେଉଁସବୁ ଅସହଯୋଗ ସପକ୍ଷରେ ଓ ବିପକ୍ଷରେ ତର୍କ ଉଠେ, ମୁଁ ସଫଳତାର ସହିତ ପ୍ରତ୍ୟେକଟି ତର୍କରେ ଅବତୀର୍ଣ୍ଣ ହୁଏ । ମୁଁ ସେମାନଙ୍କୁ ତର୍କରେ ସନ୍ତୁଷ୍ଟ କରିପାରେ କି ନା ଠିକ୍ କହି ପାରିବିନାହିଁ; କିନ୍ତୁ ମୁଁ ଯେ ତଦ୍ୱାରା ନିଜ ମଧ୍ୟରୁ ନୂଆ ନୂଆ ଯୁକ୍ତି, ନୂଆ ନୂଆ ପ୍ରେରଣା ଲାଭ କରି ନିଜେ ଅଧିକରୁ ଅଧିକତର ଅନୁପ୍ରାଣିତ ହେଉଥାଏ, ତାହା ବୋଲିବା ବାହୁଲ୍ୟ ।

ମୁଁ ଆନ୍ଦୋଳନରେ ଯୋଗଦେବା ଦୁଇବର୍ଷ ଆଗରୁ ଆଠଗଡ଼ରେ କୋର୍ଟ ଅଫ୍ ୱାର୍ଡସ୍ ଶାସନ ଚାଲୁ ହୋଇଥାଏ । ବାଙ୍କାବଜାର କିଶୋର ପରିବାରର ବୀରକିଶୋର ଦାସ ସୁପରିନ୍‌ଟେଣ୍ଡେଣ୍ଟ ହୋଇଥାନ୍ତି । ଅଭିଜାତ ବଂଶର ଲୋକ ହିସାବରେ ଓଡ଼ିଶାରେ

---

* ଦିଗନ୍ତ ପତ୍ରିକାରେ ମୋ 'ଜୀବନ-ସ୍ମୃତି'ର ଦୁଇଟି ଲେଖା ବାହାରିଚି । ୧୯୨୦ରୁ ୧୯୨୬ ଏହି ପାଞ୍ଚଟି ବର୍ଷର ଅଭିଜ୍ଞତା ବିଷୟରେ ପ୍ରଶ୍ନ ଆସିବାରୁ ଏ ଲେଖାଟି ପାଠକମାନଙ୍କ ଇଚ୍ଛାର ମର୍ଯ୍ୟାଦା ରକ୍ଷାପାଇଁ ଲେଖିଲି । —ଲେଖକ ।

ସେ ଅପ୍ରତିଦ୍ୱନ୍ଦ୍ୱୀ ବ୍ୟକ୍ତି ହିସାବରେ ତାଙ୍କର ବହୁ ଭଲଗୁଣ ଥିଲେ ମଧ୍ୟ ଶାସକ ହିସାବରେ ତାଙ୍କର ଯଥେଷ୍ଟ ସ୍ଖଳନ ଥିଲା ଶାସନ କ୍ଷେତ୍ରରେ । ବ୍ୟକ୍ତିଗତ ତୁଷ୍ଟି ବା ପାତରଅନ୍ତର ସୁବିଧା ଦେବାପାଇଁ, ନ୍ୟାୟକୁ ସେ ଆଶାତୀତଭାବେ ସଙ୍କୋଚନ କରିଦେଉଥିଲେ । ରାୟପୁର ରାଜକୁମାର କଲେଜରେ ପଢୁଥିବା ନାବାଳକ ରାଜା ଓ ରାଜକୁମାରଙ୍କର ଏହିପରି କେତେକ ବୈଷୟିକ ବ୍ୟାପାରରେ ଅଭିସନ୍ଧିମୂଳକ ହସ୍ତକ୍ଷେପ କରିଥିବାରୁ, ଏଥିପୂର୍ବେ ତାଙ୍କ ବିରୋଧରେ ମୁଁ ଗୋଟିଏ ଅଭିଯୋଗ ଅନୁଗୁଳରେ ଥିବା ଡେପୁଟି କମିଶନରଙ୍କ ପାଖରେ ଉପସ୍ଥାପିତ କରିଥିଲି । ସେ ଅଭିଯୋଗ ରାଜମାତାଙ୍କ ସପକ୍ଷରେ ମୀମାଂସିତ ହୋଇଥିଲେ ମଧ୍ୟ ତାଙ୍କ ଶାସକ-ସୁଲଭ ଅହଙ୍କାରରେ ଯଥେଷ୍ଟ ଆଞ୍ଚ ଆସିଥିଲା । ସେଥିପାଇଁ ମୋ ଗତିବିଧି ପ୍ରତି କ୍ରୂର ଲକ୍ଷ୍ୟ ରଖିଥିଲେ ।

ଅସହଯୋଗ ଆନ୍ଦୋଳନରେ ଯୋଗଦେବା ପରେ ମୋ ପରିବର୍ତ୍ତନ, ଆଠଗଡ଼ର ଶିକ୍ଷିତ ସଂପ୍ରଦାୟରେ ନିଶ୍ଚିତ ପ୍ରତିକ୍ରିୟା ସୃଷ୍ଟି କରିବାକୁ ସମର୍ଥ ହୋଇପାରିଥିଲା ଏବଂ ପରେ ପରେ ମୋ ମୃଦୁ ରାଜନୈତିକ ପ୍ରୟୋଗ ଏକ ମହାଭାରତୀୟ ସ୍ତରରେ ପରିଚାଳିତ ହେଉଥିବାରୁ, ଯଦିଓ ଆଠଗଡ଼ର ସ୍ଥାନୀୟ ଶାସନକଳ ମୋପକ୍ଷରେ ପ୍ରତିକୂଳ ଥିଲା, କିନ୍ତୁ ହଠାତ୍ ଆକ୍ରମଣ କରିବାକୁ ସତ୍ସାହସ ନଥିଲା ।

କଲିକତାଠାରେ ଲାଲା ଲଜପତ୍ ରାୟଙ୍କ ନେତୃତ୍ୱରେ ହୋଇଥିବା ସ୍ୱତନ୍ତ୍ର ଅଧିବେଶନରେ ଗୃହୀତ ଅସହଯୋଗ ପ୍ରସ୍ତାବାବଳୀ ପ୍ରଧୂମିତ ଅଗ୍ନିପରି ଅପେକ୍ଷା କରି ନାଗପୁର ସାଧାରଣ କଂଗ୍ରେସ ଅଧିବେଶନରେ ପ୍ରଜ୍ୱଳିତ ହୋଇଉଠିଲା । ଆମ ଓଡ଼ିଶା ରାଜନୀତିରେ ଦେଶମିଶ୍ରଣ ପ୍ରସ୍ତାବ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଥିବାରୁ ଓଡ଼ିଶା ନେତୃତ୍ୱରେ ଦ୍ୱିଧା ଦେଖାଦେଲା ସତ; କିନ୍ତୁ ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ଯୁବ ଶକ୍ତିର ସମର୍ଥନରେ 'ଦାସେ ଆପଣେ' କେବଳ ଯେ ଆଗେଇଗଲେ ତାହା ନୁହେଁ, ଭାରତୀୟ କଂଗ୍ରେସ ସଙ୍ଗଠନ ମାଧ୍ୟମରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ସୃଷ୍ଟିକରି, ଅସହଯୋଗ ବୈପ୍ଲବିକ ସ୍ରୋତର ବାହକ ହୋଇ ଓଡ଼ିଶାକୁ ଫେରିଆସିଲେ । ଜାତୀୟ ଇତିହାସ କହିବ, ଉତ୍କଳରୁ ଯେଉଁମାନେ ଏହି ବିରାଟ ମହାଭାରତୀୟ କଂଗ୍ରେସ ସଙ୍ଗଠନରେ ଭାଗନେଇଥିଲେ । ତାହା ଉଲ୍ଲେଖ କରି ପାଠକମାନଙ୍କୁ କ୍ଲିଷ୍ଟ କରିବି ନାହିଁ ।

ଉତ୍କଳର ପୁରପଲ୍ଲୀରେ ଅସହଯୋଗର ବନ୍ୟା ପ୍ଲାବିତ ହେଲା । ସେ ପ୍ଲାବନ ଭାରତବର୍ଷର ଚକିତ ଦୃଷ୍ଟି ଆକର୍ଷଣ କରିବାକୁ କେବଳ ଯେ ସବୁମନ୍ତେ ସମର୍ଥ ହୋଇପାରିଥିଲା, ତାହା ଲେଖିବାକୁ ଗୌରବ ବୋଧହୁଏ । ଆମ ଐତିହ୍ୟ, ଆମ ପରମ୍ପରା, ଆମ କୃଷ୍ଟି ସେହି ପ୍ଲାବନ ମଧ୍ୟରେ ଏକ ପ୍ରତିଷ୍ଠା, କେବଳ ଉପଲବ୍ଧ ନୁହେଁ, ଉପାର୍ଜନ କରିପାରିଥିଲା । ଯେଉଁ ଯୁବଶକ୍ତି ଅନ୍ୟଥା, ବ୍ୟକ୍ତିଗତ ଭାବୀ ସୁଖ ସମୃଦ୍ଧିର ସ୍ୱପ୍ନିଳ ଲାଳସା କୂପରେ ବୁଡ଼ି ମରି ମୋହଗ୍ରସ୍ତ ହୋଇଥାନ୍ତା,

ଭାସିଉଠିଲା ସମୁଦ୍ର ତରଙ୍ଗରେ ସନ୍ତରଣ କରିବାକୁ ସଂକଳ୍ପ କରି– ''ମନ୍ତ୍ରଂ ବା ସାଧୟେତ୍ ଶରୀରଂ ବା ପାତୟେତ'' ବ୍ରତଧରି, ଦାସତ୍ୱ ସମୁଦ୍ରର ଅନ୍ୟ ତୀରରେ ଲାଗିବାକୁ ସ୍ୱାଧୀନତାର, ମୁକ୍ତିର ଅଭିଷେକ ବେଦି ଯେଉଁଠି ।

୧୯୨୧ ପ୍ରାରମ୍ଭରୁ ଉତ୍କଳ ପ୍ରାଦେଶିକ ସଂଗଠନ କଟକରେ ପ୍ରଧାନ କେନ୍ଦ୍ର ଖୋଲି କାର୍ଯ୍ୟକାରୀ ହେଲା । ମହାତ୍ମାଗାନ୍ଧୀ ଦୋଳପୂର୍ଣ୍ଣିମା ଦିନ କଟକରେ ପଦାର୍ପଣକରିବା ସ୍ଥିର ହୋଇଥାଏ । ତେତେବେଳେ ଜନଗଣନାର ଦାୟିତ୍ୱ ସମୟ । ଆଠଗଡ଼ର ଜଣେ ଅଧିବାସୀଭାବେ ଗଣନା ତୁଳାଇବାକୁ ମୁଁ ଆଠଗଡ଼ ଯାଇଥିଲି । ସେଠାରେ ଗୋଟିଏ ଆଦେଶ ଜାରିଥାଏ ଯେ, ଗଣନାର ନିର୍ଦ୍ଦିଷ୍ଟ ସମୟରେ ସମସ୍ତେ ଘରେ ଉପସ୍ଥିତ ରହିବେ, ନରହିଲେ ଦଣ୍ଡନୀୟ ହେବାକୁ ହେବ । ବରାବର ଅନୁପସ୍ଥିତ ରହୁଥିବାରୁ ଆଠଗଡ଼ ଶାସକଙ୍କର ଏ ଆଦେଶ ନଜାଣିବା ମୋ ପକ୍ଷରେ ସ୍ୱାଭାବିକ । ତେଣୁ ନିର୍ଦ୍ଦିଷ୍ଟ ସମୟରେ ମୁଁ ଘରେ ନଥାଇ ସନ୍ନିକଟସ୍ଥ ପଡ଼ିଶାଘରେ ଥିଲି । ଖବରପାଇ ଆସିବା ବେଳକୁ ଆମ ଘରର ମାତ୍ର ପାଞ୍ଚଜଣ ସଂଖ୍ୟକ ଗଣନା କାମ ଶେଷହୋଇଥିଲା ଏବଂ ତହିଁରେ ମୋ ସଂଖ୍ୟା ମଧ୍ୟ ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ତାହା ମୋ ପକ୍ଷରେ ଏକ ଆଦେଶ ଅମାନ୍ୟ ଅପରାଧଭାବେ ଧରାଯାଇ ଗଣନା ସମୟର ମାତ୍ର ଦୁଇଘଣ୍ଟା ପରେ, ଅର୍ଥାତ୍ ରାତି ୯ଟାରେ ମୋତେ ଗିରଫ କରାଗଲା । ଅବଶ୍ୟ ମୁଁ ଯଥେଷ୍ଟ କୌତୂହଳାକ୍ରାନ୍ତ ହୋଇଥିଲି ସତ; କିନ୍ତୁ ଦୁଇଦିନ ପରେ ମହାତ୍ମାଜୀ କଟକ ଆସୁଥିବାରୁ ଓ ମୋଠାରେ ତତ୍‌ସମ୍ପର୍କୀୟ କେତେକ ଦାୟିତ୍ୱ ଥିବାରୁ, ତାହାସବୁ ଭଣ୍ଡୁର କରିଦେବା ଅଭିସନ୍ଧିରେ ସେମାନେ ମୋତେ ବନ୍ଦୀ କରିଦେବା ସ୍ଥିରକରିଥିଲେ । ଏହିପରି ସମ୍ବାଦ ବିଶ୍ୱାସଯୋଗ୍ୟ ସୂତ୍ରରୁ ପାଇ ମୁଁ ପରଦିନ ସକାଳୁ ପ୍ରାତଃକୃତ୍ୟପାଇଁ ପୁଲିସ ଜଗୁଆଳରେ ଯାଇଥିବା ସମୟରେ ଘନ ଜଙ୍ଗଲ ମଧ୍ୟରେ ଅଦୃଶ୍ୟ ହୋଇଗଲି । ଯଥା ସମୟରେ ଥାନା ଅଫିସର ସମ୍ବାଦ ପାଇବାମାତ୍ରେ ହାତକଡ଼ି ସହିତ ଗୋଟିଏ ଅଶ୍ୱାରୋହୀ ପୁଲିସ ମୋତେ ବାଟରୁ ଧରିଆଣିବାକୁ ଦଉଡ଼ାଇଦେଲେ । ମୁଁ ତାହା ଆଶଙ୍କା କରି ଧବଳେଶ୍ୱର ଘାଟ ସଦର ରାସ୍ତାଟି ଛାଡ଼ି ଡାଉଆକୋଟ ଘାଟକୁ ଗ୍ରାମ୍ୟରାସ୍ତା ଧରିଥାଏ । କନ୍ତୋଲ ଗ୍ରାମର ଠିକ୍ ପଶ୍ଚିମକୁ ମୁଁ ଠିକ୍ ସଦର ରାସ୍ତା ପାରିହେବାବେଳକୁ ଘୋଡ଼ସବାର ଠିକ୍ ସେହି ସମୟରେ ଶହେଗଜ ଦୂରରେ ଆସୁଥିଲେ, ଅଥଚ ମୋତେ ଦେଖି ଚିହ୍ନିନପାରି ଉଭୟେ ଉଭୟଙ୍କର ଗନ୍ତବ୍ୟ ପଥରେ ଆଗେଇଲୁ । ଚିହ୍ନିନପାରିବାର ଏକମାତ୍ର କାରଣ ମୋର ବେଶ ବଦଳ । ଆଠଗଡ଼ରେ ସମସ୍ତେ ପ୍ରାୟ ମୋତେ ଚିହ୍ନନ୍ତି ସାଆନ୍ତିଆ ବେଶରେ । ଖଦଡ଼, ପୁଣି ପ୍ରଥମ ଅବସ୍ଥାରେ ଅଖାପରି ମାତ୍ର ଦୁଇଖଣ୍ଡି । ଆବଶ୍ୟକୀୟ ଓସାର ଓ ପରିଷ୍କାର ପରିଚ୍ଛନ୍ନତାର ବହୁ ଦୂରରେ । ଖଦଡ଼ର ପ୍ରଥମ ସୁଫଳ ମୁଁ ଏହିପରିଭାବେ ଲାଭକଲି ।

ମୁଁ ଯେଉଁ ବାଟ ଧରିଥିଲି ସେବାଟ ମୋ ପକ୍ଷରେ ଅପରିଚିତ । ବାଟ ଚାଲିବା ମଧ୍ୟ ମୋ ପକ୍ଷରେ ପ୍ରଥମ ପ୍ରୟାସ । ବାଟରେ ପଥରଚକଡ଼ା ଗ୍ରାମ ପଡ଼ିବ । ଲକ୍ଷ୍ୟଥିଲା ସେଠାରେ ଥିବା ମୋର ଜଣେ ବିଶ୍ୱସ୍ତ ଲୋକଙ୍କୁ ବାଟ କଢ଼ାଇବାକୁ ସାଙ୍ଗରେ ଧରିବି । ପଚାରି ପଚାରି ତାଙ୍କର ଘରେ ପହଞ୍ଚିବାବେଳେ, ନଟ ପାଣି ଉପସ୍ଥିତ ଥିଲେ । ମୋତେ ଦେଖିବାମାତ୍ରେ ସେ ସ୍ତମ୍ଭିତ ହୋଇଗଲେ ଏବଂ ନିଜ ଆଖିକୁ ଘୋର ସନ୍ଦେହ କରିବା ପରି ଜଣାଯାଉଥିଲେ । ସଂକ୍ଷେପରେ ମୋ ସାଙ୍ଗରେ ଯିବାକୁ ଅନୁରୋଧ କଲି ଏବଂ ଅଧମିନିଟିଏ ସମୟ ମଧ୍ୟରେ ସେ ବାଡ଼ିଟିଏ ଧରି ବାହାରିପଡ଼ିଲେ । ମହାନଦୀ କୂଳରେ ପହଞ୍ଚିବାବେଳକୁ ୧୧ଟା ହୋଇଥିଲା । ଅଧମାଇଲିଏ ବା ଟିକିଏ ଅଧିକ ପଥ ମହାନଦୀ ବକ୍ଷର ସୈକତ ଶଯ୍ୟା ଅତିକ୍ରମ କଲେ ପାଣି ଓ ଘାଟ ପଡ଼ିବ । ମରୁଭୂମି ବିଷୟରେ ବହିରେ ପଢ଼ିବା ଛଡ଼ା କେବେ ଜୀବନରେ ଦେଖିନାହିଁ । ସେହି ବାଲୁକା ପଥ ଅଧମାଇଲିଏ ଅତିକ୍ରମ କରିବାଦ୍ୱାରା ମୋପକ୍ଷରେ ସେଦିନ ସମଗ୍ର ସାହାରା ଅତିକ୍ରମର ଅନୁଭୂତି ବୁଝିହୋଇଗଲା । ଅର୍ଦ୍ଧେକ ପଥ ନଯାଉଣୁ ଦାରୁଣ ତୃଷା କଲବଲ କରିପକାଇଲା । ଏଣେ ପ୍ରଖର ରଶ୍ମି ଜାଳରେ ତପ୍ତ ବାଲୁକା ଜ୍ୱଳନ୍ତ କୋଇଲା ପରି ଗୋଡ଼କୁ ଲାଗୁଥାଏ । ଦୁଇ ତିନିପାଦ ମାତ୍ର ଚାଲି ମୁଣ୍ଡରୁ ଖଦଡ଼ ଖଣ୍ଡିକ ତଳେ ପକାଇ ଛିଡ଼ା ନହେଲେ ରକ୍ଷାନାହିଁ । ବୋଧହେଲା ଶରୀରର ସମସ୍ତ ରକ୍ତ ବିନ୍ଦୁ ସ୍ୱେଦ ଆକାରରେ ବୋହିଗଲା ବୋଲି । ତଥାପି ପଥ ସରେନା । ଆଖିରୁ ଜୁଳୁଜୁଳିଆ ପୋକ ବାହାରିଗଲାପରି ଅଗ୍ନିସ୍ଫୁଲିଙ୍ଗ ବାହାରିଯାଉଥାଏ । ସମ୍ଭାଳିବାର ସୀମା ଶେଷହେବା ଉପରେ । ନଦୀର ନୀଳ ଜଳ ବେଣୀ ଦେଖାଗଲା । ଜଳଧାର ଦେଖାଗଲା ସିନା, ତଥାପି ଅଧଡାକେ ବାଟ । ମୃତ୍ୟୁର ବିଭୀଷିକା ପ୍ରତି ଲୋମକୂପରେ ଜଣାଗଲାଣି । କର୍ଣ୍ଣରନ୍ଧ୍ରରେ ଝିଙ୍କାରୀ ସ୍ୱନପରି ଝାଇଁ ଝାଇଁ ଶବ୍ଦ ଶୁଭୁଥାଏ । ଜଳ ବି ବେଶିଦୂର ନୁହେଁ, ମୃତ୍ୟୁ ବି ବେଶିଦୂର ନୁହେଁ । ଏହି ଘଡ଼ିସନ୍ଧିବେଳେ ଅବଲୁପ୍ତ ଚେତନ ହୋଇଯାଇଥିଲି । ପାଣିରେ ପଶିବାବେଳକୁ ଜଳର ଯେଉଁ ନାମ 'ଜୀବନ' ତାହା ମୋପକ୍ଷରେ ସାର୍ଥକ ଜଣାଗଲା ସେହି କରାଳ କାଳ ମୁହୂର୍ତ୍ତରେ । ଯନ୍ତ୍ରଣା ସହିବାରେ ମଧ୍ୟ ସିଦ୍ଧି ହୋଇଗଲା ବୋଲି ମନେହେଲା ।

କହିବା ବାହୁଲ୍ୟ ଯେ ମୋ ସଙ୍ଗୀ ନଟ ପାଣିଙ୍କୁ ମୋ ବିକାର ବିଷୟରେ କିଛି ଜାଣିବାକୁ ଦେଇନଥିଲି ଏବଂ ଖରା ବର୍ଷାରେ ଅଭ୍ୟସ୍ତ ନଟ ପାଣି ସେହି ଅଗ୍ନିମୟ ମରୁରେ ଅବିକୃତଭାବେ ଚାଲିଥିଲେ । ବୋଧହୁଏ ତାଙ୍କ ନିର୍ବିକାର କଷ୍ଟସହିଷ୍ଣୁତା ଗୁଣ ମୋତେ ସେ ମୃତ୍ୟୁଶଯ୍ୟାରେ ପଥ କଢ଼ାଇଆଣିଲା ।

ଆହା ! କଣହେବ, ଘାଟରେ ଏତେ କଷ୍ଟରେ ପହଞ୍ଚିବାବେଳକୁ ଘାଟିଆ ନାହିଁ । ଖରାବେଳେ ଘାଟ ଛାଡ଼ି ଘରକୁ ଚାଲିଯାଏ ଏବଂ ଦ୍ୱିପ୍ରହର ପରେ ଛାଇ ଆଡେଇଲେ

ଘାଟକୁ ଆସେ । ତେଣୁ ଆମ ଦୁହିଁଙ୍କୁ ସମସ୍ତ ଦ୍ୱିପ୍ରହରଟି ଛାୟା ମାୟା ହୀନ ସେହି ସ୍ଥାନରେ ଜ୍ୱଳନ୍ତ ମାର୍ତ୍ତଣ୍ଡଙ୍କ ତୀକ୍ଷ୍ଣ ଶରଜାଳର ଶରବ୍ୟ ହୋଇ ପଡ଼ି ରହିବାକୁ ପଡ଼ିଲା । ଦୁର୍ନିବାର ତୃଷ୍ଣା ମେଣ୍ଟାଇବା ପରେ କ୍ଷୁଧା ପାଇଁ କୌଣସି ଭୟ ନଥିଲା । ଯଥାସମୟରେ ଘାଟିଆ ଆସିଲା ଓ ଘାଟ ପାରିକରିଦେଲା ଏବଂ ଘାଟ ପାରି ପରେ ଅନ୍ୟ ପାଖରେ ଦେଖାଗଲା, ସେହି ଘୋଡ଼ସବାର ଧବଳେଶ୍ୱର ଘାଟରୁ ଢାଉଆକୋଟ ଘାଟ ପର୍ଯ୍ୟନ୍ତ ମୋତେ ଅନ୍ୱେଷଣ କରି କରି ଚାଲିଆସିଛି । ମୁଁ ଘାଟିଆ ଦ୍ୱାରା ଖବର ଦେଲି, ଘୋଡ଼ସବାର ପୁଲିସଙ୍କୁ କହିବ, ଯାହାକୁ ଧରିବେ ବୋଲି ସେ ଦଉଡ଼ିଥିଲେ, ସେ ଏହି ଘାଟରେ ପାରିହୋଇଗଲାଣି । ବର୍ତ୍ତମାନ ଅଧିକ କଷ୍ଟ ସ୍ୱୀକାର ନ କରି ଗଡ଼କୁ ସେ ସ୍ୱଚ୍ଛନ୍ଦରେ ଫେରିଯାଇପାରନ୍ତି ।'' ଘାଟିଆ ଟିକିଏ ବିବ୍ରତ ଓ ଶଙ୍କିତ ହେଲା । ତେତେବେଳକୁ ଆମ୍ଭେମାନେ ଡଙ୍ଗାରୁ ଓହ୍ଲାଇ ଆଠଗଡ଼ ରାଜ୍ୟ ସୀମା ଟପିସାରିଲୁଣି । ଗଡ଼ଜାତ ପୁଲିସ ଆସିଥିଲେ ମଧ୍ୟ ସେ କିଛି କରିବାକୁ ଉପାୟ ନଥିଲା ।

ଦୋଳ ଚତୁର୍ଦ୍ଦଶୀର ଉଜ୍ଜ୍ୱଳଜ୍ୟୋତ୍ସ୍ନାରେ କାଠଯୋଡ଼ି ବାଲି ସ୍ୱେଚ୍ଛାସେବକମାନଙ୍କ କୁଚ୍‌କବାଜରେ ମୁଖରିତ ହୋଇଉଠିଥାଏ । ପରଦିନ ସକାଳ ଏକ୍‌ସପ୍ରେସରେ ମହାତ୍ମାଜୀଙ୍କ ପଦାର୍ପଣ ପାଇଁ ସମଗ୍ର ନଗରଟି ଚଞ୍ଚଳ ହୋଇଉଠିଥିଲା । ଆମ୍ଭେମାନେ ସନ୍ଧ୍ୟାର ଅବ୍ୟବହିତ ପରେ ସ୍ୱରାଜ୍ୟାଶ୍ରମରେ ଯୋଗଦେଲୁଁ । ରାତି ଠିକ୍ ବାରଟା ପରେ ସ୍ୱରାଜ୍ୟାଶ୍ରମରୁ ଅଭ୍ୟର୍ଥନା ପଟୁଆର ବାହାରିଲା ଶ୍ରୀ ଯଦୁମଣି ମଙ୍ଗରାଜଙ୍କ ନେତୃତ୍ୱରେ । ହିନ୍ଦୁ ମୁସଲମାନ ପ୍ରାୟ ପାଞ୍ଚଶହ ସ୍ୱେଚ୍ଛାସେବକ ଏକତ୍ର ଧୀରେ ଧୀରେ ମାର୍ଚ୍ଚିଂ କରି ଷ୍ଟେସନ ଅଭିମୁଖରେ ଚାଲିଲେ । ''ବନ୍ଦେମାତରଂ'' ''ଆଲ୍ଲା ହୋ ଆକବର'', ''ମହାତ୍ମାଜୀ କି ଜୟ'', ସେହି ଗଭୀର ଜ୍ୟୋତ୍ସ୍ନା ପୁଲକିତ ବାସନ୍ତୀ ରାତ୍ରିକୁ ଉଦ୍‌ବେଳିତ କରି ସ୍ୱେଚ୍ଛାସେବକ ବାହିନୀ ଷ୍ଟେସନରେ ପହଞ୍ଚିଲେ ଏବଂ ଯଥାସ୍ଥାନମାନଙ୍କରେ ଶାନ୍ତିରକ୍ଷା ପାଇଁ ନିଯୁକ୍ତ ହୋଇ ଛିଡ଼ାହେଲେ । ଠିକ ଚାରିଟା ବେଳକୁ ଦେଖାଗଲା ଜନସ୍ରୋତ ଅସମ୍ଭାଳ ହୋଇଉଠିଚି । ରାତ୍ର ପାହିବାବେଳକୁ ଯେଉଁ ଅଦୃଷ୍ଟପୂର୍ବ ଜନ ସମାଗମ ଘଟିଥିଲା, ପ୍ରତ୍ୟକ୍ଷ ଦର୍ଶନ ବ୍ୟତୀତ ବିଶ୍ୱାସ କରିହେବନାହିଁ । ଷ୍ଟେସନରୁ ରାଣୀହାଟ ପୋଲ ପର୍ଯ୍ୟନ୍ତ କୋଠା ଛାତ, ବୃକ୍ଷ, ରାସ୍ତା, ପ୍ରାନ୍ତର ସବୁ ଲୋକାରଣ୍ୟ । ଏ ଜନସମୁଦ୍ରର ତରଙ୍ଗ ପରେ ତରଙ୍ଗର ଘାତ ପ୍ରତିଘାତକୁ ଆୟତ୍ତ କରିବ କିଏ ? ମାତ୍ର ପାଞ୍ଚଶହ ସ୍ୱେଚ୍ଛାସେବକ ! ଏକ ହାସ୍ୟାସ୍ପଦ ବ୍ୟାପାର ! ସମୁଦ୍ରକୁ ଶଙ୍ଖେ ପାଣି । ସମସ୍ତେ କିଂକର୍ତ୍ତବ୍ୟବିମୂଢ଼ ଓ ଚଳତ୍‌ଶକ୍ତିହୀନ ହୋଇ ଯିଏ ଯେଉଁଠି ସେ ସେଇଠି ଛିଡ଼ାହୋଇଥାନ୍ତି ଏକ ଆସନ୍ନ ବିପଦକୁ ପ୍ରତୀକ୍ଷା କରି । ନିଶ୍ଚୟ କିଛି ଗୋଟାଏ ଦୁର୍ଘଟଣା ଘଟିବାକୁ ଆଉ ବିଳମ୍ବ ନାହିଁ ।

''ମହାତ୍ମାଗାନ୍ଧୀ କି ଜୟ'' ଘନ ଘୋଷ ମଧ୍ୟରେ ଏକ୍‌ସପ୍ରେସ ପ୍ଲାଟଫର୍ମରେ ଆସି ଛିଡ଼ାହେଲା । ଉତ୍ତର ପାଖ ଶେଷ ମୁଣ୍ଡର ଗୋଟିଏ ତୃତୀୟ ଶ୍ରେଣୀ ଡବାରୁ

ଓହ୍ଲାଇ ପଡ଼ିଲେ, ଯୁଗ ଓ ଯୋଗଜନ୍ମା ମୋହନଦାସ କରମଚାନ୍ଦ ଗାନ୍ଧୀ, ଭାରତର ମହାତ୍ମା । ଆଭରଣ ମଧ୍ୟରେ ଖଦଡ଼ର ଗୋଟିଏ ଗାନ୍ଧୀଟୋପି ଓ ଗୋଟିଏ ପଞ୍ଜାବୀ, କୌଣସି ପରିପାଟିର ବହୁ ଦୂରରେ । ଉଦ୍‌ବେଳିତ ଜନସିନ୍ଧୁ ବହୁ ଆଗରୁ ବିପଦସୀମା ଟପିସାରିଥିଲା । ପ୍ରତ୍ୟେକେ ପ୍ରତି ମୁହୂର୍ତ୍ତରେ କିଛି ନା କିଛି ବିପଦ ଆଶଙ୍କା କରୁଥିଲେ । ସ୍ୱେଚ୍ଛାସେବକ, ପୁଲିସ, ରେଲଓୟେ ଶାସକ, ଇତ୍ୟାଦି ସବୁ ପ୍ରକାର ଶାନ୍ତି ଶୃଙ୍ଖଳା ଉଦ୍ୟମ ଆଗରୁ ଭାଙ୍ଗି ସାରିଥିଲା । କିନ୍ତୁ ଯେତେବେଳେ ସେ ବିରାଟ ଅତିଥି ରେଲଓ୍ୱେ ସୀମା ଟପିବାକୁ ହସ ହସ ମୁହଁରେ ଜନତାକୁ ନମସ୍କାର କରି କରି ଆଗେଇଲେ, ସମସ୍ତ ଜନତା ସେହି ଅଭୂତପୂର୍ବ ଭିଡ଼ରେ ମନ୍ତ୍ରମୁଗ୍ଧ କିମ୍ବା ଚିତ୍ରପୁତ୍ତଳିକା ପରି ପ୍ରତ୍ୟେକେ ପ୍ରତ୍ୟେକଙ୍କର ଶାନ୍ତିରକ୍ଷା ଦାୟିତ୍ୱ ଗ୍ରହଣ କରିନେଲେ । ଘୋର ବିଶୃଙ୍ଖଳା ଭିତରେ ଏକ ବିରାଟ ଶୃଙ୍ଖଳା ସ୍ୱତଃସ୍ଫୁର୍ତ୍ତ ଭାବେ ଫୁଟିଉଠିଲା । ଜନତାର ଏହି ପ୍ରଶାନ୍ତ ସଂଯମ, ଜାତୀୟଚରିତ୍ରର ଏକ ମର୍ଯ୍ୟାଦାତ୍ମକ ଉତ୍କର୍ଷକୁ ସୂଚାଇଦେଇଥିଲା– ଯାହା କି ଚିରକାଳପାଇଁ ମହାତ୍ମାଜୀଙ୍କୁ ଉତ୍କଳବାସୀଙ୍କ ସହିତ ଏକ ସ୍ୱତନ୍ତ୍ର ପ୍ରୀତି ବନ୍ଧନରେ ବାନ୍ଧିପାରିଥିଲା ।

ସେଦିନ ପ୍ରଥମ ସଭାଟି ଦ୍ୱିପ୍ରହର ବେଳେ କଦମରସୁଲ ହତାରେ ମୁସଲମାନ ଭାଇମାନଙ୍କୁ ଘେନି ଅନୁଷ୍ଠିତ ହେଲା । ଖିଲାପତ ସମ୍ପର୍କୀୟ ସମସ୍ତ କଥା ଟିକ୍‌ନିଖ୍ ଆଲୋଚନା ମଧ୍ୟରେ ବ୍ରିଟିଶ ରାଜନୀତିର ଖିଲାପତ୍ ପ୍ରତି ବିଦ୍ୱେଷମୂଳକ ଆଚରଣ ଏବଂ ଭାରତର ହିନ୍ଦୁ ମୁସଲମାନ ମିଳନ ମଧ୍ୟରେ ଭାରତର ସ୍ୱାଧୀନତା କିପରି ନିର୍ଧାର୍ଯ୍ୟ ଭାବେ ନିହିତ ଇତ୍ୟାଦି ବିଷୟରେ ଜାତୀୟ ସିଦ୍ଧାନ୍ତମାନ, ସେହି ସହାନୁଭୂତିସମ୍ପନ୍ନ ମୁସଲମାନ ଭାଇମାନଙ୍କ ନିକଟରେ ଉପସ୍ଥାପିତ ହୋଇଥିଲା । ଡାକ୍ତର ଏକରାମ ରସୁଲଙ୍କ ନେତୃତ୍ୱରେ ଓଡ଼ିଶା ମୁସଲମାନମାନଙ୍କର କଂଗ୍ରେସ ପ୍ରତି ଯେଉଁ ଅନୁରକ୍ତି ଓ ଆନୁଗତ୍ୟ ଉଦ୍ରେକ କରାଯାଇପାରିଥିଲା, ତାହା ସ୍ୱାଧୀନତା ଯୁଦ୍ଧର ଶେଷ ପର୍ଯ୍ୟନ୍ତ ଅପରିବର୍ତ୍ତିତ ଓ ଅବିକୃତ ହୋଇ ରହିପାରିଥିଲା । ପ୍ରଦେଶାନ୍ତରମାନଙ୍କରେ, ବିଶେଷତଃ ପ୍ରତିବେଶିନୀ ବଙ୍ଗଳାରେ, ଏକାଧିକ ବାର ଯେଉଁ ଲୋମହର୍ଷଣକାରୀ ରକ୍ତାକ୍ତ ଆତ୍ମକଳହର ସୃଷ୍ଟି ହୋଇଥିଲା, ତାହାର ସୁଦୂରପ୍ରସାରୀ ପ୍ରଭାବ ଓଡ଼ିଶା ଉପରେ ତିଳେମାତ୍ର ପଡ଼ିନଥିଲା । ଗାନ୍ଧୀଜୀ ଥରେ ତାଙ୍କ ସମ୍ପାଦିତ 'ୟଙ୍ଗଇଣ୍ଡିଆ'ରେ ଲେଖିଥିଲେ, ହିନ୍ଦୁ ମୁସଲମାନ ମିଳନ ଚେଷ୍ଟାରେ ଯଦି ମୁଁ କେବେ ମୁସଲମାନ ଆତତାୟୀ ଦ୍ୱାରା ନିହତ ହୁଏ, ତାହା ମୋ ପକ୍ଷରେ ପରମ ସିଦ୍ଧି ବୋଲି ବିବେଚିତ ହେବ । ସେହି ଉଦ୍ଦେଶ୍ୟରେ ଗସ୍ତ କରୁଥିବା ବେଳେ ଏବଂ ସ୍ୱାମୀ ଶ୍ରଦ୍ଧାନନ୍ଦଜୀଙ୍କ ହତ୍ୟା ପରେ କେହି କେହି ଗାନ୍ଧିଜୀଙ୍କୁ ସାବଧାନ ରହିବା ପାଇଁ ଅନୁରୋଧ କରି ଯେଉଁ ପତ୍ର ଲେଖିଥିଲେ, ତାହା ଉତ୍ତରରେ ସେ ଏହିପରି ଲେଖିଥିଲେ । ସେ ଯାହାହେଉ ଗାନ୍ଧିଜୀଙ୍କର ଏହି ସ୍ୱପ୍ନ ଆମ ଉତ୍କଳରେ ଯେପରି

ସଫଳ ଓ ସାର୍ଥକ ହୋଇଛି, ସାରା ଭାରତବର୍ଷରେ ସେପରି କୁତ୍ରାପି ହୋଇପାରିନାହିଁ । ଓଡ଼ିଶା ରାଜ୍ୟରେ ମୁସଲମାନ ସଂଖ୍ୟା ସ୍ୱଳ୍ପ ବୋଲି ଯେ ଏପରି ହୋଇପାରିଛି ତାହା ନୁହେଁ, ପ୍ରକୃତ ପକ୍ଷେ ଆମ ମିଳନରେ ହାର୍ଦ୍ଦିକତା ଓ ଆନ୍ତରିକତା ରହିଛି । ଆମ ଜନ୍ମଭୂମି ଭ୍ରାତୃଘାତୀ ଏକବିନ୍ଦୁ ରକ୍ତରେ ଯେ କଳଙ୍କିତ, କଳୁଷିତ ହୋଇନାହିଁ, ତାହା ଆମ ପକ୍ଷରେ ଏକ ଐତିହାସିକ ଗୌରବ । ଏହି ଦୃଷ୍ଟିରୁ ଭାରତର ସବୁ ପ୍ରଦେଶ ଆମ ନିକଟରେ ଖର୍ବ ହୋଇ ରହିଛି ଓ ରହିଥିବ । ଗାନ୍ଧୀଜୀଙ୍କର ଏହି ସ୍ୱପ୍ନ ଏହି ଆଦର୍ଶ ପାଇଁ ସେ ପ୍ରାଣପାତ କରିଛନ୍ତି । ତାଙ୍କ ହତ୍ୟା ମୂଳରେ ତାଙ୍କର ଏହି ପରମ ଓ ଚରମ ଆଦର୍ଶର ସଙ୍କେତ ଲାଞ୍ଛିତ ରହିଥିବା ଯୋଗୁଁ, ଆମର କଳ୍ପନା କରିବାର ଯଥେଷ୍ଟ କାରଣ ଅଛି ଯେ ଦିନେ ନା ଦିନେ ହିନ୍ଦୁ ମୁସଲମାନ ମୈତ୍ରୀ ଏକ ସିଦ୍ଧିରେ ପରିଣତ ହେବ । କିପରି ହେବ, କେବେହେବ ତାହା ଅବଶ୍ୟ ଆମ ପକ୍ଷରେ କଳ୍ପନାତୀତ । କିନ୍ତୁ ସମସ୍ତ ବିପରୀତ ପରିସ୍ଥିତି ସତ୍ତ୍ୱେ ଓ କ୍ରିୟାର ନିଶ୍ଚିତ ପ୍ରତିକ୍ରିୟା ସମ୍ବନ୍ଧରେ ଯେଉଁମାନଙ୍କର ସୂକ୍ଷ୍ମ ଓ ଦୃଢ଼ ଧାରଣା ଅଛି, ସେମାନେ ନିଶ୍ଚୟ ବିଶ୍ୱାସ କରନ୍ତି, ଏହା ଦିନେ ସାଧିତ ହେବବୋଲି । ସେତେବେଳେ ଏହାର ସାଧନର ବୀଜମନ୍ତ୍ର ଲୋଡ଼ାହେବାବେଳେ, ଉତ୍କଳ ଏକମାତ୍ର ଦେଶ, ଯେ କି ହିନ୍ଦୁ ମୁସଲମାନ ମିଳନରେ ଆବଶ୍ୟକୀୟ ନିର୍ମଳ ବୀଜମନ୍ତ୍ର ଯୋଗାଇପାରିବ । ପାକିସ୍ଥାନ ଏ ଅମୋଘ କର୍ତ୍ତବ୍ୟ ସାଧନରେ ପରାଙମୁଖ ହେଲେ, ସମଗ୍ର ମୁସଲମାନ ଜଗତ ତାହା ସାଧନ କରିବାକୁ ଆଗେଇଆସିବ, କ୍ରିୟାର ପ୍ରତିକ୍ରିୟା ଚାପରେ ବଶୀଭୂତ ହୋଇ । ହିନ୍ଦୁ ମୁସଲମାନ ମିଳନ ବିଷୟକ ସମସ୍ୟା ଭାରତ ପକ୍ଷରେ ଏକ ଜାତୀୟ ସମାଧାନ, ଏକ ସିଦ୍ଧାନ୍ତ । ଗାନ୍ଧୀଜୀଙ୍କ ପ୍ରଥମ ଉତ୍କଳ ପଦାର୍ପଣରେ ସର୍ବପ୍ରଥମେ ଏହି ବୀଜ ପ୍ରୋଥିତ କରିଥିଲେ ଏବଂ ସେହି ସ୍ମୃତିର ବାହକ ଭାବେ ଉତ୍କଳ ଚିରକାଳପାଇଁ ହୃଦୟରେ ସେ ପବିତ୍ର ନିର୍ଦ୍ଦେଶକୁ କାୟମନୋବାକ୍ୟରେ ସଞ୍ଚିତ ଓ ପାଳିତ କରି ରଖିଥିବ ।

ସେହି ସ୍ମରଣୀୟ ଦିନର ସନ୍ଧ୍ୟା ପୂର୍ବରୁ ହାତୀଗଡ଼ା ଘାଟ କାଠଯୋଡି ସୈକତ ଶଯ୍ୟାରେ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ପ୍ରଥମ ମହାଯୁଦ୍ଧରେ ଭାରତର ଅକୃତ୍ରିମ ସହଯୋଗର ପ୍ରତିକ୍ରିୟା ଯେତେବେଳେ ପଞ୍ଜାବ ଅତ୍ୟାଚାର ରୂପେ ସଂଘଟିତ ହେଲା, ସେତେବେଳେ ଅସହଯୋଗ ବ୍ୟତୀତ ଆଉ କୌଣସି ସମ୍ମାନଜନକ ପନ୍ଥା ଭାରତ ପକ୍ଷରେ ନାହିଁ, ଏ ବିଷୟ ଉପରେ ଗାନ୍ଧୀଜୀଙ୍କ ଭାଷଣ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଥିଲା । ଏହି ସମ୍ପର୍କରେ ଶିକ୍ଷାନୁଷ୍ଠାନମାନଙ୍କୁ ଛାଡ଼ି ଆସିବା ପାଇଁ ଯୁବକ ଛାତ୍ରମାନଙ୍କୁ ମହାତ୍ମାଜୀ ଆହ୍ୱାନ କଲାବେଳେ କଟକ ବ୍ରାହ୍ମ ସମାଜର ଅନ୍ୟତମ ବକ୍ତା ଲାଲମୋହନ ଚାଟାର୍ଜି ପ୍ରଶ୍ନଉଠାଇଲେ ଯେ ଯେଉଁ ପାଶ୍ଚାତ୍ୟ ଶିକ୍ଷାଯୋଗୁଁ ଆଜି ଭାରତ ଗାନ୍ଧୀଜୀଙ୍କ ପରି ଜଣେ ମହାତ୍ମା ପାଇଛି, ସେ ଶିକ୍ଷାକୁ କିପରି ଗାନ୍ଧୀଜୀ ଉପଯୋଗୀ ନୁହେଁ ବୋଲି ପ୍ରମାଣ କରୁଚନ୍ତି ? ପ୍ରଶ୍ନ ନ ସରୁଣୁ ଗାନ୍ଧିଜୀ ଉତ୍ତର ଦେଇଥିଲେ—

ବୁଦ୍ଧ, ଶଙ୍କର, ଚୈତନ୍ୟ ପ୍ରଭୃତି ଭାରତର ମହାପୁରୁଷମାନେ ଇଂରେଜି ଶିକ୍ଷାର ବହୁ ଦୂରରେ ଥିଲେ ଅଥଚ ସେମାନଙ୍କ ପ୍ରତିଭା ତୁଳନାରେ ମୁଁ କେଡ଼େ ଛାର । ବୋଧହୁଏ ଇଂରେଜୀ ଶିକ୍ଷା କରିନଥିଲେ ମୁଁ ଆହୁରି ବଡ଼ ପ୍ରତିଭାବନ୍ତ ହୋଇପାରିଥାନ୍ତି । ଏହି ଉତ୍ତରଟିରେ, ସେହି ସଭାରେ ଅଧିକାଂଶ ଶିକ୍ଷିତ ଲୋକ ଥିଲେ, ସମସ୍ତଙ୍କ ମନରେ ଆଶାତୀତ ସନ୍ତୋଷ ଆସିଥିଲା ।

ରାତ୍ରିକୁ ସ୍ୱରାଜ୍ୟାଶ୍ରମରେ କର୍ମୀମାନଙ୍କୁ ଘେନି ଆଉ ଗୋଟିଏ ଆଲୋଚନା ସଭା ବସିଲା । ସେ ସଭାରେ କଥା ଉଠିଲା, ଇଂରେଜମାନେ ଅସ୍ତ୍ରବଳ ଅପେକ୍ଷା ସଭ୍ୟତା ବଳରେ ଭାରତରେ ପ୍ରଭାବ ବିସ୍ତାର କରିଚନ୍ତି । ଆମ୍ଭେମାନେ ସେପରି ସଭ୍ୟତା ଓ ଶୃଙ୍ଖଳା ଶିକ୍ଷା ନ କଲେ ସେମାନଙ୍କ ସହିତ କିପରି ପ୍ରତିଦ୍ୱନ୍ଦ୍ୱୀ ହୋଇପାରିବା ? ମୁଁ ସେତିକିବେଳେ ଆଉ ଗୋଟିଏ ପ୍ରଶ୍ନ ଉଠାଇଲି ଯେ, ପାଶ୍ଚାତ୍ୟ ସଭ୍ୟତା ଆମର ଆଦର୍ଶ ହୋଇନପାରେ, ଯେହେତୁ ତାହା ଅନ୍ୟ ଦେଶମାନଙ୍କ ଅକ୍ଷମତାର ସୁବିଧା ଉପରେ ନିର୍ଭର କରୁଚି । ଇଂରେଜ ଗୋଟିଏ କ୍ଷୁଦ୍ର ଜାତି ହୋଇ ତାର ଯାନ୍ତ୍ରିକ ସଭ୍ୟତାକୁ ବଞ୍ଚାଇ ରଖିବା ପାଇଁ ଭାରତ ଭଳି ଏକ ବିରାଟ ବଜାରକୁ ଆୟତ୍ତରେ ରଖିବାକୁ ବାଧ୍ୟ, ନଚେତ ତାର ଯନ୍ତ୍ର-ସଭ୍ୟତା ଚାଲିପାରିବନାହିଁ । ସ୍ୱାଧୀନତା ପରେ ଆମେ ସ୍ୱାବଲମ୍ବୀ ହେବା ପରେ, ଆମ ଦାସତ୍ୱ ଉପରେ ନିର୍ଭର କରୁଥିବା ବ୍ରିଟିଶ୍ ସଭ୍ୟତା ଲୋପନପାଇଲେ ମଧ ବହୁଳାଂଶରେ ମ୍ରିୟମାଣ ହୋଇଯିବ । ଯଦି ଭାରତ ଭଳି ଏକ ବିରାଟ ଦେଶ ସେହିପରି ସଭ୍ୟତାକୁ ଅନୁକରଣ କରେ, ତାହାହେଲେ ଏହିପରି କେତୋଟି ପୃଥିବୀ ତାର ବଜାର ହେବାକୁ ନିଅଣ୍ଟ ହୋଇଯିବ । ତେଣୁ ବ୍ରିଟିଶ ଶାସନଠାରୁ ବ୍ରିଟିଶ ସଭ୍ୟତା ଆମ ପକ୍ଷରେ ଅଧିକ ମାରାତ୍ମକ । ଗାନ୍ଧିଜୀ କର୍ମୀମାନଙ୍କ ପ୍ରଶ୍ନର ଉତ୍ତର ମୋ ପ୍ରଶ୍ନରେ ନିହିତ ଥିବା ସୂଚାଇଦେଇ, ଚରଖା ଭଳି ସ୍ୱାବଲମ୍ବୀ ସଭ୍ୟତା ଆମ ପକ୍ଷରେ ପ୍ରଯୁଜ୍ୟ ଏବଂ ସେଥିପାଇଁ ଆମ ସଭ୍ୟତାକୁ ଯଥାସମ୍ଭବ ସ୍ୱାବଲମ୍ବନଶୀଳ କରାଇବାର ଆଦର୍ଶପାଇଁ ଚରଖାର ପ୍ରତିଷ୍ଠା ବୋଲି ସୁନ୍ଦରଭାବେ ବୁଝାଇଦେଇଥିଲେ । ବିଶେଷତଃ ସମ୍ଭୋଗସର୍ବସ୍ୱ ପାଶ୍ଚାତ୍ୟ ସଭ୍ୟତା ସମ୍ପର୍କରେ ଭାରତବାସୀଙ୍କର ଯେଉଁ ଆକର୍ଷଣୀ ହୋଇଗଲାଣି, ତାହାର ସର୍ବଗ୍ରାସୀ ଅଗ୍ରଗତି ବଦଳାଇଦେବା ଚରଖା ପ୍ରଚଳନର ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ବୋଲି ସେ ବୁଝାଇଥିଲେ ।

ଆମ ସ୍ୱରାଜ୍ୟାଶ୍ରମରେ ସେତେବେଳକୁ ଚରଖା ତିଆରି କାମ ଆରମ୍ଭ ହୋଇଯାଇଥାଏ । ସାବରମତୀ ଆଶ୍ରମରୁ ତାଲିମ ହୋଇ ଆସିଥିବା ଦଶପଲ୍ଲାର ଗୋବିନ୍ଦ ମିଶ୍ରଙ୍କ (ପରବର୍ତ୍ତୀ କାଳରେ M.P.) ତତ୍ତ୍ୱାବଧାନରେ କର୍ମୀମାନେ ସୂତାକଟାରେ ତାଲିମ ନେଉଥାନ୍ତି । ମହାତ୍ମାଜୀଙ୍କ ଉତ୍କଳ ଗସ୍ତର ଅବ୍ୟବହିତ ପରେ ମୁଁ ସୂତାକଟା କ୍ଲାସରେ ଅନାହୂତଭାବେ ଯୋଗଦେବାକୁ ସେଦିନ ସଭାରେ ସଂକଳ୍ପ କଲି ।

ତା ପରଦିନ ପୁରୀ ବଡ଼ଦାଣ୍ଡରେ ସଭାହେଲା । ସେତେବେଳେ ସାରା ଦେଶରେ ୧୯୨୦ ମସିହା ବନ୍ୟାଜନିତ ଯେଉଁ ଅଭାବ ଅନଟନ ଚାଲିଥାଏ, ତାହାର କେନ୍ଦ୍ରସ୍ଥଳୀ ହୋଇଥାଏ ପୁରୀ ଜିଲ୍ଲାର ବ୍ରହ୍ମଗିରି ଥାନା । ସର୍କାରୀଭାବେ ଘୋଷିତ ନହେଲେ ମଧ୍ୟ ଘୋର ଦୁର୍ଭିକ୍ଷ କବଳରେ ଏହି ବ୍ୟାପକ ଅଞ୍ଚଳଟି କବଳିତ ହୋଇଥାଏ । ବଡ଼ଦାଣ୍ଡ ସଭାରେ ନାଗପୁର ପ୍ରସ୍ତାବ ବୁଝାଇବାକୁ ଯାଇ ଯେତେବେଳେ ମହାତ୍ମାଜୀ ଦେଶବାସୀଙ୍କୁ ଏକକୋଟି କଂଗ୍ରେସ ସଭ୍ୟ ହେବା ଓ ଏକକୋଟି ଟଙ୍କା ତିଳକ ସ୍ୱରାଜ୍ୟ ପାଣ୍ଠିରେ ପୂରଣ କରିବାର ଦାୟିତ୍ୱ ବହନ କରିବାକୁ ନିବେଦନ କଲେ, ଏହି ଦୁର୍ଭିକ୍ଷକ୍ଲିଷ୍ଟ, ଅର୍ଦ୍ଧଉଲଗ୍ନ, କଙ୍କାଳମାତ୍ରାବଶିଷ୍ଟ, ଦୁର୍ଗତ ଜନତା ମଧ୍ୟରୁ ଶତ ଶତ, ସହସ୍ର ସହସ୍ର ସଂଖ୍ୟାରେ ଲୋକେ ଆଗେଇଆସି ସେମାନଙ୍କ ଛିନ୍ନବସ୍ତ୍ର କାନିରୁ ଗୋଟିଏ ଗୋଟିଏ ପଇସା ଓ ଅଧଲା କାଢ଼ି ସନ୍ତର୍ପଣର ସହିତ ଭେଟି ଦେବାରେ ଏବଂ ତନ୍ମଧ୍ୟରେ ଅନିର୍ବଚନୀୟ ଆନ୍ତରିକତା ଲକ୍ଷ୍ୟ କରିବାରେ ମହାତ୍ମାଜୀ ଏତେଦୂର ଅଭିଭୂତ ହୋଇଗଲେ ଯେ, ଜୀବନର ଶେଷନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ବ୍ରହ୍ମଗିରିର ଦାରୁଣ ଦାରିଦ୍ର୍ୟର ପ୍ରତିନିଧିଭାବେ ସେହିମାନଙ୍କ ପରି ଅର୍ଦ୍ଧଉଲଗ୍ନଭାବେ କୌପୀନ ବସ୍ତ୍ର ପରିଧାନ କରିବାକୁ ବଡ଼ଦାଣ୍ଡରେ ସଂକଳ୍ପ ଓ ବ୍ରତ ଗ୍ରହଣ କଲେ । ମହାତ୍ମାଜୀଙ୍କର ଉତ୍କଳ ଭ୍ରମଣରେ କର୍ମୀମାନଙ୍କ ପ୍ରତି ଆଉ ଗୋଟିଏ ପ୍ରଧାନ ନିର୍ଦ୍ଦେଶ ଥିଲା ନଗରଛାଡ଼ି ପଲ୍ଲୀ ଅଞ୍ଚଳରେ କାମ ଆରମ୍ଭ କରିବାକୁ, କାରଣ ଭାବୀ ଭାରତର ରୂପରେଖ ପଲ୍ଲୀବହୁଳ ଭାରତରେ ପଲ୍ଲୀ ସଭ୍ୟତା ଛଡ଼ା କିଛି ହୋଇନପାରେ । ସେଠାରେ ଶୋଷଣ, ଧର୍ଷଣ ଇତ୍ୟାଦି ବହୁବିଧ ଅତ୍ୟାଚାରରେ ଜର୍ଜରିତ ପଲ୍ଲୀବାସୀଙ୍କ ମଧ୍ୟରେ ଯତ୍‌କିଞ୍ଚିତ ଅଭୟର ଜାଗରଣ ଆଣିବାପାଇଁ ଯତ୍ପରୋନାସ୍ତି ଉଦ୍ୟମ କରିବା ପ୍ରତିଟି କର୍ମୀଙ୍କର ପ୍ରତ୍ୟକ୍ଷ ଉଦ୍ୟମ ହେବା ଆବଶ୍ୟକ । ଯେଉଁ କର୍ମୀମାନେ ଏ ଦିଗରେ କାର୍ଯ୍ୟ ଆରମ୍ଭ କରିବାକୁ ସଂକଳ୍ପ କରିବେ, ସେମାନଙ୍କ ଗତି ଯେ ଅଭ୍ରାନ୍ତ ଏ ବିଷୟରେ ଆଦୌ ପ୍ରଶ୍ନ ଉଠିନପାରେ ।

ମହାତ୍ମାଜୀଙ୍କ ଉତ୍କଳ ଗସ୍ତର ଅବ୍ୟବହିତ ପରେ ତିର୍ତ୍ତୋଲ ଥାନାର କୁଜଙ୍ଗ ଅଞ୍ଚଳରେ ଥିବା ମୋ ପୈତୃକ ଜମିଦାରୀକୁ କର୍ମକେନ୍ଦ୍ର ସ୍ଥିରକରି ସେହି କେନ୍ଦ୍ରର ଚତୁଃପାର୍ଶ୍ୱସ୍ଥ ଅସଂଖ୍ୟ ପଲ୍ଲୀଗହଳି ମଧ୍ୟରେ ମୋର ଭାବୀ ସଂଗଠନର କ୍ଷେତ୍ର ବାଛିନେଲି । ଯଦିଓ ଗତ ଛଅ ମାସର କଂଗ୍ରେସ ଅଭିଜ୍ଞତାରେ ମୋର କିଛି ପରିବର୍ତ୍ତନ ହୋଇଥିଲା ତାହା ବାହ୍ୟିକ ବେଶ ପରିବର୍ତ୍ତନରେ । ଆନ୍ତରିକ ପରିବର୍ତ୍ତନପାଇଁ ମୋତେ ପ୍ରକୃତ କ୍ଷେତ୍ର ମିଳିଲା ପଲ୍ଲୀସୁଲଭ ସରଳ ସଦାଚାରରେ, ଯେଉଁଠି ଭାରତର ଭାରତତ୍ୱ ନିହିତ ଓ ଅଭିଷକ୍ତି ।

---

# ପଲ୍ଲୀ ଜୀବନ

ମୋ ପୈତୃକ ଜମିଦାରୀ ଦୁଇଖଣ୍ଡି– ବଣିକୁନ୍ଦ ଓ ନାଳିଆପାଳ । କଟକ ଜିଲାର ତିର୍ତ୍ତୋଲ ଥାନା ଗୋଟିଏ ସୁବିନ୍ୟସ୍ତ ଅଞ୍ଚଳ । ଅଧିକାଂଶ ଜମି କେନାଲ ଜଳ ସେଚିତ, ଭୂମି ଉର୍ବର, ଗଛବୃକ୍ଷଗୁଡ଼ିକ ହୃଷ୍ଟପୁଷ୍ଟ, ସତେଯେପରି କିଏ ତେଲବୋଳିଦେଇଛି । ନଦୀ ନାଳ ଖଚିତ ଏହି ସମତଳଭୂମି ପୃଥିବୀପୃଷ୍ଠ ସର୍ବୋତ୍ତମ ଭୂମିମାନଙ୍କ ମଧ୍ୟରେ ଗଣ୍ୟ ହୋଇପାରେ । ଝଙ୍କଡ଼, ତିରଣ, ବାରପଲା, ଆବର୍ତ୍ତକ, ଅଣାବର୍ତ୍ତକ, କୁଜଙ୍ଗ ପ୍ରଭୃତି ପ୍ରଗନା ଏହି ଥାନାଟିର ଅନ୍ତର୍ଭୁକ୍ତ । ଉତ୍କଳବିଖ୍ୟାତ ଝଙ୍କଡ଼ ପ୍ରଗନା ଏହିଠାରେ ଅବସ୍ଥିତ, ଯହିଁରେ କବି-ଆଶ୍ରୟଦାୟିନୀ ସାରଳା ଦେବୀଙ୍କ ବାଣୀପୀଠ ବିଦ୍ୟମାନ । କଳିଯୁଗର ମହାକବି ବେଦବ୍ୟାସ ସାରଳା ଦାସଙ୍କର ଏହି ପ୍ରଗନାରେ ଜନ୍ମ ଏବଂ ବୃଦ୍ଧା ନଦୀ ତୀରରେ ତାଙ୍କ ଆଶ୍ରମ ବାଣୀତୀର୍ଥ ରୂପେ ଉତ୍କଳୀୟ ସୁଧୀ ବୃନ୍ଦଙ୍କର ଆଦରଣୀୟ ହୋଇପାରିଛି । ମହା ଅତୀତରେ ଏହି ଦେଶାଂଶର ତତ୍‌କାଳୀନ ଶ୍ୟାମଳ ଶାଦ୍‌ବଳ ବନରାଜିର ମନୋହାରିତା, ସ୍ୱଚ୍ଛତୋୟା ନଦୀମାନଙ୍କର ପରିବର୍ତ୍ତନଶୀଳ ସୌନ୍ଦର୍ଯ୍ୟ କବି କଳ୍ପନାକୁ ଯେ ବଳିଷ୍ଠଭାବେ ପ୍ରଭାବିତ କରିପାରୁଥିବ, ଏଥିରେ ସନ୍ଦେହର ଅବକାଶ କେଉଁଠି ? ଏହି ତିର୍ତ୍ତୋଲ ଥାନାର ବାରପଲା ପ୍ରଗନାରେ ମୋର ପୈତୃକ ଜମିଦାରୀ ମଧ୍ୟରୁ ବଣିକୁନ୍ଦ ଗ୍ରାମରେ ଆମ କଚିରୀ ଘର ଓ ଖମାର ଥାଏ । ସେଠାରେ ଚଳିବାଭଳି ଖଣ୍ଡିଏ ଘର, ପୋଖରୀ, ନଡ଼ିଆ ବଗିଚା, ବାଉଁଶ, ତାଳ ଓ ମାଧବୀଲତା-ମଣ୍ଡିତ ବରଗଛଟିଏ ଥାଏ । କୌଣସି ଝାକଜମକର ବିନ୍ଦୁବିସର୍ଗ ନଥିଲେ ମଧ୍ୟ ସ୍ଥାନଟିର ସ୍ୱାଭାବିକ ଆକର୍ଷଣୀ ଯଥେଷ୍ଟ । ବଣିକୁନ୍ଦ ଓ ଡିହସାହି ଦୁଇଟି ଗ୍ରାମର ମଧ୍ୟବର୍ତ୍ତୀ ସ୍ଥାନରେ ଆମ କଚିରୀ ଘରଟି ଘନ ଛାୟାର ଶୀତଳ କୋଳରେ ପ୍ରଶସ୍ତ ସ୍ଥାନରେ ଅବସ୍ଥିତ । ଦକ୍ଷିଣ ପାଖଟି ଆଖିପାଇବାଯାଏ ମାଇଲ ମାଇଲ ଧରି ସୁବିସ୍ତୃତ ଧାନ କ୍ଷେତର କେତେବେଳେ ଶ୍ୟାମଳିମା, କେତେବେଳେ ମୃଗତୃଷ୍ଣାର ନୃତ୍ୟ, କେତେବେଳେ ସିନ୍ଧୁ ସମୀରଣର ଅବିରତ ଓ ଅବାରିତ ହିଲ୍ଲୋଳ ଇତ୍ୟାଦି ପରିବର୍ତ୍ତନଶୀଳ ପ୍ରାକୃତିକ ପରିବେଶ ଯେକୌଣସି ସମୟରେ ଗୋଟିଏ ନା ଗୋଟିଏ ମୁଗ୍ଧକର ଚିତ୍ର ଘେନି ବିରାଜିଥାଏ ।

ଗ୍ରାମବାସୀମାନଙ୍କର ଭକ୍ତିସିକ୍ତ ଭୟ କିମ୍ବା ଭୟସିକ୍ତ ଭକ୍ତି ଯାହା ହେଉନା କାହିଁକି, ମୋ ପକ୍ଷରେ ଅତି ନୂତନ ଅନୁଭୂତି ଆଣିଦେଉଥିଲା । ଅନ୍ତତଃ କିଛି ନହେଲେ ମଧ୍ୟ ସେମାନଙ୍କ ସରଳ ଈଶ୍ୱର ବିଶ୍ୱାସ, କଥାକଥାକେ ଭାବପୂର୍ଣ୍ଣ ଢଗଢମାଳି, ନିରାଡ଼ମ୍ବର

କାମନାହୀନ ଜୀବନଯାପନ ଓ ନିରଳସ ଶ୍ରମ ମୋତେ ଏକ ତପସ୍ୟାମୟ କ୍ଷେତ୍ରରେ ପହଞ୍ଚିବା ପରି ଜଣାଯାଉଥିଲା । ସହର ବଜାରରେ ଚିର ଅଭ୍ୟସ୍ତ ମୋତେ ପଲ୍ଲୀବାସୀଙ୍କର ଏହି ନିଷ୍କପଟ ଚାଲିଚଳଣ, ମହିଳାମାନଙ୍କର ପଲ୍ଲୀସୁଲଭ ବ୍ରୀଡ଼ା, ଏକ ସର୍ବଦୁଃଖପାସୋରା ନୂଆ ଦେଶ ମଧରେ ପ୍ରବେଶ କରିବାକୁ ସତେ ଯେପରି ଦ୍ୱାର ଉନ୍ମୁକ୍ତ କରିଦେଲା । ଭାଗବତ ଟୁଙ୍ଗିରେ ଯୋଗଦେଇ ପ୍ରତ୍ୟହ ଭାଗବତ ଶୁଣିବା (ଯେଉଁଦିନ ରହେ) ମୋପକ୍ଷରେ କିପରି ରୁଚିକର ହେଉଥିଲା, ତାହା ମୁଁ ପାଠକମାନଙ୍କୁ କିପରି ବୁଝାଇବି ? ବୃଦ୍ଧ ଦୋଳି ରାଉତଙ୍କ କୋମଳ କଣ୍ଠ ଓ ସ୍ପଷ୍ଟ ଉଚ୍ଚାରଣ ସହିତ ଭାଗବତର ଏଶୀଛନ୍ଦ କିପରି ପଦପଦକେ କର୍ଣ୍ଣରେ ଅମୃତ ବର୍ଷଣ କରି ଗ୍ରନ୍ଥର ମର୍ମ ବୁଝାଇଦିଏ ଏବଂ ପ୍ରତ୍ୟେକଟି ସୂକ୍ଷ୍ମନୀତ୍ୟର୍ଥପୂର୍ଣ୍ଣ ପଦକୁ ଅଭ୍ୟାସ କରିବାପାଇଁ ବକ୍ତା ଛନ୍ଦର ଭଙ୍ଗିଦ୍ୱାରା ନିର୍ଦ୍ଦେଶ ଦେବା ମାତ୍ରେ ଶ୍ରୋତାମାନେ ପାଳିଧରି ତାକୁ ଆବୃତ୍ତି କରନ୍ତି, ତାହା ଆମର ତଥାକଥିତ ଶିକ୍ଷିତ ସମାଜକୁ ବୁଝାଇବାକୁ ମୋର ଭାଷାନାହିଁ ।

ଏହା ସାଙ୍ଗକୁ ଦେଖିବାକୁ ପାଇଲି ଜମିଦାର, ମହାଜନ, ଟାଉଟରମାନଙ୍କ ଉପଦ୍ରବ । ପଲ୍ଲୀସୁଲଭ ସାରଲ୍ୟର ସୁବିଧା ନେଇ ସେମାନେ ଯେ ଯଦୃଚ୍ଛା ଦୟାମାୟାହୀନ ଶୋଷଣ ଓ ଯଥେଚ୍ଛାଚାରିତା ଚଳାଇଥାନ୍ତି, ତାହା ପ୍ରତି ଗ୍ରାମରେ ଅନର୍ଗଳ ଓ ନିରଙ୍କୁଶଭାବେ ଅବ୍ୟାହତ ଥାଏ । ଅବଶ୍ୟ ଏମାନଙ୍କ ଧାରାବାହିକ କୁକାର୍ଯ୍ୟ ପଲ୍ଲୀର ପ୍ରଶାନ୍ତ ଜୀବନ ସମୁଦ୍ରକୁ ଆବିଳ କରିବାକୁ ସମର୍ଥ ହୋଇପାରେନାହିଁ ସତ, ତଥାପି କୌଣସି ବିବେକ, ମର୍ଯ୍ୟାଦା ଥିବା ବ୍ୟକ୍ତି, ଏହା ସବୁ ଉପଲବ୍ଧି କରିସାରିବା ପରେ ଯେ ନୀରବ ଦର୍ଶକଭାବେ ବସିରହିବ କିମ୍ବା ମୂକସାକ୍ଷୀ ଭାବେ ସମର୍ଥନ କରିବ ତାହା ମଧ ସମ୍ଭବ ନୁହେଁ । ସମାଜ ମଧରେ ଥାଇ ସମାଜର ଯେକୌଣସି ଅଂଶଟିରେ ଆତ୍ମଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ଯଦି କିଏ ଦୁର୍ଗତି ଓ ଅପରାଧ ଆଚରଣ କଲା, ସେ ସମସ୍ତ ସମାଜର ଶତ୍ରୁଭାବେ ବିବେଚିତ ହୋଇ ବାଧାପାଇବା ଉଚିତ, ଏହା ମୁଁ ବେଶ୍ ବୁଝିପାରିଥିଲି ଏବଂ ମୋ ବ୍ୟକ୍ତିଗତ ଅଧୀନରେ ମୋ କର୍ମଚାରୀମାନଙ୍କଦ୍ୱାରା ଅନୁଷ୍ଠିତ ହେଉଥିବା ଏବଂବିଧ ଦୁଷ୍କୃତିମାନ ଲୋପକରିଦେବାକୁ ମୁଁ ସଙ୍ଗେ ସଙ୍ଗେ ଅଭିଯାନ ଆରମ୍ଭ କରିଦେଲି ।

ମୋ ସ୍ୱର୍ଗୀୟ ପୋଷ୍ୟପିତା ଜଣେ ବଡ଼ଧରଣର ସଞ୍ଚୟଶୀଳ ବ୍ୟକ୍ତି ଥିଲେ ଏବଂ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ କେତେଗୁଡ଼ିଏ ଧାନ ଲଗାଣ କରାଇଥିଲେ । ମୋର ନାବାଳକ ଅବସ୍ଥାରେ ମୋର ମାଆ ପ୍ରତି ଦୁଇ ତିନିବର୍ଷରେ ଆଠଗଡ଼ରୁ ଆସି ଏହି ବାବଦରେ ସହସ୍ର ସହସ୍ର ଟଙ୍କା ସୁଧ ସଂଗ୍ରହ କରିନେଇଯାନ୍ତି; କିନ୍ତୁ ଖାତକମାନଙ୍କ ଉପରେ ତଥାପି ସହସ୍ର ସହସ୍ର ଟଙ୍କା ବାକିପଡ଼ିଥାଏ । ଏ ବିଷୟରେ ଗୋଟିଏ ମୋଟାମୋଟି ହିସାବ ଗୁମାସ୍ତାମାନଙ୍କଠାରୁ ସଂଗ୍ରହ କରି ଦେଖିଲି ଯେ, ଗତ ୧୪-

୧୫ ବର୍ଷରେ ମୋ ମାଆ ୧୪-୧୫ ହଜାର ଟଙ୍କା ସଂଗ୍ରହ କରି ନେଇଥିବା ସତ୍ତ୍ୱେ ୧୫-୨୦ ହଜାର ଟଙ୍କା ତଥାପି ବାକି ଗଡୁଚି । ଶୁଣି ବିସ୍ମିତହେଲି ଯେ ଏଥିପାଇଁ ମୋ ପିତା ମାତ୍ର ହଜାରେ ଟଙ୍କା ମୂଲ୍ୟର ଧାନ ମୂଳଧନ ଯୋଗାଇଥିଲେ । ବାସ୍ତବିକ ମୁଁ ବଡ଼ ଲଜ୍ଜିତ ହୋଇଗଲି ଏବଂ ତତ୍‌କ୍ଷଣାତ୍ ସେସବୁ କାଗଜପତ୍ର, ଖାତା, ଷ୍ଟାମ୍ପ ଇତ୍ୟାଦି, ଯାହା ଆମ ସିରସ୍ତାରେ ସେ ସମ୍ପର୍କରେ ଗଚ୍ଛିତ ଥିଲା, ତାହା ଏକାଥରକେ ନଷ୍ଟକରିଦେଲି । ଆଠଗଡ଼ ରାଜବାଟୀରେ ବାସକରୁଥିବା ମା'ଙ୍କ ପାଖକୁ ଗୁମାସ୍ତାମାନେ ଗୁପ୍ତଭାବେ ଏ ସମ୍ବାଦ ଜଣାଇଦେଲେ ଏବଂ ମୁଁ ସର୍ବଦା ଗୋଟାଏ କିଛି ମା'ଙ୍କ ଆଡୁ ଘଟିବ ବୋଲି ଆଶଙ୍କାରେ ଅପେକ୍ଷା କରିଥାଏ; କିନ୍ତୁ ମା'ଙ୍କ ପାଖରୁ ପତ୍ର ଆସିଲା, ''ତା' ସମ୍ପତ୍ତି ସେ ଇଚ୍ଛା ଅନୁସାରେ ଯାହା କଲା ସେଥିରେ କାହାରି କିଛି ଆପତ୍ତି କରିବାର କାରଣ ନାହିଁ ।''

କାଗଜପତ୍ର ନଷ୍ଟ କରିବା ପରେ ମୁଁ ସ୍ଥାନାନ୍ତରକୁ କାର୍ଯ୍ୟାନୁରୋଧରେ ଚାଲି ଯାଇଥିଲି । ଯେଉଁମାନେ ସଂପୃକ୍ତ ଖାତକ, ସେମାନେ ଏପରି ଲୋକ ଯେ, ଗୁମାସ୍ତାମାନଙ୍କ ପାଖକୁ ସ୍ୱେଚ୍ଛାରେ ଆସି ନିର୍ଭର ଜବାବ ଦେଇଯାଉଥିଲେ, ''ସାମନ୍ତ ଆମ କାଗଜ ନଷ୍ଟକରିଦେଲେ ମଧ୍ୟ ଆମ୍ଭେମାନେ ପୁନଶ୍ଚ ଆସି କାଗଜ କରିଦେଇଯିବୁ ।'' ସତେ ଯେପରି ସେମାନଙ୍କ ସଞ୍ଚିତ ଧନ ମୁଁ ବରବାଦ କରିଦେଲି ? କିନ୍ତୁ ମା'ଙ୍କ ପତ୍ରରୁ ମୋ କାର୍ଯ୍ୟକଳାପର ସମର୍ଥନ ଶୁଣିବା ପରେ, ସେମାନଙ୍କ ମନରେ ଏପରି ସୁନ୍ଦର ପ୍ରତିକ୍ରିୟା ହେଲା ଯେ, ଫେରିବା ପରେ ଦଳ ଦଳ ଲୋକ ଆସି କୃତଜ୍ଞତା ଜଣାଇଯିବାକୁ କଦଳୀ, କଖାରୁ, ବାଇଗଣ, ସାରୁ, ଆଳୁ, ପଇଡ଼, ନଡ଼ିଆ, ମାଛ ଯାହା ଘରେ ଯାହାଥିଲା ସମ୍ମାନର ସହିତ ଆଣି ଜମାକରିଦେଲେ । ମୁଁ ଅନନ୍ୟୋପାୟ ହୋଇ ଗୋଟିଏ ବଡ଼ ଭୋଜିର ବ୍ୟବସ୍ଥା ମଞ୍ଜୁରକଲି ଏବଂ ସେମାନଙ୍କ ପନିପରିବା ସାଙ୍ଗକୁ ଆବଶ୍ୟକୀୟ ଅନ୍ୟାନ୍ୟ ସାମଗ୍ରୀ ମୋ ପକ୍ଷରୁ ଯଥାସମୟରେ ଯୋଗାଇଦିଆଗଲା । ଲୋକେ ମହା ସମାରୋହରେ ଖଂଜଣିଆ ଦଳ ଆଣି ଭଜନ ବୋଲି, ଭୋଜନ କରି, ଆମ ଶୋଷଣର ଶ୍ରାଦ୍ଧ ପାଳନକଲେ । ଏହି ବ୍ୟବସାୟରେ ଲିପ୍ତ ସ୍ଥାନୀୟ ଛୋଟ ବଡ଼ ଅନ୍ୟାନ୍ୟ ଜମିଦାର ଓ ମହାଜନମାନେ ପ୍ରମାଦ ଗଣିଲେ ଏବଂ ମୋ କାର୍ଯ୍ୟକଳାପକୁ କଟୁ ସମାଲୋଚନା ନକଲେ ମଧ୍ୟ ସେମାନଙ୍କ ଅହଙ୍କାର ଓ ମର୍ଯ୍ୟାଦାରେ ଆଞ୍ଚ ଆସୁଛି ଅନୁଭବ କରି ମୋତେ 'ପାଗଳ' ବୋଲି ଅଭିହିତ କରିବାକୁ ଛାଡ଼ିଲେନାହିଁ ।

ଏହି ଯତ୍‌ସାମାନ୍ୟ ତ୍ୟାଗ (?) ଦ୍ୱାରା ସମଗ୍ର ଅଞ୍ଚଳଟି ଆଲୋଡ଼ିତ ହୋଇଗଲା ଏବଂ ପ୍ରତି ଗ୍ରାମରେ ଅନ୍ତତଃ ଥରେ ମତେ ଦେଖିବାକୁ ଲୋକେ ବ୍ୟାକୁଳ ହୋଇଉଠିଲେ । କଂଗ୍ରେସର ନାମ ପର୍ଯ୍ୟନ୍ତ କେହି ଶୁଣିନଥିଲେ । ବୋଲିବା ବାହୁଲ୍ୟ

ଯେ, ଏହି ସୁଯୋଗରେ ମୁଁ ମୋର କଂଗ୍ରେସ ବାର୍ତ୍ତା ଗ୍ରାମେ ଗ୍ରାମେ ପହଞ୍ଚାଇ ଦେବାକୁ ଏକ ପହିଲା ନମ୍ବର ମଉକା ପାଇଗଲି । ଲୋକମାନଙ୍କ ମଧ୍ୟରୁ ଆଶାତୀତ ସହାନୁଭୂତି, ସମର୍ଥନ ଆଗେଇ ଆସିଲା ।

ଏପ୍ରିଲ୍ ଛଅରୁ ତେର ତାରିଖ ଜାତୀୟ ସପ୍ତାହ । ପୁଣି ଏହି ୧୩ ତାରିଖର ବିଶେଷତ୍ୱ ହେଉଛି, ଏହା ପଣାସଂକ୍ରାନ୍ତି ଏବଂ ଜାଲିଆନାୱାଲାବାଗର ନିର୍ମମ ହତ୍ୟାକାଣ୍ଡର ଦିନ । ସେଦିନ ତିର୍ତ୍ତୋଲ ଅଞ୍ଚଳରେ ସର୍ବାପେକ୍ଷା ବଡ଼ ମେଳା ହୁଏ– ସାରଳା ପୀଠରେ । ଆଡ଼ ଦୀର୍ଘ ଦୁଇଶ ବର୍ଗ ମାଇଲର ପ୍ରତି ପରିବାରରୁ ଆପାତତଃ ଜଣେ ଲୋକ ଭୋଗ ଇତ୍ୟାଦି ସହିତ ଦେବୀ ଦର୍ଶନ ଉଦ୍ଦେଶ୍ୟରେ ସାରଳା ପୀଠରେ ରୁଣ୍ଡ ହୁଅନ୍ତି । ସ୍ଥାନୀୟ ଜମିଦାର ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ ଉକ୍ତ ମେଳାରେ ଗୋଟିଏ କଂଗ୍ରେସ ସଭା କରିବାକୁ ମୋତେ ନିମନ୍ତ୍ରଣ କରିଥିଲେ । ମେଳା ପୂର୍ବଦିନ ଉପରବେଳା ମୁଁ ସେଠାକୁ ଗଲାବେଳେ ବାଟରେ ଦେଖିଲି ଜଣେ ବିଶାଳବପୁ ବ୍ୟକ୍ତି ଗୋଟିଏ ଛୋଟ ଘୋଡ଼ାରେ ବସି ସ୍ଥାନାଭିମୁଖେ ଯାଉଛନ୍ତି । ଘୋଡ଼ାସବାରଙ୍କ ପାଦ ପ୍ରାୟ ଭୂମିକୁ ସ୍ପର୍ଶ କରିଥାଏ ଏବଂ ଘୋଡ଼ାଟି ଅତି ସନ୍ତର୍ପଣରେ ଆଗେଇ ଚାଲିଥାଏ । ଘୋଡ଼ାର କ୍ଷୁଦ୍ରକାୟତାବଶତଃ ସବାର ଅତ୍ୟଧିକ ବଡ଼ ଦେଖାଯାଉଥାନ୍ତି ଏବଂ ସବାରଙ୍କ ବିଶାଳକାୟତାବଶତଃ ଘୋଡ଼ାଟି ମଧ୍ୟ ଅତି କ୍ଷୁଦ୍ର ଦେଖାଯାଉଥାଏ । ସେ ଯାହାହେଉ ଦୁଇମାଇଲ ଚାଲିବା ଭିତରେ ଆମ୍ଭେମାନେ ତାଙ୍କ ବେଗ ଅପେକ୍ଷା ଅଧମାଇଲିଏ ଅଧିକ ପଥ ଅତିକ୍ରମ କରିଗଲୁ । ପରଦିନ ଉପରବେଳା ଯେତେବେଳେ ସଭା ଆରମ୍ଭ ହେଲା, ମେଳାର ଅଧିକାଂଶ ଲୋକେ ସଭାରେ ଯୋଗଦେଇଥିଲେ ।

ଏପ୍ରକାର ସଭା ହୁଏ ବୋଲି ଏ ଲୋକଙ୍କର ଧାରଣା ନଥିଲା । ବିବାହ, ବ୍ରତ, ଶ୍ରାଦ୍ଧାଦି ଉପଲକ୍ଷରେ ବନ୍ଧୁବାନ୍ଧବ ଏକତ୍ର ବସି ଖାଇବାବେଳେ, ତାକୁ ଏଣେ 'ଭାଇସଭା' ସାଧାରଣତଃ କୁହାଯାଏ କିମ୍ବା ନାଚ ପାଲା ଇତ୍ୟାଦି ଅନୁଷ୍ଠାନବେଳେ ଜନସମାଗମକୁ, 'ସଭା' କୁହାଯାଇଥାଏ । କିନ୍ତୁ ଦେଶର ଭଲମନ୍ଦ କଥାଭାଷାପାଇଁ ବିରାଟ ଲୋକସମାଗମକୁ ସଭା ଆଖ୍ୟା ଦବା– ଏ ଅଞ୍ଚଳରେ ଏହା ପ୍ରଥମ । ବିଶେଷତଃ ସରକାରଙ୍କ ବିରୋଧରେ ପଞ୍ଜାବ ଅତ୍ୟାଚାରର ମର୍ମନ୍ତୁଦ କାହାଣୀ ବର୍ଣ୍ଣନାକରି ବିଷୋଦ୍‌ଗାର କରିବା ପୁଣି ମାର୍ଜିତ ଭାଷାରେ ଏହା ଏକ ଯୁଗାନ୍ତରର କଥା ବୋଲି ଲୋକେ ବୁଝୁଥିଲେ । ୧୫/୨୦ ହଜାର ଲୋକ ସରକାରୀ ଦମନ ଲୀଳାକୁ କଠୋରତମ ଭାଷାରେ ସମାଲୋଚିତ ହେଉଥିବା ଶୁଣି ସ୍ତମ୍ଭିତ ହୋଇଗଲେ । ସେ ସ୍ତମ୍ଭନ, ସେ ନୀରବତା ଏପରି ହୋଇଥିଲା ଯେ ଦେଢ଼ଘଣ୍ଟା ବ୍ୟାପୀ ବକ୍ତୃତା ମଧ୍ୟରେ ତିଳେମାତ୍ର ଶବ୍ଦ ଶୁଣାଯାଇନଥିଲା । ପୂର୍ବଦିନର ବିପୁଳକାୟ ଘୋଡ଼ ସବାର ବସି ଖଣ୍ଡେ କାଗଜରେ ବକ୍ତୃତାର ଅଂଶ ଟିପୁଥାନ୍ତି । ପରେ ଜଣାଗଲା ସେ ହେଉଛନ୍ତି ସ୍ଥାନୀୟ ପୁଲିସ ଅଫିସର ।

ତାଙ୍କ ପ୍ରତ୍ୟକ୍ଷରେ ଏହାସବୁ ହେଉଚି ଓ ଜଣେ କୋଡ଼ିଏବର୍ଷର ସାମାନ୍ୟ ଅଜାତଶ୍ମଶ୍ରୁ ବାଳକ ମହାମହିମ ବ୍ରିଟିଶ୍ ଶାସନକୁ ଭାଙ୍ଗିଦେବାକୁ ଜନତାକୁ ଉପର୍ଯ୍ୟୁପରି ଆହ୍ୱାନ କରୁଚି ଓ ବଜ୍ରଗମ୍ଭୀର ସ୍ୱରରେ ବିଦ୍ରୂପ ବାକ୍ୟବାଣ ପ୍ରୟୋଗ କରୁଚି, ଅଥଚ ଆଲାବକ୍ସଙ୍କ ଭଳି ଜବରଦସ୍ତ ଓ ଜୁଲୁମବାଜ ପୁଲିସ୍ ଅଫିସର କିଂକର୍ତ୍ତବ୍ୟବିମୂଢ଼ ହୋଇ ବସିଛନ୍ତି— ଏହା ପ୍ରତ୍ୟକ୍ଷ ଦେଖି ଓ ଶୁଣି ଲୋକେ ସେମାନଙ୍କ ସ୍ୱାଭାବିକ ବିଚାର ବୁଦ୍ଧିରେ ବୁଝିନେଲେ, ଭାରତ ଇତିହାସରେ ବ୍ରିଟିଶ୍ ପର୍ଯ୍ୟାୟ ଆସି ଶେଷ ସ୍ତରରେ ପହଞ୍ଚିବାକୁ ଅଧିକ ବିଳମ୍ବ ନାହିଁ ।

ସଭା ଶେଷ ପରେ ପ୍ରତ୍ୟେକଟି ଗ୍ରାମର ବିଚାରବନ୍ତ ଲୋକେ ସେମାନଙ୍କ ଗ୍ରାମକୁ ଡାକିନେବାକୁ ଆଗ୍ରହ ପ୍ରକାଶକରି ମୁଁ ରହୁଥିବା ପୂର୍ଣ୍ଣବାବୁଙ୍କ ମଠରେ ମୋ ସହିତ ଦଳ ଦଳ ଆସି ଦେଖାକଲେ । କୌଣସି ଗ୍ରାମର ବାଟ, ଘାଟ ନାମ ଇତ୍ୟାଦି ମୋତେ ଜଣାନଥିଲା । ତେଣୁ ସନ୍ନିକଟବର୍ତ୍ତୀ କଣ୍ଟାପଡ଼ା ଗ୍ରାମରୁ ଗୋଟିଏ ଯୁବକ ଦଳ ମୋ ସହିତ ଏକତ୍ର କାମ କରିବାକୁ ବାହାରିପଡ଼ିଲେ । କଣ୍ଟାପଡ଼ା ଗ୍ରାମରେ ଗୋଟିଏ ଆଶ୍ରମ ସ୍ଥାପିତ ହୋଇ ସମଗ୍ର ଝଙ୍କଡ଼ ପ୍ରଗନାଟିରେ କଂଗ୍ରେସ କାମ ଆରମ୍ଭ ହୋଇଗଲା । ଝଙ୍କଡ଼ର ସବୁ ଗ୍ରାମ ଭିତରେ ଏହି କଣ୍ଟାପଡ଼ା ଗ୍ରାମର ରାଜନୈତିକ ଚେତନା ସର୍ବଶ୍ରେଷ୍ଠ ଜଣାଗଲା । ସେମାନଙ୍କ ମଧ୍ୟରେ ସ୍ଥାନୀୟ ଓ ପାରିବାରିକ ଝଗଡ଼ା ଖୁବ୍ ତୀକ୍ଷଣ୍ ଥିବା ସତ୍ତ୍ୱେ, ରାଜନୈତିକ ପୀଠରେ ଯୁବକମାନେ ନିଜ ନିଜ ମଧ୍ୟରେ ସଂହତି ରକ୍ଷାକରି ସଂଗଠନରେ ଲାଗିପଡ଼ିଥିଲେ । ଏଠାରେ ଆଉ ଗୋଟିଏ ଜୀବନ ଚରିତର ଟିକିଏ ଆଲୋଚନା ଆବଶ୍ୟକ ବୋଧହୁଏ ।

ସମଗ୍ର ଅଞ୍ଚଳରେ ସେତେବେଳେ ଚିନ୍ତାମଣି ପରିଜା ଜଣେ ଦୁର୍ଦ୍ଧାନ୍ତ ମାମଲତକାର ଥିଲେ । ତାଙ୍କ ନାମ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼ିଦେଉଥିଲା । ସାରଳା ମନ୍ଦିରର ପରିଚାଳନା ଦାୟିତ୍ୱ ଟ୍ରଷ୍ଟବୋର୍ଡ଼ ତାଙ୍କଠାରେ ନ୍ୟସ୍ତକରିଥିଲେ । ମୁଁ ଗଡ଼ଜାତିଆ— ତେଣୁ ମୋଗଲବନ୍ଦୀର ଏହି ବିଖ୍ୟାତ ବ୍ୟକ୍ତିଙ୍କୁ ଦେଖିବାପାଇଁ ସ୍ୱତଃ କୌତୂହଳାକ୍ରାନ୍ତ ହୋଇଥିଲି । ପଣାସଂକ୍ରାନ୍ତି ସଭା ପରେ ମୁଁ ମଧ୍ୟ ସେ ଅଞ୍ଚଳରେ ଜଣେ ଖ୍ୟାତନାମା ଲୋକ ହୋଇଗଲି । ତେଣୁ ମନ୍ଦିରରେ ଦିନେ ଦୁଇଦିନ ତାଙ୍କ ଆତିଥ୍ୟ ଗ୍ରହଣକରିବାର ସୁବିଧା ପାଇଲି— ଅବଶ୍ୟ ତାଙ୍କଆଡୁ ନିମନ୍ତ୍ରିତ ହୋଇ । କ୍ରମଶଃ ବୁଝିଲି ଓଡ଼ିଆ ମହାଭାରତ ରଚୟିତା ସାରଳାଦାସଙ୍କର ସେ ହେଉଚନ୍ତି ବଂଶଧର । କଥାଭାଷା **ସ୍ପଷ୍ଟ** ଓଡ଼ିଆ, ମାର୍ଜିତ ନହେଲେ ମଧ୍ୟ ଅମାର୍ଜିତ କହିହେବନାହିଁ । କିନ୍ତୁ ଆମ୍ଭେମାନେ ଯେପରି କଥାଭାଷା କଲାବେଳେ ପଦେଅଧେ ଇଂରେଜୀ ବିକୃତ ଶବ୍ଦ ବ୍ୟବହାର ନକରି ଭାବପ୍ରକାଶ ସମ୍ପୂର୍ଣ୍ଣ କରିପାରୁନା, ତାଙ୍କ ପକ୍ଷରେ ତାହା ନୁହେଁ । ବହୁ ବିଷୟରେ ତାଙ୍କ ସହିତ ଆଲୋଚନା ହୋଇଚି ଓ ବହୁସମୟ ଧରି; କିନ୍ତୁ ତାଙ୍କ ଭାଷା ଯେପରି ସରଳ,

ସେପରି ଅନର୍ଗଳ ଏବଂ ସେପରି ମର୍ମସ୍ପର୍ଶୀ । 'କଥାରେ ବାଟୁଳି ବାଜେନା' ଏକଥା କେବଳ ସେହିପରି କଥାକୁ ବୁଝାଇବ । ସେ ଅଞ୍ଚଳର ବହୁ ନିଃସହାୟ, ନିରୀହ ବ୍ୟକ୍ତିମାନଙ୍କ ପକ୍ଷ ସମର୍ଥନ କରି ସେ ମାଲିମକଦ୍ଦମା ମାଧ୍ୟମରେ ସେମାନେ ବଞ୍ଚିତ ହୋଇଥିବା ହକ ସମ୍ପତ୍ତିରେ ପ୍ରତିଷ୍ଠା କରାଇଦେଇଛନ୍ତି– ଏହାହିଁ ତାଙ୍କର ବିଶେଷତ୍ୱ । ଅନେକେ କୁହନ୍ତି, ସେ ଅର୍ଥଗୃଧ୍ନୁ ଓ ବ୍ୟବସାୟ ଦୃଷ୍ଟିରୁ ମାଲିମକଦ୍ଦମା ସୃଷ୍ଟି କରନ୍ତି । କିନ୍ତୁ ମୁଁ ତାଙ୍କ ଆଚରଣ ଅନୁଧ୍ୟାନ କରି ଅନ୍ୟପ୍ରକାର ଉପଲବ୍‌ଧି କଲି । ସେ ସ୍ୱାଧୀନଚେତା ଲୋକ ଥିଲେ ଏବଂ ସେହି ଦୋଷରୁ (?) ସେ କୌଣସି ଅତ୍ୟାଚାରୀ, ଶୋଷକ, ପୁଲିସ ଇତ୍ୟାଦି ସାମାଜିକ ଶତ୍ରୁମାନଙ୍କ କବଳରୁ ସନ୍ତର୍ପିତ ବ୍ୟକ୍ତିମାନଙ୍କୁ ରକ୍ଷାକରିବାପାଇଁ ଆଭିମୁଖ୍ୟ ଗ୍ରହଣ କରୁଥିଲେ । ତାଙ୍କ ସ୍ପଷ୍ଟ ବାଗ୍ମିତା ବଳରେ ସେ ଲୋକମାନଙ୍କ ଉପରେ ପ୍ରଭାବ ପକାଇ ଯାହା କରିପାରୁଥିଲେ ଯେକୌଣସି ପୁଲିସ ଅଫିସରର ଦୁର୍ଦ୍ଧର୍ଷତା ମଧ୍ୟ ତାହା ତୁଳନାରେ ନଗଣ୍ୟ ଜଣାଯାଉଥିଲା ।

ସମାଜନୀତି, ଧର୍ମନୀତି, ଅର୍ଥନୀତି ଇତ୍ୟାଦି ବିଷୟରେ ତାଙ୍କ ଧାରଣା ଯେପରି ଅଗାଧ ଥିଲା ରାଜନୀତି ବିଷୟରେ ତାଙ୍କ ଦୂରଦୃଷ୍ଟି ସେହିପରି ଅତ୍ୟନ୍ତ ସ୍ୱଚ୍ଛ ଥିଲା । ରକ୍ଷଣଶୀଳ ସମାଜ ଭିତରେ ସେହି ଏକମାତ୍ର ଲୋକ ମୁଁ ପ୍ରଥମେ ଲକ୍ଷ୍ୟକଲି ଯେ କି ପ୍ରଗତିପରାୟଣ– କେବଳ ବିଚାରରେ ନୁହେଁ ଆଚାରରେ ମଧ୍ୟ । ସେଥିପାଇଁ ସେ ଥରେ ଦୁଇଥର ଆଇନ ଅଦାଲତରେ ଦଣ୍ଡନୀୟ ହୋଇଚନ୍ତି ବରଂ କିନ୍ତୁ ନିଜ ଲକ୍ଷ୍ୟରେ ସେ ସ୍ଥୈର୍ଯ୍ୟ ଦେଖାଇବାରେ କେବେହେଁ ପରାଙ୍‌ମୁଖ ହୋଇନାହାନ୍ତି । ଅତ୍ୟନ୍ତ ଜରାବସ୍ଥାରେ ମୋର ତାଙ୍କ ସହିତ ସାକ୍ଷାତ୍ ଘଟିଲା ଏବଂ ସେତେବେଳେ ମଧ୍ୟ ସେ ମୋତେ ଯଥେଷ୍ଟ ପ୍ରଭାବିତ କରିବାକୁ ସକ୍ଷମ ହୋଇପାରିଥିଲେ । ଅଳ୍ପକାଳ ପରେ ତାଙ୍କର ମୃତ୍ୟୁ ଘଟିଲା ଓ ମୃତ୍ୟୁବେଳେ ସେ ପଦ୍ମାସନରେ ବସି ମାଳା ଜପ କରୁକରୁ ଇହଧାମରୁ ବିଦାୟନେଲେ । ତାଙ୍କ ମୃତ୍ୟୁଦ୍ୱାରା ଯୁଗପତ୍ ଆନନ୍ଦ ଓ ବିଷାଦ ସମଗ୍ର ଅଞ୍ଚଳଟିରେ ଖେଳିଯାଇଥିଲା । ସମାଜର ଧନବନ୍ତ ଶ୍ରେଣୀର ଲୋକେ ସେମାନଙ୍କର ଗୋଟିଏ ଶତ୍ରୁ ନିପାତ ହେଲା ବୋଲି ଯେତିକି ଆଶ୍ୱସ୍ତିଲାଭ କଲେ, ନିରାଶ ଓ ନିରାଶ୍ରୟ ଲୋକମାନେ ତାଙ୍କ ବିଦାୟରେ ସେମାନଙ୍କର ଗୋଟିଏ ଆଶ୍ରୟ-ଚୂଡ଼ା ଭାଙ୍ଗିପଡ଼ିଲା ବୋଲି ହାହାକାର କରିଉଠିଲେ । ସେ ଯାହାହେଉ ନିର୍ଭୀକ ଓଡ଼ିଆ ଜଣେ ତାଙ୍କୁଇ ମୁଁ ପ୍ରଥମେ ଦେଖିଥିଲି । ଯେଉଁ ଅଞ୍ଚଳରେ ବା ଦେଶରେ ତାଙ୍କପରି ପୁଅ ଶତ ଶତ ସଂଖ୍ୟାରେ ଜନ୍ମଗ୍ରହଣ କରିଥିବେ, ସେଠାରେ ସାମାଜିକ ବ୍ୟଭିଚାର ରହିପାରିବନାହିଁ । ସେମାନଙ୍କ ରୁଦ୍ରକୋପାନଳରେ ସମାଜ ପୋଡ଼ି ଛାରଖାର ହେବନାହିଁ ବରଂ ସୁବର୍ଣ୍ଣ ଧାତୁପରି ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହେବ ।

—

# ମୋ ସଂଗ୍ରାମୀ-ଜୀବନର ଖଡ଼ିପାଠ

ତିର୍ତ୍ତୋଲ ଥାନାର ପଶ୍ଚିମାଞ୍ଚଳ ଶାରଳାମଣ୍ଡଳ ଏବଂ ପୂର୍ବାଂଶ କୁଜଙ୍ଗ ଅଞ୍ଚଳ ମଧ୍ୟସ୍ଥଳରେ ମୋର ବାସସ୍ଥାନ । ଜମିଦାରୀ ବଣିକୁନ୍ଦ ଗ୍ରାମ । ତେଣୁ ସମଗ୍ର ପାଞ୍ଚଶତ ଗ୍ରାମବିଶିଷ୍ଟ ଅଞ୍ଚଳଟିରେ ମୁଁ କଂଗ୍ରେସକର୍ମୀଭାବେ ପରିଚିତି ଲାଭକଲି । ଗମନାଗମନ ପାଇଁ ସ୍ୱଳ୍ପସୁବିଧା ଓ ବିଶେଷ ଅସୁବିଧା ଯୋଗୁଁ ମୋ ପକ୍ଷରେ ତାହାହିଁ ବିରାଟ ପ୍ରତିବନ୍ଧକ ଜଣାଗଲା– କାରଣ ପଦବ୍ରଜ ଛଡ଼ା ଉପାୟାନ୍ତର ନଥିଲା । ଏହା ବ୍ୟତୀତ ଜିଲ୍ଲାର ଅନ୍ୟ ଅଞ୍ଚଳରେ କାମ କରିବାର ସ୍ପୃହା ଯେ ନଥିଲା ତାହା ନୁହେଁ, କିନ୍ତୁ ଅନ୍ୟାନ୍ୟ ଅଞ୍ଚଳରେ କାମ କରିବାକୁ ଆଉ ସମୟ ନଥିଲା କିମ୍ବା ଶକ୍ତିନଥିଲା । ଏ ଅଞ୍ଚଳରେ ଲୋକମାନଙ୍କଠାରୁ ଅପ୍ରତ୍ୟାଶିତଭାବେ ସ୍ନେହ ସହାନୁଭୂତି ପାଇବା ପରେ, ଏଠାରେ କୌଣସି କାରଣରୁ କାମ ଶିଥିଳ କରି ଅନ୍ୟ ଅଞ୍ଚଳକୁ ଯିବାପାଇଁ ଭାବିବାକୁ ଟିକିଏ ସମୟ ମଧ୍ୟ ପାଇନଥିଲି । ବିଶେଷତଃ କୁଜଙ୍ଗ ଅଞ୍ଚଳରେ ଗୋଟିଏ ସ୍ୱତନ୍ତ୍ର ଦଳର ପରିଚୟ ଲାଭକଲି ଯେଉଁମାନଙ୍କ ମତ ସହିତ ମୋର ମତ ଅନେକଟା ମିଳିଗଲା ଏବଂ କାମ କ୍ରମଶଃ ସେଦିଗରେ ବଢ଼ିଗଲା– ତାହା ହେଉଛି ରାଜୀବଲୋଚନ ଦାସଙ୍କ ଦଳ । ସେମାନଙ୍କର ମତ ହେଉଛି କୌଣସି ଜାତିଭେଦର କଠୋରତା ନରଖି ଏକତ୍ର ବସି ପାନାହାର କରିବା, ଛୁଆଁଛୁଇଁର ପ୍ରଶ୍ନ ନଉଠାଇବା, ମାନବହିଁ ଭଗବାନଙ୍କ ପରମ ଓ ଚରମସୃଷ୍ଟି ହୋଇଥିବାରୁ ସେମାନଙ୍କ ମଧ୍ୟରେ ବଡ଼ସାନ ପ୍ରଭେଦ ଉଠାଇବା ଅଧର୍ମ ଏବଂ ପ୍ରଭେଦ ନଉଠାଇବାରହିଁ ଧର୍ମ, ଏହା ସେହି ଦଳର ମୌଳିକ ନୀତି ଥିଲା । ତେଣୁ ଯେଉଁମାନେ ପୁରାତନପନ୍ଥୀ ଥିଲେ ସେମାନଙ୍କ ସହିତ ଏମାନଙ୍କର ମତଦ୍ୱୈଧ ଘଟିବା ସ୍ୱାଭାବିକ । ଫଳରେ ଏପରି ଘଟିଲା ଯେ ବାବାଜୀ ଦଳରେ ପୁରାତନ ଦଳର ଜଣେ ଲବ୍ଧପ୍ରତିଷ୍ଠ ବୈଷ୍ଣବ ସଂପ୍ରଦାୟର ଗୃହସ୍ଥ ପର୍ଶୁରାମ ଦାସଙ୍କର ପିତୃବିୟୋଗ ଘଟିବାରୁ ଶୁଦ୍ଧାଦି କାର୍ଯ୍ୟ ଯଥାବିଧି ପ୍ରତିପାଳିତ ହେବା ପରେ, ସଂପ୍ରଦାୟର ମହନ୍ତ ଓ ଅନ୍ୟାନ୍ୟ ସଂପୃକ୍ତ ସାମାଜିକ ବ୍ୟକ୍ତିମାନଙ୍କର ଏକ ମେଳା ହବାର ବିଧି ଥିଲା । ସେହି ଅନୁଯାୟୀ ପର୍ଶୁରାମଙ୍କୁ ମଧ୍ୟ ପ୍ରସ୍ତୁତ ହେବାକୁ ପଡ଼ିଲା । ମହନ୍ତଙ୍କ ଆଗମନ ଓ ଗୁରୁତ୍ୱପୂର୍ଣ୍ଣ ମେଳାର ଅନୁଷ୍ଠାନପାଇଁ ମହନ୍ତଙ୍କ ଚାନ୍ଦୁଆ ଓ ବିଛଣା ଇତ୍ୟାଦି ମହନ୍ତଙ୍କ ମଠରୁ ଅଣାଯାଇ ସାଜସଜ୍ଜା ପୂର୍ଣ୍ଣାଙ୍ଗ ହେବା ପରେ ଯଥାସମୟରେ ମହନ୍ତ ଓ ସାମାଜିକ ବୈଷ୍ଣବମାନେ ଏକତ୍ରିତ ହୋଇ ଦେଖିଲେ ଯେ ପର୍ଶୁରାମଙ୍କ ଆୟୋଜନ ବିଧିସଙ୍ଗତଭାବେ ସବୁ ପ୍ରସ୍ତୁତ ହୋଇସାରିଛି ଏବଂ ଆଗନ୍ତୁକ ବୈଷ୍ଣବମାନଙ୍କପାଇଁ

କିଛି ବାକି ନାହିଁ । କାର୍ଯ୍ୟଗ୍ରାହୀ ହୋଇଛନ୍ତି ରାଜୀବ ଦାସଙ୍କ ଶିଷ୍ୟବୃନ୍ଦ, ଯେଉଁମାନଙ୍କର କୁଖ୍ୟାତି ଥିଲା— ଜାତିଭେଦ ମାନନ୍ତିନାହିଁ ବୋଲି । ତେଣୁ ମହନ୍ତଙ୍କ ନିକଟରେ ତାଙ୍କ ସଂପ୍ରଦାୟ ଲୋକେ ପ୍ରସ୍ତାବ କଲେ ରାଜୀବ ଦାସଙ୍କ ଶିଷ୍ୟମାନେ ଏ ସ୍ଥାନରୁ ବହିଷ୍କୃତ ନହେବାଯାଏ ବୈଷ୍ଣବ ଅନୁଷ୍ଠାନ ହୋଇପାରିବନାହିଁ । କିନ୍ତୁ ପର୍ଶୁରାମ ମତ ଦେଲେ ଅବଧି ସେମାନେ ସବୁ ଧନ୍ଦା ଚଳାଇ ଆସିଛନ୍ତି ଏବଂ ବିପୁଳପରିମାଣରେ ସାହାଯ୍ୟ ଦେଇଚନ୍ତି, ପରିସ୍ଥିତିଦୃଷ୍ଟିରୁ ମୁଁ କଦାପି ସେମାନଙ୍କୁ ବହିଷ୍କାର କରିପାରିବିନାହିଁ । କିନ୍ତୁ ବୈଷ୍ଣବମାନେ ସିଦ୍ଧାନ୍ତ କଲେ ସେମାନେ ଅନୁଷ୍ଠାନରେ ଯୋଗ ନଦେଇ ଫେରିଯିବେ । ସର୍ବଶେଷରେ ତାହାହିଁ ହେଲା । ବହୁ ସମାଗତ ବୈଷ୍ଣବମାନଙ୍କ ସମେତ ମହନ୍ତ ଫେରିଗଲେ, ପର୍ଶୁରାମଙ୍କ କାକୁତି ମିନତିକୁ ଉପେକ୍ଷାକରି ।

ପର୍ଶୁରାମ ଉପାୟାନ୍ତର ନପାଇ ଗୁରୁ ରାଜୀବଙ୍କୁ ସମ୍ବାଦ ଦେବାମାତ୍ରେ ସେ ଆସି ମେଳା କାର୍ଯ୍ୟ ନିର୍ବାହ କଲେ ବିରାଟ ଆକାରରେ । ଲେଖକ ସେହି ଅବସରରେ ରାଜୀବଙ୍କ ସହିତ ସାକ୍ଷାତ୍ କରିବାର ସୁଯୋଗ ଲାଭକଲା ଏବଂ ମତ ବିନିମୟରେ ବୁଝିଲା ଯେ ରାଜୀବଙ୍କ ଶିଷ୍ୟ-ସଂପ୍ରଦାୟ ସହିତ କଂଗ୍ରେସ ନୀତିର ବହୁ ସମନ୍ୱୟ ରହିଛି । ସଂପ୍ରଦାୟର ଶିକ୍ଷା-ଦୀକ୍ଷାହୀନ ଅଠରଶହ ସଂଖ୍ୟକ ସ୍ତ୍ରୀ-ପୁରୁଷ କଂଗ୍ରେସ ବାର୍ତ୍ତା ଶୁଣିବା ପରେ କଂଗ୍ରେସରେ ଯୋଗଦେବାକୁ ମନସ୍ଥ କଲେ । ମୋତେ ଏକ ଆଶାତୀତ ସୁଯୋଗ ମିଳିଲା କୁଜଙ୍ଗ ଅଞ୍ଚଳରେ କାମକରିବାକୁ, କାରଣ ପ୍ରତି ପ୍ରଧାନ ଗ୍ରାମରେ ରାଜୀବଙ୍କ ଶିଷ୍ୟ ଥିଲେ ଏବଂ ତନ୍ମଧ୍ୟରୁ ଅଧିକାଂଶ ସାଧାରଣ ଗୃହସ୍ଥ, ଧନଧାନ୍ୟରେ ଆଶାନୁରୂପ ସ୍ୱାବଲମ୍ବନଶୀଳ । ପର୍ଶୁରାମଙ୍କ ବ୍ୟତୀତ ରାମ ନାୟକ, ଅନ୍ୟଜଣେ ଶିଷ୍ୟ ପର୍ଶୁରାମଙ୍କ ପରି କେବଳ ଯେ ଦୃଢ଼ ଥିଲେ ତାହାନୁହେଁ, ଧନଧାନ୍ୟରେ ସମାଜରେ ଶୀର୍ଷସ୍ଥାନ ଅଧିକାର କରିଥିଲେ ଜଣେ ନିଷ୍ଠାପର ଚାଷୀଭାବେ । ମୋତେ ସେ ଓ ତାଙ୍କ ସ୍ତ୍ରୀ ମୁହୂର୍ତ୍ତକପାଇଁ ଛାଡ଼ିବାକୁ ରାଜିନଥିଲେ ଏବଂ ପ୍ରସ୍ତୁତ ଥିଲେ କଂଗ୍ରେସ ପ୍ରଚାରର ସବୁପ୍ରକାର ବ୍ୟୟ ବହନ କରିବାକୁ । ମୁଁ ଜଣେ ରାଜବଂଶୀୟ ଲୋକ, ଶିକ୍ଷାଦୀକ୍ଷାରେ ପ୍ରବୀଣତା ଲାଭ କରିଛି ଓ ପ୍ରଗଲ୍‌ଭତାରେ ଅସାଧାରଣ ଇତ୍ୟାଦି ଗ୍ରାମେ ଗ୍ରାମେ ପ୍ରଚାରିତ ହେବା ପରେ ମୋତେ ସମୟ ନଥିଲା ଆଉ କୁତ୍ରାପି ଯିବାକୁ । ବିଶେଷତଃ କୁଜଙ୍ଗ ଅଞ୍ଚଳ ବର୍ଦ୍ଧମାନ ମହାରାଜାଙ୍କ ଜମିଦାରୀ ଥିବାରୁ ଯଦିଓ ବଙ୍ଗବାସୀ ସବ୍‌ମେନେଜର ଥିଲେ ଶାସନ ଦାୟିତ୍ୱରେ, କିନ୍ତୁ ପ୍ରକୃତ ଶାସନ ଚଳାଉଥିଲେ ତାଙ୍କ ଅଧସ୍ତନ କର୍ମଚାରୀ ଜଣେ— ଯାହାଙ୍କୁ ପେସ୍କାର ପଦବୀରେ ଭୂଷିତକରାଯାଇଥିଲା । ସେ କୁଜଙ୍ଗ ଶାସନର ସର୍ବେସର୍ବା ଥିଲେ । ପୂର୍ବଲିଖିତ ମହନ୍ତ ଯେଉଁ ଗ୍ରାମ ଓ ପରିବାରରୁ ସଂଗୃହୀତ ହୋଇଥିଲେ, ସେହି ଗ୍ରାମରେ ଏହି ପେସ୍କାରଙ୍କ ଘର ଏବଂ ଉଭୟ ଗୃହ ଓ ପରିବାର ମଧ୍ୟରେ ବ୍ୟବଧାନ କେବଳ ସଡ଼କଟି । ତେଣୁ

ଉଭୟଙ୍କର କୁଜଙ୍ଗରେ କରାମତି ସମସ୍ତଙ୍କଠାରୁ ଅଧିକ ଥିଲା– ପରସ୍ପର ସହଯୋଗରେ । ପର୍ଶୁରାମଙ୍କ ଅନୁଷ୍ଠାନରୁ ବଞ୍ଚିତ ଓ ବହିଷ୍କୃତ ହେବା ପରେ ମହନ୍ତଙ୍କ ମୂଲ୍ୟବାନ୍ ଚାନ୍ଦୁଆ ଓ ବିଛଣା ପ୍ରଭୃତି ମଗାଇବାରୁ ପର୍ଶୁରାମ ଉତ୍ତରଦେଲେ ବିନାକାରଣରେ ଅନୁଷ୍ଠାନ ଭଣ୍ଡୁର କରିଥିବାରୁ ମହନ୍ତ ବ୍ୟୟଭାର ବହନକରନ୍ତୁ ଓ ଚାନ୍ଦୁଆ ପ୍ରଭୃତି ଫେରସ୍ତ ନିଅନ୍ତୁ । ଉପାୟ ନପାଇ ମହନ୍ତ ଧାଇଁଲେ ପେସ୍କାରଙ୍କ ପାଖକୁ ଏବଂ ମସୁଧାହେଲା ସମଗ୍ର ଦଳ ବିରୋଧରେ ଅଭିଯାନ ଚଳାଇବାକୁ– ଯଦ୍ଵାରା ସଂଗଠିତ ହୋଇଥିବା ସମଗ୍ର ଦଳଟି ଛତ୍ରଭଙ୍ଗ ଦେବେ । ଉପଢୌକନ ସହିତ ପେସ୍କାର ଦେଖାକଲେ ପୁଲିସ ଏସ.ପି.ଙ୍କ ସହିତ । ଏସ୍.ପି. ସେତେବେଳେ ଥିଲେ ଦୁର୍ଦ୍ଧାନ୍ତ ଶ୍ରୀକୃଷ୍ଣ ମହାପାତ୍ର; ଜଗତସିଂହପୁର ଲୋକ ଏବଂ ଭାରି ଦାଉଁଆ ବୋଲି ତାଙ୍କର ବଦ୍‌ନାମ ଥିଲା । ପେସ୍କାରଙ୍କ ଯୋଜନାନୁସାରେ ସରକାରୀ କେସ୍ ଦାଏର ହେଲା ପୁଲିସ୍ ପକ୍ଷରୁ ବାବାଜୀ ରାଜୀବଲୋଚନ ଦାସ ଗୁରୁ, ଶିଷ୍ୟ ପର୍ଶୁରାମ ଦାସ ଓ ଶିଷ୍ୟ ରାମ ନାଏକଙ୍କ ନାମରେ । ମକଦ୍ଦମାର ବିଷୟବସ୍ତୁ ହେଲା ଉଦୟବଟ ନାମିତ ଧର୍ମପୀଠରେ ନିଜେ ସିଦ୍ଧପୁରୁଷ ବୟାନକରି ଧର୍ମଭୀରୁ ବହୁ ପରିବାରର ସ୍ତ୍ରୀପୁରୁଷମାନଙ୍କୁ ଜାତି-ଧର୍ମ-ନିର୍ବିଶେଷରେ ଅସ୍ପୃଶ୍ୟତା ଉଠାଇଦେଇ ସମଗ୍ର ଅଞ୍ଚଳରୁ ଅର୍ଥ ଶୋଷଣ କରୁଛନ୍ତି । ଉଦୟବଟକୁ ସେହି ଅର୍ଥରେ ଆଡ଼ମ୍ବର ସହିତ ସଜାଇ ମୂର୍ଖଲୋକମାନଙ୍କୁ ଭୁଲାଇବାକୁ ସକ୍ଷମ ହେଉଛନ୍ତି । ଗୁରୁଙ୍କ ଶିଷ୍ୟତ୍ଵ ଅଞ୍ଚଳର ଦୁଇଜଣ ଖ୍ୟାତନାମା ଧନବାନ୍ ପରଶୁ ଓ ରାମ ଗ୍ରହଣ କରିଥିବାରୁ ସାଧାରଣଲୋକେ ସହଜରେ ଶିଷ୍ୟତ୍ଵ ଗ୍ରହଣ କରି ମେଳା ମହୋତ୍ସବ ମାଧ୍ୟମରେ ବହୁ ଗ୍ରାମରେ ଟୁଙ୍ଗିମାନ ସ୍ଥାପନ କରିଛନ୍ତି । ବଡ଼ ବଡ଼ ବ୍ୟବସାୟୀମାନଙ୍କୁ ଲୋକବଳ ଦେଖାଇ ଟଙ୍କା, ଚାଉଳ, ଡାଲି, ତେଲ, ଘିଅ ପ୍ରଭୃତି ବଳପୂର୍ବକ ନେଇଯାଉଛନ୍ତି ଇତ୍ୟାଦି ଇତ୍ୟାଦି । ମିଥ୍ୟା ସାକ୍ଷ୍ୟ ଦବାକୁ ମହନ୍ତଙ୍କ ଲୋକେ ଓ କେତେଜଣ ବ୍ୟବସାୟୀ ପ୍ରସ୍ତୁତ ହୋଇଗଲେ । ମକଦ୍ଦମା ବିଚାର ଚାଲିଲା ଖାସ୍ କୁଜଙ୍ଗ ସବ୍‌ମେନେଜରଙ୍କ ଆୟୋଜିତ ଗୃହରେ । ଉପରୋକ୍ତ ତିନିଜଣ ଆସାମୀ ଉଦୟବଟରୁ ହାତକଡ଼ି ପକାଯାଇ ପୁଲିସ୍ ଜଗୁଆଳରେ ଅଣାଗଲେ । ବିଚାରପତି ଏସ୍.ଡି.ଓ. ରାଜକିଶୋର ଦାସ । ହଜାର ହଜାର ଦର୍ଶକମାନଙ୍କ ମଧ୍ୟରେ ଲେଖକର ମଧ୍ୟ ସୌଭାଗ୍ୟ ବା ଦୁର୍ଭାଗ୍ୟ ଘଟିଥିଲା ଅପରିଚିତଭାବେ ଦର୍ଶକମାନଙ୍କ ମଧ୍ୟରେ ରହି ମକଦ୍ଦମାର ଗତିବିଧି ଠଉରାଇବାକୁ । ସାକ୍ଷୀମାନେ ନିରୋଳା ମିଥ୍ୟା ସାକ୍ଷ୍ୟ

ଦବାବେଳେ ଧର୍ମଭୀରୁ ଲୋକ ଥିବାରୁ ଉଚ୍ଚାରଣ ଆଦୌ ସ୍ପଷ୍ଟ ହୋଇନଥିଲା । ଆସାମୀମାନଙ୍କୁ ଜେରାକରିବାକୁ ବିଚାରପତି ନିର୍ଦ୍ଦେଶ ଦେବାରୁ ଆସାମୀମାନେ କୌଣସି ପ୍ରଶ୍ନ କରିବା ମାତ୍ରେ ସାକ୍ଷୀମାନେ ଏପରି ଘାବରେଇ ଗଲେ ଯେ ହାକିମଙ୍କର

ପୂର୍ଣ୍ଣ ବିଶ୍ୱାସ ହେଲା ତାହାସବୁ ମିଥ୍ୟା ସାକ୍ଷ୍ୟ ବୋଲି । ଏହିପରି ବିଚାର ତିନିଦିନ ଚାଲିଲା । ମହନ୍ତଙ୍କ ପକ୍ଷ ଓ ଜମିଦାରୀ ପକ୍ଷର ଲୋକେ ବିଶ୍ୱାସ କରିଥିଲେ ଆସାମୀମାନଙ୍କୁ ଏସବୁପ୍ରକାର ସାକ୍ଷ୍ୟ ପ୍ରଭାବରେ ଜେଲଦଣ୍ଡ ହେବା ନିଶ୍ଚିତ ବୋଲି । କିନ୍ତୁ ରାୟହେଲା ବାବାଜୀ ଗୋଟିଏ ବର୍ଷ କଟକରେ ରହିବେ କୁଜଙ୍ଗ ନଆସି । ଏ ରାୟ ଶୁଣି ଯୋଗାଡ଼କାରୀ ପକ୍ଷ ଏକାବେଳେ ନିରାଶ ହୋଇଗଲେ ଏବଂ ବାବାଜୀ ଦଳ ଲୋକେ କଟକ ସହରରେ ସାହିସାହିରେ ବୁଲି ମେଳା ଚଳାଇଲେ । ଲେଖିବା ବାହୁଲ୍ୟ ଯେ, ଲେଖକ କେତେକ ମେଳାରେ ଯୋଗଦେଇଥିଲା ଏବଂ ଖୋର୍ଦ୍ଧା ଅନ୍ତର୍ଗତ ବିରାଟ ଗ୍ରାମ ଦାରୁଠେଙ୍ଗ ମେଳାରେ ଯୋଗଦେଇ, ବାବାଜୀଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲା ଧ୍ୟାନ ଓ ଯୋଗାଦି ମାର୍ଗରେ ।

ଏହି ବର୍ଷଟି ମଧ୍ୟରେ ଏଣେ ପେସ୍କାର ଓ ଜମିଦାର ଦଳ ସମ୍ମୁଖୀନ ହେଲେ ଯେଉଁ ଉତ୍କଟ ସମସ୍ୟାର, ତାହାହେଉଛି– କୁଜଙ୍ଗ କୈବର୍ତ୍ତବହୁଳ ଅଞ୍ଚଳରେ ରାସ୍ତା ନଥିବାରୁ ଜମିଦାରୀ ଲୋକେ ଜଳଯାନରେ ଆବଶ୍ୟକାନୁଯାୟୀ ବିଚରଣ କରନ୍ତି ଏବଂ କୈବର୍ତ୍ତମାନ ବେଠିରେ ନୌଚାଳନାପାଇଁ ଧରାହୋଇ ନିଯୁକ୍ତ ହୁଅନ୍ତି । ତାହା ବ୍ୟାପକ ଭାବେ ଚାଲେ । ସେତେବେଳକୁ ଲେଖକ କୁଜଙ୍ଗ ପୁରାତନ ରାଜବଂଶର ଦେବାଳୟମାନ କେତେକାଂଶରେ ମରାମତି କରାଇ ରାଜବଂଶର ବିବାହଯୋଗ୍ୟା, ଜ୍ୟେଷ୍ଠା କନ୍ୟାଙ୍କୁ ବିବାହ କରାଇବାରେ ଯେଉଁ ବିପୁଳ ଅର୍ଥ ବ୍ୟୟ କରାଗଲା ତାହା ସର୍ବସାଧାରଣଙ୍କଠାରୁ ନାମକୁମାତ୍ର ସଂଗ୍ରହ କରି, ନିଜର ମୂଲ୍ୟବାନ୍ ଜମି କେତେକ ହସ୍ତାନ୍ତରକରି, ଲୋକମାନଙ୍କ ମଧ୍ୟରେ ଜଣେ ଲବ୍ଧପ୍ରତିଷ୍ଠ କର୍ମୀଭାବେ ପ୍ରତିଷ୍ଠିତ ହୋଇପାରିଥିଲେ । କୈବର୍ତ୍ତମାନେ ଏହି ସ୍ୱାଧୀନଚେତା କର୍ମୀର ନେତୃତ୍ୱ ଗ୍ରହଣ କରିବାକୁ ଅନେକଟା ଆଶା କରୁଥିବା ଜାଣିବା ପରେ ଅପେକ୍ଷା ଥିଲା କିଛି ଅଲୌକିକ ଘଟଣାକୁ ।

ଦୋଳଯାତ୍ରାକୁ ଜମିଦାରଙ୍କ ଶ୍ରୀଚଣ୍ଡୀଠାକୁରାଣୀ ବହୁ ଯାକଯମକରେ ମେଲଣରେ ପ୍ରବେଶ କରନ୍ତି– ରାତ୍ରିର ଶେଷ ପ୍ରହରରେ । ସେବର୍ଷ ଜୁଆର ଓ ଭଟ୍ଟାଯୋଗୁଁ ମହାନଦୀ ମୁହାଣରୁ ନୌକା ଠିକ୍ ସମୟରେ ଆସିନପାରି ରାତ୍ରି ପାହିଗଲା ଏବଂ ଜମିଦାରପକ୍ଷଙ୍କ ବିପୁଳ ଆୟୋଜନ ପଣ୍ଡ ହୋଇଗଲା । ଦୋଷ ହେଲା ବେଠିଆ କୈବର୍ତ୍ତମାନଙ୍କର ଏବଂ ଦାୟିତ୍ୱରେ ଥିବା ଷୋଳଭାଇ ବା ଚାଳକ ଉପରେ ମାଡ଼ ହେଲା । ମୂଲ୍ୟହୀନ ବେଠି, ତହିଁରେ ପୁଣି ନିର୍ଦ୍ଦୋଷରେ ମାଡ଼ । ଲେଖକକୁ ମଉକା ମିଳିଲା ନେତୃତ୍ୱ ଦବାକୁ । 'ବେଠି ବନ୍ଦକର' ଆହ୍ୱାନ ଦିଆଗଲା କଂଗ୍ରେସ ପକ୍ଷରୁ । ସରଦାରମାନେ ନିଯୁକ୍ତ ହୋଇଥିଲେ ବେଠିଆକୁ ଧରିବାକୁ । ଲୋକେ ତ ଶୁଣିଲେନାହିଁ ବରଂ ଶୁଣାଇଲେ ସରଦାରମାନଙ୍କୁ ଇସ୍ତଫା ଦେଇ ଲୋକଙ୍କ ପକ୍ଷରେ ଛିଡ଼ାହେବାକୁ ନଚେତ୍ ସେମାନେ ଆକ୍ରମଣର ସମ୍ମୁଖୀନ ହେବେ । ଗୋଟିଏ ଦିନରେ ବେଠି ବନ୍ଦହେଲା । ଲୋକେ ଉତ୍‌କ୍ଷିପ୍ତ

ହୋଇଥିଲେ ଏବଂ ଧୋବା, ଭଣ୍ଡାରୀ ଇତ୍ୟାଦି ଅନ୍ୟାନ୍ୟ ବେଠିଆଙ୍କୁ ପ୍ରବର୍ତ୍ତାଇଲେ ବେଠି ବନ୍ଦକରିବାକୁ । ଜମିଦାର ପକ୍ଷ କିଂକର୍ତ୍ତବ୍ୟବିମୂଢ଼ ହୋଇ ଲେଖକ ଉପରେ ୧୪୪ ଧାରା ଜାରି କରାଇ କୁଜଙ୍ଗ ପ୍ରବେଶ ବନ୍ଦକରିଦେଲେ । କୁଜଙ୍ଗ ପ୍ରବେଶ ଆବଶ୍ୟକ ନଥିଲା, କାରଣ କୈବର୍ତ୍ତମାନଙ୍କ ଆଗରେ ପୂର୍ବ ବାବାଜୀଦଳ ସଂଗଠିତ ହୋଇରହିଲେ । କଂଗ୍ରେସ ନିର୍ଦ୍ଦେଶକୁ ଅପେକ୍ଷାକରି ଇତିମଧ୍ୟରେ ଜିଲ୍ଲା କଂଗ୍ରେସ ସମ୍ମିଳନୀ ତିର୍ତ୍ତୋଲରେ ଡାକିବାକୁ ଲେଖକ ସୁବିଧାପାଇଲା କୁଜଙ୍ଗ ପ୍ରବେଶ ନିଷେଧ ହେବାରୁ । ଦାସେ ଆପଣେ ସ୍ୱୟଂ ଜିଲ୍ଲାସମ୍ମିଳନୀ ଉଦ୍‌ଘାଟନ କରିବାକୁ ଆବିର୍ଭୂତ ହେଲେ ।

—

# ନିର୍ବାଚନ ଦ୍ୱନ୍ଦ୍ୱ ଅଭିଯାନ ଓ ବିଧାୟକ ସଭା

୧୯୨୬ ମେ ମାସ ଗ୍ରୀଷ୍ମ ଋତୁରେ ଡିର୍ଦ୍ଧୋଲ ଜିଲା ସମ୍ମିଳନୀ ଅନୁଷ୍ଠିତ ହୋଇଗଲା । ସେତେବେଳେ ସମଗ୍ର ଦେଶ ଗୋଟିଏ ସନ୍ଦେହ ଦୋଳାରେ ଦୋଦୁଲ୍ୟମାନ । ଗାନ୍ଧୀବାଦର ସଚ୍ଚୋଟ ନୈତିକତା ଭିତ୍ତି ପରିତ୍ୟାଗ କରି ସ୍ୱରାଜ୍ୟ ଦଳର ବୈଧାନିକ ବିରୋଧ ଭଳି ଏକ କୂଟନୈତିକ ରାଜନୀତିର ପ୍ରୟୋଗପାଇଁ ପ୍ରସ୍ତୁତ ହେବାକୁ ହେବ । ନିର୍ବାଚନରେ ଲଢ଼ିବାବେଳେ କେତେ ସତ ମିଛ କଥା, କେତେ ଅତିରଞ୍ଜିତ କଥା କହି କାର୍ଯ୍ୟୋଦ୍ଧାର କରିବାକୁ ହେବ । ପ୍ରତିଦ୍ୱନ୍ଦ୍ୱୀ ପକ୍ଷକୁ ବହୁ କଟୁ ସମାଲୋଚନା କରିବାକୁ ହେବ । ଗାନ୍ଧୀବାଦର ମୂଳନୀତି ସତ୍ୟ, ଅହିଂସା କାୟମନୋବାକ୍ୟରେ ପାଳନ କରିବା ପରିବର୍ତ୍ତେ ଆବଶ୍ୟକମତେ ତହିଁରୁ ଓହରିଯିବାକୁ ହେବ । ନିଜର ଆତ୍ମବିଶ୍ୱାସକୁ ବଳିଦେଇ ଦଳଗତ ଶୃଙ୍ଖଳା ମାନି ଚଳିବାକୁ ହେବ । ବାସ୍ତବିକ ଏହିସବୁ କାରଣରୁ ସଚ୍ଚୋଟ ଗାନ୍ଧୀବାଦୀମାନେ ନିର୍ବାଚନକୁ ପଛାଉଥାନ୍ତି; କିନ୍ତୁ ଉଚ୍ଚଧରଣର ଶୃଙ୍ଖଳା ରକ୍ଷାପାଇଁ ବ୍ୟକ୍ତିଗତ ବିଶ୍ୱାସର ବା ସ୍ଥାନ କେଉଁଠି ? ସୈନିକର ଶୃଙ୍ଖଳା ରକ୍ଷା ପ୍ରଥମ କାମ ଏବଂ ଗାନ୍ଧିବାଦୀ ମାତ୍ରେ ପ୍ରଥମେ ସୈନିକ, ତା'ପରେ ଆଉ ଯାହା । ଏହିଭାବରେ ଉଦ୍‌ବୋଧିତ ଲଢୁଆ ମନୋବୃତ୍ତିର କର୍ମୀମାନେ ବଛାହୋଇଗଲେ ନିର୍ବାଚନରେ ଅଂଶ ଗ୍ରହଣ କରିବାକୁ । ପ୍ରାଦେଶିକ କଂଗ୍ରେସ କମିଟିର ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳନକରିବା ହେଲା ପ୍ରଥମ କର୍ତ୍ତବ୍ୟ । ନିଆଁଗିଳା ଲଢୁଆ କର୍ମୀମାନଙ୍କ ସହିତ ଖଞ୍ଜିହୋଇଗଲେ ବହୁ ଗାନ୍ଧିବାଦୀ କର୍ମୀମାନେ ନିର୍ବାଚନ ଲଢ଼େଇଲେ ଭାଗ ନେବାକୁ । ସାଧ୍ୟ ନାହିଁ ବ୍ୟକ୍ତିଗତ ବିଶ୍ୱାସ ଓ କାରଣ ଦେଖାଇ ପଛେଇବାକୁ । ଅଗ୍ରଗତିହିଁ ଏକମାତ୍ର ଲକ୍ଷ୍ୟ ।

ଅତିର୍କିତଭାବେ ମୋ ନାମ ବଛା ହେଲା ନିର୍ବାଚନପାଇଁ । ମୁଁ ପ୍ରକୃତପକ୍ଷେ ଗାନ୍ଧୀବାଦୀ ଓ ସେଥିପାଇଁ ମୋର ଯେତେ କିଛି ଗୌରବ । କଂଗ୍ରେସର ଶୃଙ୍ଖଳା ଭିତରେ ରହି ମାନସିକ ଉତ୍କର୍ଷ ସାଧନ କରିବା ମୋର ବ୍ୟକ୍ତିଗତ ଲକ୍ଷ୍ୟ । ନୈତିକତା ଆଧ୍ୟାତ୍ମିକତା ଇତ୍ୟାଦି ଦାର୍ଶନିକ ଅନୁଶୀଳନ ବ୍ୟତୀତ ଆମର ବିଶେଷତ୍ୱ ଫୁଟିବନାହିଁ । ତଥାପି ସଙ୍ଗଠନର ମର୍ଯ୍ୟାଦା କମିଯିବ ସଙ୍ଗଠନର ଶୃଙ୍ଖଳା ନମାନିଲେ । ତାହା ପୁଣି ସ୍ୱେଚ୍ଛାପ୍ରଣୋଦିତଭାବେ ମାନିବାକୁ ହେବ, କାହାର ବାଧ୍ୟବାଧକତା ବା ପ୍ରରୋଚନା

ବ୍ୟତୀତ । ଏହିସବୁ ସୂକ୍ଷ୍ମ ବିଚାର ବ୍ୟତୀତ ଅନ୍ୟ କେତେଗୁଡ଼ିଏ ବିଚାର ମଧ୍ୟ କର୍ମୀ ପକ୍ଷରେ ଅନିବାର୍ଯ୍ୟ । ତାହା ହେଉଛି ନିଜ ଅଞ୍ଚଳର ଦାୟିତ୍ୱ, ପରିବେଷ୍ଟନୀ ଓ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ବିରୁଦ୍ଧାଚରଣପାଇଁ ଉପଯୋଗୀ ଅସ୍ତ୍ର । ମୋ ଉପରେ ସେତେବେଳେ ସ୍ୱତନ୍ତ୍ର ଦାୟିତ୍ୱ ଥାଏ । ବର୍ଦ୍ଧମାନ ଜମିଦାରୀ କୁଜଙ୍ଗର କୈବର୍ତ୍ତ ପ୍ରଜାମାନଙ୍କ ୫୭ କିତା ନଦୀର ମଛଦିଆ ସ୍ୱତ୍ୱାସ୍ୱତ୍ୱ ସମ୍ପର୍କୀୟ ବିଧିବଦ୍ଧ ଆନ୍ଦୋଳନକୁ ପରିଚାଳନା କରିବା । ଜିଲା ସମ୍ମିଳନୀରେ ନିର୍ବାଚନ ଲଢ଼ିବା ପ୍ରସ୍ତାବ ଯେପରି ଗୃହୀତ ହୋଇଥିଲା, କୈବର୍ତ୍ତମାନଙ୍କର ସମସ୍ୟାରେ ହସ୍ତକ୍ଷେପ କରିବା ମଧ୍ୟ ସେହିପରି ଆଉ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ମୋ ନିଜ ଅଞ୍ଚଳରେ ଏହି ଦାୟିତ୍ୱଟି ମୋ ଉପରେ ନ୍ୟସ୍ତ କରାଯିବାରୁ ମୋତେ ଜିଲା ସମ୍ପାଦକ ଦାୟିତ୍ୱରୁ ମୁକ୍ତି ଦିଆଯାଇ କୁଜଙ୍ଗ ଅଞ୍ଚଳର ମୋଟାମୋଟି କଂଗ୍ରେସ କାମରେ ମନୋନିବେଶ କରିବାକୁ ଉପର ମହଲରୁ ନିର୍ଦ୍ଦେଶ ମିଳିଥାଏ । କୁଜଙ୍ଗ (ବର୍ଦ୍ଧମାନ) ଜମିଦାରଙ୍କ ସ୍ଥାନୀୟ ଶାସନ ସଙ୍ଗଠନ ସରକାରୀ ଛାଞ୍ଚରେ ହୋଇଥିବାରୁ ସରକାରୀ ପୁଲିସଠାରୁ ଆରମ୍ଭକରି ଜିଲା କଲେକ୍ଟର ପର୍ଯ୍ୟନ୍ତ ସମସ୍ତେ ପ୍ରତିକ୍ରିୟାଶୀଳ ଜମିଦାରୀ ବ୍ୟବସ୍ଥାମାନଙ୍କୁ ଅମୃତ ଦୃଷ୍ଟିରେ ଦେଖିବାର କଥା । ତେଣୁ କୁଜଙ୍ଗ ଅଞ୍ଚଳରେ କଂଗ୍ରେସ କାମକରିବା ଅର୍ଥ ଦୁଇଟି ପ୍ରବଳ ପ୍ରତିକ୍ରିୟାଶୀଳ ଶକ୍ତିବିରୋଧରେ ସ୍ୱର ଉତ୍ତୋଳନ କରିବା । ବିଶେଷତଃ ବଙ୍ଗଦେଶୀ ଜମିଦାର ଦୂରରେ ଥିବାରୁ ସ୍ଥାନୀୟ ଏଜେଣ୍ଟମାନେ ଶୋଷଣ ପାଇଁ ଉପଦ୍ରବ ସୃଷ୍ଟି କରିବା ସାଧାରଣ ଘଟଣା ଥିଲା ଏବଂ ଏହି ଦୈନନ୍ଦିନ ବ୍ୟାପାର ଏପରି ବ୍ୟାପକ ଆକାରରେ ସଙ୍ଗଠିତ-ଭାବେ ହେଉଥିଲା ଯେ ଲୋକସାଧାରଣଙ୍କର ନୈତିକମାନ ଅତ୍ୟନ୍ତ ଶୋଚନୀୟଭାବେ ନିମ୍ନସ୍ତରକୁ ଖସିଆସିଥିଲା । ଯେଉଁ ବହୁସଂଖ୍ୟକ କୈବର୍ତ୍ତମାନେ ମାତ୍ର କେତେମାସ ପରେ ବୀରଦର୍ପରେ ବିପ୍ଳବର ମଶାଲ ଜାଳି ଏହି ସ୍ଥାନୀୟ ଜମିଦାରୀ ସଙ୍ଗଠନକୁ ବିଦ୍ରୂପ କରିବା ଏକ ବିଳାସ ବୋଲି ମନେକଲେ ସେହିମାନେ ମାତ୍ର କେତେମାସ ପୂର୍ବେ ଭୋଟ୍ ଟାଣିବାକୁ ସପ୍ତାହ ସପ୍ତାହପାଇଁ ବେଠିରେ ଧରାହୋଇ ଆସୁଥିଲେ ଏବଂ ସେଥିରୁ ମୁକ୍ତି ପାଇବାପାଇଁ ଚପରାଶି ଗ୍ରାମରେ ପହଞ୍ଚିଲେ ଏଣେତେଣେ ଲୁଚି ବୁଲୁଥିଲେ କିମ୍ବା ହଠାତ୍ ଧରାପଡ଼ିଗଲେ କିଛି କିଛି ଉତ୍କୋଚ ଦେଇ ଆତ୍ମରକ୍ଷା କରୁଥିଲେ । କଥାକଥାକେ ମାଡ଼ଦେବା ଏକ ସାଧାରଣ ଘଟଣା ଥିଲା । ଏ ସବୁର ବିରୁଦ୍ଧାଚରଣ କରିବା ଅର୍ଥ ସରକାରୀ ଶାସକମାନଙ୍କ ସମେତ ଜମିଦାରୀ କର୍ମଚାରୀଙ୍କ କୋପଦୃଷ୍ଟିରେ ପଡ଼ିବା ଏବଂ ନାନାପ୍ରକାର ହୀନ କୌଶଳମାନଙ୍କର ଶିକାର ହେବା । ୧୪୪ ଧାରା ବା ମିଛ ମାଲିମକଦ୍ଦମାରେ ଜଡ଼ିତ କରି କାବୁ କରିଦେବା ହେଉଛି ଏଜାତୀୟ ଅତ୍ୟାଚାରୀ-ମାନଙ୍କର ଶ୍ରେଷ୍ଠ କୌଶଳ । ଅଞ୍ଚଳ ଦାୟିତ୍ୱରେ ଧୈର୍ଯ୍ୟଧରି ପଡ଼ିରହି କାମ କରିବାକୁ ହେଲେ ଏହିସବୁ ଘୃଣ୍ୟ ଅଭିଯାନମାନଙ୍କର ସମ୍ମୁଖୀନ ହେବାକୁ ପଡୁଥିଲା । ସେଥିପାଇଁ ନିର୍ବାଚନର ସାଫଲ୍ୟ ଉପରେ ଅଞ୍ଚଳର

ପ୍ରତିନିଧିତ୍ୱ କରିବାର ବିଧିବଦ୍ଧ ସୁଯୋଗ ମିଳିବ ଓ ଅଞ୍ଚଳର ଆନ୍ଦୋଳନ ଆଗେଇବାକୁ କେତେଟା ପୋଷକତା ମିଳିବ, ଏହିସବୁ ଦୃଷ୍ଟିରୁ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ମୋତେ ମନୋନୀତ କରାଗଲା ।

ସେତେବେଳେ ବିହାର ସହିତ ଓଡ଼ିଶା ଗୋଟିଏ ଡଭିଜନ ହୋଇ ରହିଥାଏ । ପାଟନା, ଭାଗଲପୁର, ହଜାରିବାଗ, ତିରହୁଟ ଏବଂ ଓଡ଼ିଶା ଏହି ପାଞ୍ଚଟି ଡିଭିଜନକୁ ଘେନି ବିହାର-ଓଡ଼ିଶା ପ୍ରଦେଶର ବିଧାନସଭା ବା କାଉନ୍‌ସିଲକୁ ଓଡ଼ିଶା ଡଭିଜନରୁ ଦଶଟି ନିର୍ବାଚନ ମଣ୍ଡଳୀ ଥାଏ । ଉପକୂଳବର୍ତ୍ତୀ କଟକ, ପୁରୀ, ବାଲେଶ୍ୱର ତିନି ଜିଲ୍ଲାରୁ ଦୁଇଜଣଲେଖାଁ ଛଅଜଣ, ସମ୍ବଲପୁର ଜିଲ୍ଲାରୁ ଜଣେ, ସମଗ୍ର ମ୍ୟୁନିସିପାଲିଟିରୁ ଜଣେ, ମୁସଲମାନମାନଙ୍କ ପକ୍ଷରୁ ଜଣେ ଏବଂ ଜମିଦାରମାନଙ୍କ ପକ୍ଷରୁ ଜଣେ ଏହିପରି ଦଶଜଣଙ୍କ ମଧ୍ୟରୁ କଂଗ୍ରେସ ଆଠୋଟି ମଣ୍ଡଳୀରେ ପ୍ରତିଦ୍ୱନ୍ଦ୍ୱିତା କରିବାର ସ୍ଥିରହେଲା । ପୁରୀରୁ ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର, କଟକରୁ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ମୁଁ ଏବଂ ବାଲେଶ୍ୱରରୁ ଶ୍ରୀ ହରେକୃଷ୍ଣ ମହତାବ ଓ ଶ୍ରୀ ନନ୍ଦକିଶୋର ଦାସ ସାଧାରଣ ନିର୍ବାଚନମଣ୍ଡଳୀପାଇଁ ଏବଂ ମ୍ୟୁନିସିପାଲିଟି ଓ ଜମିଦାର ମଣ୍ଡଳୀମାନଙ୍କପାଇଁ ଯଥାକ୍ରମେ ଶ୍ରୀ ଯଦୁମଣି ମଙ୍ଗରାଜ ଓ ଭିଙ୍ଗାରପୁର ଜମିଦାର ଶ୍ରୀ ଗଙ୍ଗାଧର ଦାସ ଚୌଧୁରୀ ମନୋନୀତ ହେଲେ । ମନୋନୟନ ପତ୍ର ଯାଞ୍ଚବେଳେ ବୟସ କେତେମାସ କମ୍‌ଥିବା ବିଶ୍ୱବିଦ୍ୟାଳୟ କାଗଜପତ୍ର ଦ୍ୱାରା ଦେଖାଇ ଦେଓ୍ୱାନ ବାହାଦୂର ଶ୍ରୀ ଲକ୍ଷ୍ମୀଧର ମହାନ୍ତି ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଶ୍ରୀନବକୃଷ୍ଣ ଚୌଧୁରୀଙ୍କ ମନୋନାୟନ ପତ୍ର ରଦ୍ଦ କରିଦେଲେ । ମୋର ମଧ୍ୟ ସେହି ଦୋଷ ଥିଲା । କିନ୍ତୁ ଉତ୍ତର କଟକରେ ମୋ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ମଧୁପୁର ରାଜାସାହେବ ଓ ବ୍ରଜସୁନ୍ଦର ଦାସ ଏ ଦୋଷ ମୋର ଦେଖାଇବାକୁ ବିଶ୍ୱବିଦ୍ୟାଳୟ କାଗଜପତ୍ର ଇତ୍ୟାଦି ସଂଗ୍ରହ କରି ପ୍ରସ୍ତୁତ ହୋଇପାରିନଥିଲେ– ଫଳରେ ମୁଁ ରକ୍ଷାପାଇଗଲି ।

ମାତ୍ର ଦୁଇ ତିନିଦିନ ପରେ ଗୋପାଷ୍ଟମୀ ଉତ୍ସବରେ ଗୋଟିଏ ଘଟଣା ଘଟିଲା । ବ୍ୟାସସରୋବର ଷ୍ଟେସନ୍ (ଯାଜପୁର ରୋଡ଼) ପାଖରେ ଡୁଙ୍ଗର ଦାସ ନାମକ ଜଣେ ଧର୍ମପ୍ରାଣ ମାରବାଡ଼ିଙ୍କର ଗୋଟିଏ ଗୋଶାଳା ଥାଏ । ଏହି ଗୋଶାଳା ପ୍ରତିଷ୍ଠା କିମ୍ବା ବାର୍ଷିକ ଉତ୍ସବରେ ପୌରୋହିତ କରିବାକୁ ମଧୁପୁର ରାଜାସାହେବଙ୍କୁ ବରଣ କରଯାଇଥିଲା । ଏ ସୁବିଧାରେ ନିର୍ବାଚନ ପ୍ରସଙ୍ଗରେ ସେ ନିଶ୍ଚୟ କିଛି କହିବେ ଅନୁମାନ କରି ଦାସେ ଆପଣେ (ସ୍ୱର୍ଗୀୟ ଗୋପବନ୍ଧୁ ଦାସ) ମୋତେ ଡକାଇନେଇ ଏ ସଭାରେ ଉପସ୍ଥିତ ରହି ସଭାପତି ମଧୁପୁର ରାଜାସାହେବଙ୍କ କାର୍ଯ୍ୟକଳାପ ଲକ୍ଷ୍ୟକରିବାକୁ ନିର୍ଦ୍ଦେଶ ଦେଲେ ଏବଂ ରାଜାସାହେବ ବହୁ ଲୋକସମାଗମର ସୁଯୋଗ ନେବାକୁ ଯଦି ନିର୍ବାଚନ ପ୍ରସଙ୍ଗରେ କିଛି କଥା ଉଠାନ୍ତି ତାହା ହେଲେ ଯଥାସମ୍ଭବ ପ୍ରତିବାଦ କରିବାକୁ ଉପଦେଶ ଦେଇ ମୋତେ ପଠାଇଦେଲେ ।

ଆଡ଼ମ୍ବର ଓ ବହୁ ଜନସମାଗମ ମଧ୍ୟରେ ଯଥାସମୟରେ ସଭାକାର୍ଯ୍ୟ ଆରମ୍ଭହେଲା । ପୁରୋଧାଭାବେ ଅନୁଷ୍ଠାନର ଉନ୍ମୋଚନ ଉଦ୍ଦେଶ୍ୟରେ ଗୋଟିଏ ପ୍ରାଥମିକ ଭାଷଣରେ ନିର୍ବାଚନ ପ୍ରସଙ୍ଗ ଉଠାଇବାକୁ ରାଜାସାହେବ ଛାଡ଼ିଲେନାହିଁ । ଭାଷଣର ବିଷୟବସ୍ତୁ ଥିଲା– "ଗତ ତିନିବର୍ଷ ବିଧାନସଭାକୁ ମୁଁ ଯାଇଥିଲି ସତ, କିନ୍ତୁ ଗୋ-ଜାତିର ଉନ୍ନତିକଳ୍ପେ ମୁଁ ବହୁ ଚିନ୍ତା କରିଥିଲେ ମଧ୍ୟ କିଛି କରିପାରିନାହିଁ । ପ୍ରତିଗ୍ରାମରେ ଯଥେଷ୍ଟ ପରିମାଣରେ ଗୋଚର ରଖିବାକୁ ଆଇନ କରାଇବା ମୋର ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟର ସଫଳତାପାଇଁ ଆଗାମୀ ନିର୍ବାଚନରେ ମୋତେ ଜୟଯୁକ୍ତ କରିବାକୁ ଆପଣମାନେ ସଂଘବଦ୍ଧ ହୁଅ ।"

ମୋତେ ଠିକ୍ ମଉକା ମିଳିଗଲା ଏବଂ ଯେତେବେଳେ ସାଧାରଣଙ୍କ ପକ୍ଷରୁ କାହାର କିଛି କହିବାର ଥିଲେ କହିବାକୁ ସଭାପତି ଆହ୍ୱାନ କଲେ ସହସ୍ର ଜନତା ମଧ୍ୟରୁ ମୁଁ ଆଗେଇଗଲି । ମୋର ଉତ୍ତରର ବିଷୟବସ୍ତୁ ଥିଲା– "ମଧୁପୁର ରାଜ୍ୟରେ ରାଜାସାହେବଙ୍କ ପିତାଙ୍କ ରାଜତ୍ୱ କାଳରେ ଯେତେ ଗୋଚର ପ୍ରତିଗ୍ରାମରେ ଥିଲା, ତାହା ସେହିପରି ଅଛି ନା ଏ ରାଜାଙ୍କ ରାଜତ୍ୱରେ ତହିଁରୁ ବହୁଳାଂଶ ଆବାଦ ହୋଇଗଲାଣି ? ଏ ପ୍ରଶ୍ନର ଉତ୍ତର ସଭାପତି ଆସନରେ ବସିଥିବା ରାଜାସାହେବ ଆଗେ ଦିଅନ୍ତୁ କିମ୍ବା ତାଙ୍କ ରାଜ୍ୟରେ ଗୋଚର ରକ୍ଷାପାଇଁ କି ଉଦ୍ୟମ କରିଛନ୍ତି ତାହା ଏ ସଭାକୁ ଜଣାନ୍ତୁ । ଆମେ ଯେତେଦୂର ଜାଣୁ ମଧୁପୁର ରାଜ୍ୟତମାମ ଅଧିକାଂଶ ଗୋଚର ଚାଷ ଜମିରେ ପରିଣତ ହୋଇଛି, ହେବାକୁଯାଉଛି ଯେଉଁଥିପାଇଁ ରାଜାସାହେବ ପ୍ରତ୍ୟକ୍ଷଭାବେ ଦାୟୀ । ଯଦି ଆସନ୍ନ ନିର୍ବାଚନପାଇଁ ରାଜାସାହେବ ଅଭିଯାନ ଆରମ୍ଭ କରିବାକୁ ଏ ବିରାଟ ସଭାର ସୁଯୋଗ ନେଉଥିବେ ସେ ଅଲଗା କଥା । କିନ୍ତୁ ଗୋଚର ରକ୍ଷାପାଇଁ ତାଙ୍କର ଏ ନିବେଦନ କେବଳ ମିଥ୍ୟାଚାର ନୁହେଁ, କପଟାଚାର ମଧ୍ୟ ।" ମୋର ଅଳ୍ପ କଥାରେ ଜନତା ଉଦ୍‌ବୋଧିତ ହୋଇଗଲେ ଏବଂ ସଭା ପରେ ସହସ୍ର ସହସ୍ର ଜନତା ମୋଆଡ଼କୁ ଆଗେଇଆସି ମୋ ପରିଚୟ ପାଇବାକୁ ବ୍ୟାକୁଳ ହୋଇଉଠିଲେ । ଅବଶ୍ୟ ମୋ ସହକର୍ମୀ ମୋ ପରିଚୟ ଓ ରାଜାସାହେବଙ୍କ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱୀଭାବେ କଂଗ୍ରେସ ପକ୍ଷରୁ ମନୋନୀତ ପ୍ରାର୍ଥୀ ବୋଲି ସୂଚାଇଦେଲେ, କିନ୍ତୁ ଲୋକମାନେ ଆଉ ଅଧିକ କିଛି ଶୁଣିବାକୁ ଦାବି କରିବସିଲେ । ସଙ୍ଗେ ସଙ୍ଗେ ଗୋଟିଏ ବଡ଼ ସଭା ବସି ନାନା ଦୃଷ୍ଟିରୁ ଆଲୋଚନା କରାଗଲା ଏବଂ ଲୋକଙ୍କ ମଧ୍ୟରେ କଂଗ୍ରେସ ପ୍ରତି ଅନୁରକ୍ତି ଓ ରାଜାରାଜୁଡ଼ାଙ୍କ ପ୍ରତି ବିରକ୍ତି ଭାବର ସ୍ପଷ୍ଟ ଲକ୍ଷଣ ଏ ସଭାଟିରେ ପରିଷ୍କାର ଜଣାଯାଉଥିଲା । ବୋଲିବା ବାହୁଲ୍ୟ ଯେ ରାଜାସାହେବଙ୍କ ବିଶ୍ୱସ୍ତ ଗୁପ୍ତଚରମାନେ ଏ ସଭାର ଗତିବିଧି ଅତି ସନ୍ତର୍ପଣ ଓ ସାବଧାନତାର ସହିତ ଲକ୍ଷ୍ୟ କରିବାକୁ ଛାଡ଼ିନଥିଲେ । ଉତ୍ସାହ, ଆଗ୍ରହ ଓ ଜିଗୀଷା ମଧ୍ୟରେ ସଭାଟି ସର୍ବୋତଭାବେ କଂଗ୍ରେସ ଅନୁକୂଳରେ ସାଫଲ୍ୟମଣ୍ଡିତ ହୋଇଥିଲା ।

ଉତ୍ତର କଟକର ଏହି ନିର୍ବାଚନମଣ୍ଡଳୀଟି କେନ୍ଦ୍ରପଡ଼ା ଓ ଯାଜପୁର ସବ୍‌ଡିଭିଜନ ଦୁଇଟିକୁ ଘେନି ଗଠିତ ହୋଇଥିଲା । ଚବିଶଟି ପୁଲିସ ଷ୍ଟେସନ ସମନ୍ୱିତ ଏ ନିର୍ବାଚନମଣ୍ଡଳୀଟି ଏଡ଼େ ବ୍ୟାପକ ଓ ବନ୍ୟାଞ୍ଚଳମାନଙ୍କଦ୍ୱାରା ଦୁର୍ଗମ ଯେ ସମସ୍ତ ଅଂଶରେ ପହଞ୍ଚିବା ଏକ ଅସମ୍ଭବ ବ୍ୟାପାର ଥିଲା । ନେତା ଓ ବକ୍ତାମାନଙ୍କୁ ମଟର ଇତ୍ୟାଦି ଯୋଗେ ନେବାକୁ ହେଲେ ତଦ୍ୱାରା ମଣ୍ଡଳୀର ମୋଟେ ଏକ-ଚତୁର୍ଥାଂଶକୁ ଯାଇହେବ । ପୁଣି ଚାରିଆଡ଼େ ନିର୍ବାଚନ ଅଭିଯାନ ଚାଲିଥିବା ଦୃଷ୍ଟିରୁ ବିଶେଷତଃ ମ୍ୟୁନିସିପାଲିଟିମାନଙ୍କପାଇଁ ଶ୍ରୀ ଯଦୁମଣି ମଙ୍ଗରାଜଙ୍କ ସହିତ ପୁରୀର ରାୟବାହାଦୁର ଶ୍ରୀ ଲୋକନାଥ ମିଶ୍ର ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା କରୁଥିବାରୁ ସହଜଗମ୍ୟ ସହର ଅଞ୍ଚଳ ଛଡ଼ା ନେତାମାନଙ୍କ ବହୁମୂଲ୍ୟ ସମୟରେ ଆଞ୍ଚ ଆଣି ଦୁର୍ଗମ ଧୋୟାକୁ ଆଣିବା ଏକ ଅବିବେଚନାର କାମ ହେବ । ତେଣୁ ମୋ ନିର୍ବାଚନ ମଣ୍ଡଳୀଟିପାଇଁ ବାବାଜୀ ରାମଦାସ (ଋଷିକେଶରେ ମନକାମନା ହନୁମାନଜୀଙ୍କ ନାମରେ ମଠ ପରିଚାଳନା କରୁଛନ୍ତି)ଙ୍କ ବ୍ୟତୀତ କୌଣସି ବାହାର ନେତା ଗସ୍ତକରିପାରିନଥିଲେ । ବାବାଜୀଙ୍କୁ କୌଣସି ନିର୍ଦ୍ଦେଶ ନଥିଲା । ମୋ ସହିତ ତାଙ୍କର ବ୍ୟକ୍ତିଗତ ସମ୍ପର୍କ ଯୋଗୁଁ ସେ ଜିଦ୍ କରି ଯାଇଥିଲେ ଏବଂ ତାଙ୍କ ଉପସ୍ଥିତିପାଇଁ ମଧୁପୁର, ଆଳି, କନିକାରେ ମତେ ସହଯୋଗ ମିଳିଲା । ପଛିକୋଟ, ଆଳି, କନିକା ଚଉଷଠିପଡ଼ା, କଳକଳା, ବଳରାମପୁର, ସୁକିନ୍ଦା, ଦର୍ପଣୀ ଇତ୍ୟାଦି ସବୁ ରାଜା-ରାଜୁଡ଼ାମାନେ ମଧୁପୁର ରାଜାଙ୍କପାଇଁ ଲାଗିପଡ଼ିଲେ ।*

ନିର୍ବାଚନ ସମ୍ପର୍କରେ ମୋର ଆଗରୁ ସାମାନ୍ୟ ଅଭିଜ୍ଞତା ଥିଲା କଂଗ୍ରେସ ପ୍ରାର୍ଥୀ ପଣ୍ଡିତ ନୀଳକଣ୍ଠ ଦାସ ଓ ଭୁବନାନନ୍ଦ ଦାସଙ୍କ ଏଜେଣ୍ଟ ହିସାବରେ ମୋ କର୍ମକ୍ଷେତ୍ର ତିର୍ତ୍ତୋଲ ଏବଂ ଏରସମା ପୁଲିସ ଷ୍ଟେସନ୍ ଦୁଇଟିରେ ସବୁଥର ସବୁ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହୁଏ ଏବଂ ସେହି ସୁବିଧା ଏବଂ ଅଭିଜ୍ଞତା ବଳରେ ମୁଁ ଦୁଇଟି ଉପାୟ ସ୍ଥିର କଲି । ଏଡ଼େ ବ୍ୟାପକ ଅଞ୍ଚଳକୁ ଛାଡ଼ିଦେଇ ଆବଶ୍ୟକମତେ ଗୋଟିଏ ଛୋଟ ଅଞ୍ଚଳରେ ନିବିଡ଼ଭାବେ ପ୍ରଚାର କରିବା ଏବଂ ଭୋଟ ଦେବାପାଇଁ ଭୋଟରମାନଙ୍କ ନାମ, ଗ୍ରାମ ବୁଝି ନମ୍ବର ସ୍ଥିରକରି ବ୍ୟାଲଟ ପେପର ଦେବାକୁ ଯେଉଁ ଅଯଥା ବିଳମ୍ବ ଘଟେ ତାକୁ ସୁଧାରିନେବାପାଇଁ ମୁଁ କେନ୍ଦ୍ରାପଡ଼ା ଡିଭିଜନରେ ଏକାଗ୍ର ହେଲି ଏବଂ ଭୋଟରମାନଙ୍କ ନାମ, ଗ୍ରାମ, ନମ୍ବରସମ୍ବଳିତ ଗୋଟିଏ ଟିକଟ ଯୋଗାଇଦେଲି ବିଶେଷତଃ ଯେଉଁ ଅଞ୍ଚଳରେ କଂଗ୍ରେସର ପୃଷ୍ଠପୋଷକତା ବିଶେଷ ଥିଲା । ଅତୀତରେ ଟିକଟ୍‌ରେ ନାମ ନଥିବା ଭୋଟରମାନଙ୍କୁ ବ୍ୟାଲଟ ପେପର ଯୋଗାଇବା ଅସୁବିଧା ହେଉଥିଲା; ତେଣୁ ଯେଉଁ ବୁଥ୍‌ମାନଙ୍କରେ ଟିକଟ୍ ପ୍ରଚଳନହେଲା ସେଠାରେ ସବୁ ଭୋଟରମାନେ ଭୋଟ ଦେବାର ସୁବିଧା ପାଉଥିବା ବେଳେ ଯେଉଁ ବୁଥ୍‌ରେ ଟିକଟ୍

* ଋଷିକେଶରେ ଓଡ଼ିଆ ବାବା ନାମରେ ପରିଚିତ ବାବାଜୀ ରାମଦାସ ଆଉ ନାହାନ୍ତି ।

ପ୍ରଚଳନ ନଥିଲା ସେଠାରେ ବହୁ ଭୋଟରେ ପ୍ରତିଦ୍ୱନ୍ଦୀମାନଙ୍କୁ ସମର୍ଥନ କରିବାକୁ ଆସି ଭୋଟଦେବାକୁ ସମୟ ନପାଇ ବହୁସଂଖ୍ୟାରେ ଫେରିଯାଉଥିଲେ ।

ଭୋଟ ଗଣତି ଦିନ ଜଣାଗଲା ଯାଜପୁର ସବ୍‌ଡିଭିଜନରେ ବଡ଼ଚଣା ଛଡ଼ା କଂଗ୍ରେସ ସୁକିନ୍ଦା, କୋରେଇ, ଧର୍ମଶାଳା, ଯାଜପୁର ଓ ବିଂଝାରପୁର ବୁଥ୍‌ମାନଙ୍କରେ ହାରିଯାଇଛି । ମାତ୍ର ଷଡ଼ଚାଳିଶଟି ଭୋଟରେ ବଡ଼ଚଣା ବୁଥ୍‌ରେ କଂଗ୍ରେସ ଜିତିଥିଲା । ଅନ୍ୟ ବୁଥ୍‌ମାନଙ୍କରେ କଂଗ୍ରେସ ବିପୁଳସଂଖ୍ୟାରେ ଜିତିଥିଲା । ପ୍ରକୃତ ପ୍ରତିଦ୍ୱନ୍ଦିତା ହେଲା କଂଗ୍ରେସ ଓ ମଧୁପୁର ରାଜାଙ୍କ ମଧ୍ୟରେ ଓ ବ୍ରଜସୁନ୍ଦର ଦାସ କେବଳ ବିଂଝାରପୁରରେ ଜିତିଥିଲେ ।

ନିର୍ବାଚନ ମକଦ୍ଦମା ଲଢ଼ି ଛଳେ-ବଳେ-କୌଶଳେ ଏହାର ପ୍ରତିଶୋଧପାଇଁ ଦୁଇଟି ପରାଜିତ ପ୍ରାର୍ଥୀ ବଦ୍ଧପରିକର ହେଲେ । ସେମାନଙ୍କୁ ନେତୃତ୍ୱ ଦେଉଥିଲେ କନିକା ରାଜାସାହେବ । ବିଶ୍ୱସ୍ତ ସୂତ୍ରରୁ ଖବର ନେବାରେ ଜଣାଗଲା, ମଧୁପୁର ରାଜାସାହେବ ସତରହଜାର ଓ ବ୍ରଜସୁନ୍ଦର ଦାସ ଆଠହଜାର ଟଙ୍କା ଏହି ନିର୍ବାଚନରେ ଖର୍ଚ୍ଚ କରିଥିଲେ । କେହି ବିଶ୍ୱାସ କରନ୍ତୁ ବା ନକରନ୍ତୁ, କଂଗ୍ରେସ ପକ୍ଷରୁ ଗୋଟିଏ କପର୍ଦ୍ଦକ ଖର୍ଚ୍ଚ ହୋଇନଥିଲା । ମୁଁ ମୋର ପୈତୃକ ସମ୍ପତ୍ତିରୁ ମାତ୍ର ଚଉଦଶହ ଟଙ୍କା ଖର୍ଚ୍ଚ କରିଥିଲି । କଂଗ୍ରେସ ପ୍ରତି ଲୋକଙ୍କର ଆସ୍ଥା କିପରି ଥିଲା, କର୍ମୀମାନେ କିପରି କୌଣସି ଲାଭର ଆଶାନରଖି ନିଜ ଉପରେ କାମ ପକାଇ କରୁଥିଲେ, ଏହି ନିର୍ବାଚନ ତା'ର ଏକ ଜ୍ୱଳନ୍ତ ନମୁନା ହୋଇ ରହିଚି । ସ୍ୱାଧୀନତା ପୂର୍ବ ଏବଂ ପର ନିର୍ବାଚନକୁ ତୁଳନା କଲେ ଆକାଶ ପାତାଳ ପ୍ରଭେଦ ଘଟେ । କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠତା ଲାଭ କରୁଛି ସତ, କିନ୍ତୁ କର୍ମୀମାନଙ୍କର ସେ ଆନ୍ତରିକତା ନାହିଁ କିମ୍ବା ନିଃସ୍ୱାର୍ଥ ମନୋବୃତ୍ତି ଘେନି କର୍ମକ୍ଷେତ୍ରକୁ ଓହ୍ଲାଉନାହାନ୍ତି । ଏ ଗ୍ଲାନି କିପରି ଓ କାହିଁକି ହେଲା ତାହା ଅନୁସନ୍ଧାନ କଲେ ବୁଝାଯାଏ ଯେ ଭାରତ କ୍ରମେ ପାଶ୍ଚାତ୍ୟର ଉନ୍ନତ ରାଷ୍ଟ୍ରମାନଙ୍କ ନିର୍ବାଚନ ପଦ୍ଧତିକୁ ଅନୁକରଣ କରୁଛି ଏବଂ ଏହି ବିଷୟରେ ଯେଉଁ କଦର୍ଯ୍ୟ ଇତିହାସ ମିଳେ ସେଥିରେ ଯେକୌଣସି ହୃଦୟବାନ୍ ବ୍ୟକ୍ତି କେବେ ଚାହିଁବନାହିଁ ଯେ ସେ ପଦ୍ଧତିରେ ଭାରତରେ ନିର୍ବାଚନ ହେଉ ଏବଂ ହେଲେ ଏହା ଏକ ଦୁର୍ଭାଗ୍ୟ । ଅବଶ୍ୟ ଜାଗତିକ ପରିଣାମ ଏକ ମାନବିନ୍ଦୁ ଦିଗରେ ତୀବ୍ର ବେଗରେ ଗତିକରୁଛି । ଏ ଘଡ଼ିସନ୍ଧିବେଳେ କେହି ସ୍ପଷ୍ଟ କରି କହିପାରୁନାହିଁ ମାନବିକତାର ଭାବୀ ସଂଗଠନ କି ରୂପରେଖ ଧରିବ । କିନ୍ତୁ ସମସ୍ତେ ନିଶ୍ଚିତଭାବେ ଉପଲବ୍ଧି କରିପାରୁଛନ୍ତି ଯେ ସମଗ୍ର ପୃଥିବୀ ଏକ ବିଶାଳ ବିବର୍ତ୍ତନପାଇଁ ପ୍ରସ୍ତୁତ ହେଉଛି, ଯେଉଁ ନିଷ୍ପତ୍ତିମୂଳକ ଅଗ୍ରଗତିରେ ସବୁ ଦେଶର ସବୁ ତ୍ରୁଟି ସଂଶୋଧିତ ହୋଇଯିବ । ଜାଗତିକ ଦୃଷ୍ଟିକୋଣ ବଦଳିଯାଇ ସ୍ୱାଗତ କରାଯିବ ଏକ ଶାନ୍ତି ମୈତ୍ରୀର ପ୍ଲାବନକୁ, ସଦାଚାର ଯାହାର ଏକମାତ୍ର ବାହକ ।

—

# ଐତିହାସିକ ସମ୍ମିଳନୀ

ମୁଁ ବିହାର-ଓଡ଼ିଶା କାଉନ୍‌ସିଲକୁ ନିର୍ବାଚିତ ହେବାର ଅବ୍ୟବହିତ ପରେ ଗୌହାଟି କଂଗ୍ରେସ ଅନୁଷ୍ଠିତ ହେଲା । ସଭାପତି ହୋଇଥିଲେ ମାନ୍ଦ୍ରାଜର ଭୂତପୂର୍ବ ଆଡ଼ଭୋକେଟ୍ ଶ୍ରୀନିବାସ ଆୟଙ୍ଗାର । ସଉକତ ଅଲି, ମହମ୍ମଦ ଅଲି ଭ୍ରାତୃଦ୍ୱୟ ମଧ୍ୟ ଏହି ଅଧିବେଶନରେ ଯୋଗଦେଇଥାନ୍ତି । ସେହିଠାରେ ସମ୍ବାଦ ପହଞ୍ଚିଲା ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କୁ ଜଣେ ମୁସଲମାନ ଆତତାୟୀ ଗୁଳିକରି ମାରିଦେଇଛି । ଅପରାଧ ଭିତରେ ତାଙ୍କର ସବୁଠାରୁ ବଡ଼ ଉଦ୍ୟମ ଥିଲା, ଯେକୌଣସି ଧର୍ମାବଲମ୍ବୀ ହେଉପଛେ, ଶୁଦ୍ଧକରି ତାକୁ ଆର୍ଯ୍ୟଧର୍ମାବଲମ୍ବୀ କରାଯାଇପାରେ ଏବଂ ବହୁସଂଖ୍ୟକ ମୁସଲମାନ ଶୁଦ୍ଧହୋଇ ଆର୍ଯ୍ୟ ଧର୍ମରେ ଦୀକ୍ଷିତ ହୋଇଥିଲେ । ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କ ବ୍ୟତୀତ ଏପରି କୌଣସି ଶକ୍ତିଶାଳୀ ବାଗ୍ମୀ ନଥିଲେ ଯେ କି ଆର୍ଯ୍ୟ ଧର୍ମର ବିଶେଷତ୍ୱ ବୁଝାଇ ଅନ୍ୟମାନଙ୍କର ରକ୍ଷଣ-ଶୀଳତାକୁ ଭାଙ୍ଗିପାରିଥାନ୍ତେ । ସେଥର ମୁଁ ଯଦିଓ ସଉକତ ଅଲିଙ୍କୁ ପ୍ରଥମଥର ଦେଖିଲି, ପୂର୍ବରୁ ଦେଖିନଥିବାରୁ ତାଙ୍କ ମୁଖମଣ୍ଡଳର କୌଣସି ପରିବର୍ତ୍ତିତ ଲକ୍ଷଣ ଲକ୍ଷ୍ୟକରି-ପାରିଲିନାହିଁ । କିନ୍ତୁ ଏଥିପୂର୍ବେ ମହମ୍ମଦ ଅଲିଙ୍କୁ ଦେଖିବାର ସୁବିଧା ଘଟିଥିଲା ଦିଲ୍ଲୀ ସ୍ପେସିୟାଲ କଂଗ୍ରେସ ଅଧିବେଶନରେ ଯେଉଁଠି ଆଜାଦଙ୍କ ସଭାପତିତ୍ୱରେ ସ୍ୱରାଜ୍ୟ ଦଳର ପ୍ରୋଗ୍ରାମ ଗୃହୀତ ହୋଇଥିଲା (୧୯୨୩) । ମୁଁ ଏବଂ ଶ୍ରୀମହତାବଜୀ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟଭାବେ ଓଡ଼ିଶାରୁ ଯୋଗ ଦେଇଥିଲୁ ଏବଂ ସେହିଥର ମହମ୍ମଦ ଅଲିଙ୍କୁ ଦେଖିବାର ସୁଯୋଗ ଘଟିଥିଲା । ପୁଣି ଏଥର ଗୌହାଟି କଂଗ୍ରେସରେ ଦ୍ୱିତୀୟଥର ଦେଖିବାବେଳକୁ ତାଙ୍କ ମୁଖମଣ୍ଡଳରେ ଗୋଟାଏ କିପରି ଉଦାସୀନଭାବ ଲକ୍ଷ୍ୟକରିପାରିଥିଲି । ଦ୍ୱିତୀୟଥର ତାଙ୍କର ମେଘଗମ୍ଭୀର ବାଗ୍ମୀତାରେ ଯେ ସମ୍ପୂର୍ଣ୍ଣ ଭଟ୍ଟାପଡ଼ିଥିଲା ତାହା ସ୍ପଷ୍ଟ ଲକ୍ଷ୍ୟ କରାଯାଇପାରୁଥିଲା । କେବଳ ଏତିକି ନୁହେଁ, ଦିଲ୍ଲୀ କଂଗ୍ରେସବେଳେ ଆନ୍ଦୋଳନର ଅବସ୍ଥା ଅତ୍ୟନ୍ତ ମାନ୍ଦାଥିଲା । ଗାନ୍ଧୀବାଦ ଓ ସ୍ୱରାଜ୍ୟ ଦଳ ଉଭୟଙ୍କ ମଝିରେ ଏକ ଦୋଦୁଲ୍ୟମାନ ଅବସ୍ଥାରେ ଆନ୍ଦୋଳନ ଗତିକରୁଥିଲା । ଗାନ୍ଧିଜୀଙ୍କ ଚୌରୀଚୌରା ଭ୍ରାନ୍ତି ଘୋଷଣା ପରେ ଆଇନ ଭଙ୍ଗ କରିବାକୁ ଦେଶ ପ୍ରସ୍ତୁତ କି ନୁହେଁ ପ୍ରତ୍ୟକ୍ଷ୍ୟ ଦେଖିବାପାଇଁ ଗୋଟିଏ ଉଚ୍ଚକୋଟୀର କମିଟି ଦେଶ ସାରା ଗସ୍ତ କରିଥିଲେ ଏବଂ ସେ କମିଟିରେ ପଣ୍ଡିତ ମୋତିଲାଲ ନେହେରୁ, ରାଜଗୋପାଳାଚାରୀ, ଭିଟଲଭାଇ ପଟେଲ, ଡାକ୍ତର କିଚ୍‌ଲୁ ଓ ସେରଓ୍ୱାନୀ ପ୍ରମୁଖ ନେତୃମଣ୍ଡଳୀ ପ୍ରତ୍ୟେକଟି କଂଗ୍ରେସ ପ୍ରଦେଶ ଗସ୍ତକରି ସ୍ଥାନୀୟ ନେତାମାନଙ୍କ ମତ ବୁଝିଥିଲେ । ମୁଁ ସେତେବେଳେ

କଟକ ଜିଲା କଂଗ୍ରେସ କମିଟିର ସଭାପତି ଥାଏଁ ଏବଂ ଏହି କମିଟିର କଟକ କାର୍ଯ୍ୟ-ନିର୍ଘଣ୍ଟ ସହିତ ସମ୍ପୂର୍ଣ୍ଣ ପରିଚିତ ହେବାର ସୁବିଧା ଘଟିଥିଲା । ସେମାନଙ୍କ ପରସ୍ପର ମଧ୍ୟରେ ଯୁକ୍ତି ଆଲୋଚନା ଉପରବେଳା କେତେଘଣ୍ଟା ବ୍ୟାପି ଚାଲିଥିଲା । ତହିଁରୁ ସ୍ପଷ୍ଟ ଜଣାଗଲା ଗାନ୍ଧିବାଦୀ ରାଜଗୋପାଳାଚାରୀ ଆଇନଭଙ୍ଗ ସପକ୍ଷରେ ଥିଲେ ଏବଂ ସିଭିଲ ଡିସ୍‌ଓବିଡ଼ିଏନ୍‌ସି ଏନ୍‌କ୍ୱାରୀ କମିଟି ମଧ୍ୟରେ ସେ ଏକମାତ୍ର ଲୋକ ଥିଲେ ଯେ କି ସାକ୍ଷ୍ୟ ଦେଉଥିବା ସ୍ଥାନୀୟ ନେତାମାନଙ୍କୁ ଆଇନଭଙ୍ଗ ଆଡ଼କୁ ମତଦେବାକୁ ଯେପରି ପ୍ରବର୍ତ୍ତାଇବାକୁ ଚେଷ୍ଟାକରୁଥିଲେ, କମିଟିର ଅନ୍ୟ ସଭ୍ୟମାନଙ୍କସହ ଯୁକ୍ତି ବା ଆଲୋଚନା କଲାବେଳେ ଠିକ୍ ସେହିପରି ନିବର୍ତ୍ତାଇବା ପାଇଁ ଯଥେଷ୍ଟ ଚେଷ୍ଟା କରୁଥିଲେ । ଶେଷରେ ଓଡ଼ିଶାର ନେତାମାନେ ଆଇନଭଙ୍ଗ ବିରୋଧରେ ମତ ଦେଇଥିଲେ ଏବଂ ସମଗ୍ର ଦେଶର ଅବସ୍ଥା ତାହାହିଁ ଥିଲା ।

ଗୌହାଟି କଂଗ୍ରେସରେ ସ୍ୱରାଜ୍ୟ ଦଳ ବିଧିବଦ୍ଧଭାବେ ଗଠିତ ହୋଇ ବଙ୍ଗ ଓ ବିହାର ବ୍ୟତୀତ ପ୍ରତି ପ୍ରଦେଶରେ ଗରିଷ୍ଠସଂଖ୍ୟାରେ ନିର୍ବାଚନ ଦ୍ୱନ୍ଦ୍ୱରେ ବିଜୟଲାଭକରି ଆସିବା ପରେ ମୌଲାନାଙ୍କ ଦିଲ୍ଲୀ ନିର୍ଦ୍ଦେଶ କାର୍ଯ୍ୟକାରୀ ହୋଇଥିବା ଦେଖି ଯେପରି ଭାଷଣ ହେବାର କଥା ତାହା ତ ହୋଇନଥିଲା, ବରଂ ଜଣାଗଲା ସେ ଯେପରି ଗୋଟିଏ ଆସାମୀ ପକ୍ଷର ଓକିଲ ପରି ଜବାବ ସୁଆଲ ବାଢୁଛନ୍ତି । ମୁଁ ଠିକ୍ ଏହିପରି ବୁଝିଥିଲି ଏବଂ ପରଦିନ ଶୁଣାଗଲା ସ୍ୱାମୀଜୀଙ୍କ ହତ୍ୟା । ଏହା ଭାବିବାର ଯଥେଷ୍ଟ କାରଣ ଥିଲା ଯେ, ହିନ୍ଦୁ ମୁସଲମାନ ମିଳନରେ ସେତେବେଳକୁ ଆଞ୍ଚ ଆସିଲାଣି ଏବଂ ସ୍ୱରାଜ୍ୟ ଦଳର ସାଙ୍ଗଠନିକ ବିଧିବଦ୍ଧ ଓ ନିର୍ବାଚନର ସାଫଲ୍ୟରେ ମୁସଲମାନମାନେ ଆଶଙ୍କା ଅନୁଭବ କରିବାକୁ ଆରମ୍ଭ କଲେଣି ଯେ ଭାରତର ଭାବୀ ସଙ୍ଗଠନ ବା ସମ୍ବିଧାନରେ ସଂଖ୍ୟାଗରିଷ୍ଠ ହିନ୍ଦୁମାନଙ୍କ ମଧ୍ୟରେ ମୁସଲମାନମାନଙ୍କ ସ୍ଥାନ ନାହିଁ । ସେହି ସମୟରୁ ଧାରାବାହିକଭାବେ ଲକ୍ଷ୍ୟ କରାଗଲା, ମୁସଲମାନମାନେ କଂଗ୍ରେସ ରାଜନୀତିରୁ କ୍ରମଶଃ ଭାଙ୍ଗିପଡୁଛନ୍ତି । ଅବଶ୍ୟ ଡାକ୍ତର ଆନ୍‌ସାରୀ, ହାକିମ ଅଜମାଲ ଖାଁ, ମୌଲାନା ଆଜାଦ, ଆସଫ ଅଲି, ସେରୱାନୀ ପ୍ରମୁଖ ବିଶିଷ୍ଟ ମୁସଲମାନ ନେତାମାନେ ଜୀବନର ଶେଷବିନ୍ଦୁଯାଏ କଂଗ୍ରେସ ପ୍ରତି ଆନୁଗତ୍ୟ ତିଳେହେଲେ ହରାଇନଥିଲେ; କିନ୍ତୁ ଅଲି ଭ୍ରାତୃଦ୍ୱୟ କଂଗ୍ରେସ ପ୍ରତି କେବଳ ଯେ ବୀତସ୍ପୃହ ହୋଇଥିଲେ ତାହା ନୁହେଁ, ବିରୁଦ୍ଧାଚରଣ ମଧ୍ୟ କରିଥିଲେ । ସ୍ୱରାଜ୍ୟ ଦଳର କୃତିତ୍ୱ ବଢ଼ିବା ସଙ୍ଗେ ସଙ୍ଗେ କେବଳ ଯେ ଇଂରେଜ ଶାସକମାନେ ପ୍ରମାଦ ଗଣୁଥିଲେ ତାହା ନୁହେଁ, ମୁସଲମାନମାନେ ମଧ୍ୟ ଭାବୀ ଭାରତର ଗଣତାନ୍ତ୍ରିକ ଶାସନରେ ସଂଖ୍ୟାଲଘୁଭାବେ ଯେ ସେମାନଙ୍କର କୌଣସି ପ୍ରତିପତ୍ତି ରହିବନାହିଁ, ତାହା ମଧ୍ୟ ସେମାନେ କଳନା କରୁଥିଲେ । ତେଣୁ କୂଟନୀତିଜ୍ଞ ଇଂରେଜ-ମାନଙ୍କର ବିଶ୍ୱାସଭାଜନ ହୋଇପାରିଲେ ମୁସଲମାନ ନେତାମାନେ । ବିଶେଷତଃ

ଜାତୀୟବାଦୀ ବୋଲାଉଥିବା ମୁସଲମାନମାନେ କ୍ରମଶଃ ସାମ୍ପ୍ରଦାୟିକ ନେତାଭାବେ ଶାସକ ଗୋଷ୍ଠୀର ସମର୍ଥନ ଲାଭକରିପାରିଥିଲେ । ତାହା ସଙ୍ଗେ ସଙ୍ଗେ ଇଂରେଜ ଶାସକମାନେ ଆଉ ଗୋଟିଏ କଥା ବେଶ୍ ଉପଲବ୍‌ଧି କରିପାରିଲେ ଯେ, ଗଣତାନ୍ତ୍ରିକ ପାର୍ଲିଆମେଣ୍ଟ ଶାସନ ପଦ୍ଧତିରେ ହିନ୍ଦୁ ନେତାମାନେ ଖୁବ୍ ଦକ୍ଷତାର ସହିତ କାମ ଚଳାଇପାରିବେ । କେବଳ ଯେ, ସେମାନେ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ପ୍ରତିଭାବନ୍ତ ଥିଲେ ତାହା ନୁହେଁ, ଆଦର୍ଶ ପ୍ରତି ଆନୁଗତ୍ୟ ଦୃଷ୍ଟିରୁ ଦେଖିଲେ ପୃଥିବୀର ଯେକୌଣସି ଉଚ୍ଚକୋଟୀର କୂଟନୀତି ବିଶାରଦ ରାଜନୈତିକ ନେତାମାନଙ୍କ ସହିତ ସମାସ୍କନ୍ଧ ଓ ସ୍ଥଳବିଶେଷରେ ଶ୍ରେଷ୍ଠତର । ତେଣୁ ସେମାନେ ସ୍ୱରାଜ୍ୟ ଦଳର ନିର୍ବାଚିତ ଲୋକପ୍ରତିନିଧିମାନଙ୍କୁ ଉପଯୁକ୍ତଭାବେ ଗ୍ରହଣ କରିବାକୁ ପ୍ରସ୍ତୁତ ହେଉଥିଲେ । ସେମାନେ ଇଚ୍ଛା କରିଥିଲେ ଲୋକ-ପ୍ରତିନିଧିମାନଙ୍କୁ ଦମନର ଚାପଦ୍ୱାରା ଅସ୍ତବ୍ୟସ୍ତ କରିପାରି-ଥାନ୍ତେ । କିନ୍ତୁ ଇଂରେଜ ଜାତୀୟ ଚରିତ୍ରର ପରାକାଷ୍ଠାକୁ କୌଣସି କାରଣରୁ ନମିତ କରି କିଛି ନକରିବାକୁ ସେମାନେ ସର୍ବାଗ୍ରେ ପ୍ରସ୍ତୁତ ଥିଲେ । ପ୍ରକୃତ ଖେଳଓ୍ୱାଡ଼ ପରି ସେମାନେ ସାଧାରଣତଃ ଏପରି ଗୋଟିଏ ସ୍ତରରେ ରହି ଶାସନ ପରିଚାଳନା କରିବାକୁ ଲାଗିଲେ, ଯଦ୍ୱାରା ଭାରତୀୟମାନଙ୍କର ଶାସନ କ୍ଷେତ୍ରରେ ଏକ ପରିପକ୍ୱତା ଓ ଅଭିଜ୍ଞତା ହାସଲ ହୋଇଯାଉଥିଲା । ଯଦିଓ ଇଂରେଜ ଶାସନକୁ ଆମ୍ଭେମାନେ ଦ୍ୱୈତ ଶାସନ (bureaucracy) ଅଭିହିତ କରୁଥିଲୁଁ; କିନ୍ତୁ ତାହା ସ୍ୱୈରାଚାର (autocracy) ଠାରୁ କେତେକ ପରିମାଣରେ ପ୍ରଭେଦ ଥିଲା, ତାହା ମଧ୍ୟ ଉପଲବ୍‌ଧି କରିପାରୁଥିଲୁଁ ଏବଂ ଦ୍ୱୈତ ଶାସନଠାରୁ ସେତିକି ପାର୍ଥକ୍ୟ ରକ୍ଷାକରି ଉଚ୍ଚ ସ୍ତରକୁ ଉଠିପାରିଲେ ତାହା ଗଣତନ୍ତ୍ର (democracy) ହେବ ବୋଲି ଆମ୍ଭେମାନେ ବେଶ୍ ଅନୁଭବ କରିପାରିଥିଲୁ ।

ବହୁ ବର୍ଷର ପରାଧୀନତା ଫଳରେ ଶାସନକ୍ଷେତ୍ରରେ ଯେଉଁ ବାସ୍ତବ ଅଭିଜ୍ଞତା ଆବଶ୍ୟକ ତାହା ଭାରତର ଜନସାଧାରଣ ଭୁଲିଯାଇଥିଲେ ଏବଂ ଅନୁଶୀଳନପାଇଁ କ୍ଷେତ୍ର ପ୍ରସ୍ତୁତ କରି ସୁବିଧା ପ୍ରଦାନ କରିବା ସ୍ୱରାଜ ଦଳର ଶ୍ରେଷ୍ଠ କୃତିତ୍ୱ ଓ ଅବଦାନ ବୋଲି ବିଚାରିବାକୁ ହେବ । ଇଂରେଜମାନେ ଗଣତନ୍ତ୍ରର ନୀତି ପ୍ରତି ଲକ୍ଷ୍ୟ ରଖି ନିତାନ୍ତ ଛୋଟ ଛୋଟ ଘଟଣାରେ କିପରି ପଦକ୍ଷେପ ଆଭିମୁଖ୍ୟ ଗ୍ରହଣ କରୁଥିଲେ ତାହାର ଗୋଟିଏ ଦୃଷ୍ଟାନ୍ତ ମୋ ସମ୍ପର୍କରେ ଘଟିଥିଲା ଯାହାକି ଗୋଟିଏ ଉଦାହରଣଭାବେ ଧରାଯାଇପାରେ । ପୂର୍ବେ ବର୍ଣ୍ଣିତ ଅଛି ଆଠଗଡ଼ର ସ୍ଥାନୀୟ ସୁପରିଟେଣ୍ଡେଣ୍ଟଙ୍କ ସହିତ ମୋର ବ୍ୟକ୍ତିଗତ ମନୋମାଳିନ୍ୟ ଥିବାରୁ ସେ ମୋ ନାମରେ ରିପୋର୍ଟ କରି ସମଗ୍ର ଗଡ଼ଜାତରୁ ମୋତେ ବହିଷ୍କାର (externment) କରିବାର ଆଦେଶ ତତ୍‌କାଳୀନ ପଲିଟିକାଲ ଏଜେଣ୍ଟଙ୍କଠାରୁ ମଗାଇନେଇଥିଲେ । ତାହା ୧୯୨୧ ମସିହାର ଘଟଣା । ମୁଁ ସେ ବିଷୟରେ ନିଜେ କେବେ ଭାବିବାକୁ ଅବସର ପାଇନାହିଁ । ଅଥଚ ୧୯୨୭

ମସିହାରେ, ଦୀର୍ଘ ଛଅବର୍ଷ ପରେ, ମୁଁ ଯେତେବେଳେ ବିହାର-ଓଡ଼ିଶା କାଉନ୍‌ସିଲ୍‌କୁ ନିର୍ବାଚିତ ହେଲି, ଗୋଟିଏ ନିର୍ବାଚନମଣ୍ଡଳୀର ପ୍ରତିନିଧିଭାବେ, ମୋ ସମ୍ପର୍କରେ ଟିକ୍‌ନିଖି ସବୁ ଇତିହାସ ସମ୍ପୃକ୍ତ ସୂତ୍ରରୁ ମଗାଇନିଆଗଲା । ତେତେବେଳେ ହାମଣ୍ଡ ସାହେବ ବିହାର-ଓଡ଼ିଶାର ଏକ୍‌ଜିକ୍ୟୁଟିଭ କାଉନ୍‌ସିଲ୍‌ର ଥାଆନ୍ତି । ସେ ଜଣେ ଜାଠଦଳୀୟ ଲୋକ ବୋଲି ତାଙ୍କର ଯଥେଷ୍ଟ ବଦ୍‌ନାମ ଥିଲା ଏବଂ ଶାସନ କ୍ଷେତ୍ରରେ ସେ ରକ୍ଷଣଶୀଳ ନୀତିରେ କାମ ଚଳାଉଥିଲେ— ପ୍ରଗତିର ବହୁ ଦୂରରେ ରହି । କିନ୍ତୁ ଯେତେବେଳେ ମୋ ସମ୍ପର୍କରେ ସେ ଜାଣିଲେ ଯେ, ଗଡ଼ଜାତ ସମ୍ପର୍କରେ ମୋ ସମ୍ବନ୍ଧରେ ଏପରି ଏକ ଦଣ୍ଡବିଧାନ କାର୍ଯ୍ୟକାରୀ ଅଛି ବୋଲି, ସେ ସଙ୍ଗେ ସଙ୍ଗେ ନିଜେ ଆଭିମୁଖ୍ୟ ନେଇ ଏହି ଆଦେଶ ଉଠାଇଦେବାପାଇଁ ପଲଟିକାଲ ଏଜେଣ୍ଟଙ୍କ ଦୃଷ୍ଟି ଆକର୍ଷଣ କରିବାକୁ କେନ୍ଦ୍ରକୁ ଜଣାଇଦେଲେ । ତାହା ମୋପାଇଁ ନୁହେଁ— ମୋ ପ୍ରତିନିଧିତ୍ୱକୁ ସମ୍ମାନ ଦେବାପାଇଁ । ଅବଶ୍ୟ ସାମାନ୍ୟ କେତେକ ମାମୁଲି ସର୍ତ୍ତରେ ମୋ ପାଖକୁ ଯଥାସମୟରେ ପତ୍ର ଆସିଲା; କିନ୍ତୁ ମୁଁ ଅନୁସନ୍ଧାନ ନକରିବାଯାଏ ବୁଝିପାରିନଥିଲି କଣ କିପରି ହେଲା ବୋଲି । ଯେଉଁ ଅସ୍ପଷ୍ଟ ଭବିଷ୍ୟତ୍ ବିଷୟରେ ମୋର କୌଣସି ଧାରଣା ନଥିଲା, ଏହି ଘଟଣାରେ ମୁଁ ସ୍ପଷ୍ଟ ବୁଝିପାରିଲି ଯେ, ଭବିଷ୍ୟତ୍‌ରେ ଯେଉଁ ଶାସନପ୍ରଣାଳୀ ଭାରତରେ ପ୍ରବର୍ତ୍ତିବ, ତାହା ପୂରା ଲୋକମତ ଉପରେ ଗଠିତ ହେବ ଏବଂ ଇଂରେଜମାନେ ଯେତେବେଳେ ବୁଝିବେ ଯେ ଯାହା-ହେଉପଛେ କଂଗ୍ରେସ ଲୋକମତକୁ ବଳିଦେଇ ବା ଦଳିଦେଇ କିଛି କରିପାରିବନାହିଁ, ସେତେବେଳେ ସେମାନେ ନିଜ ଦେଶର ପରମ୍ପରା ପ୍ରତି ଅନ୍ତତଃ ସମ୍ମାନ ଦେଖାଇବାକୁ ଭାରତ-ଶାସନ-କ୍ଷେତ୍ରରୁ ଅପସରିଯିବେ ।

ମୁଁ ଆଗରୁ ଲେଖିଛି— ମହାତ୍ମାଜୀଙ୍କ ଓଡ଼ିଶା ଆଗମନବେଳେ ନିର୍ଦ୍ଦେଶ ଥିଲା କର୍ମୀମାନେ ଗ୍ରାମଗହଳକୁ ଫେରିଯାଇ କାମ ଆରମ୍ଭ କରିବାକୁ ଏବଂ ସେହି ନିର୍ଦ୍ଦେଶମତ ମୁଁ ବଣିକୁନ୍ଦ ଆଶ୍ରମରେ ରହି କୁଜଙ୍ଗର ସମସ୍ୟାମାନଙ୍କ ପ୍ରତି ଧ୍ୟାନ ଦେଇଥାଏ । କୁଜଙ୍ଗର ସମସ୍ୟା ଥିଲା ପ୍ରଧାନତଃ ଦୁଇଟି ଶାସନର ପ୍ରଚଳନ— ଗୋଟିଏ ସରକାରୀ ଏବଂ ଅନ୍ୟଟି ଜମିଦାରଙ୍କର ବେସରକାରୀ ଏବଂ ବୋଲିବା ବାହୁଲ୍ୟ ଯେ, ବେସରକାରୀ କଳଟି ଉତ୍କଟତର ଥିଲା । ଖଜଣା ଆଦାୟ ସମୟରେ ଖଜଣା ନଦେଇ ଧାନ ଅମଳ କେହି କରିପାରିବେନାହିଁ ବୋଲି ପାଣ, ହାଡ଼ିମାନଙ୍କ ଖପରା ବ୍ୟାପକଭାବେ ଧାନଗଦାମାନଙ୍କରେ ରଖାଯାଇ ଧାନଗଦାକୁ ଅସ୍ପୃଶ୍ୟ କରି ରଖିଦିଆଯାଉଥିଲା । ନିରୀହ ଲୋକଙ୍କୁ ଧରିଆଣି ଗଛରେ ବାନ୍ଧି ନିଷ୍ଠୁର ମାଡ଼ ଦିଆଯାଉଥିଲା । ବେଠିରେ ପ୍ରଚଳନ ବ୍ୟାପକଭାବେ ଥିଲା । ତାହାଛଡ଼ା ସ୍ୱାଧୀନଭାବେ କେହି କିଛି ସଂଗଠନ କଲେ ତାକୁ ଜମିଦାରଙ୍କ କୋପଦୃଷ୍ଟିରେ ପଡ଼ିବାକୁ ହେଉଥିଲା । ଏସବୁ ବିରୋଧରେ

କିପରି ସାଂଗଠନିକ ପ୍ରତିରୋଧ ହୋଇପାରିବ, ଏହାହିଁ ମୋର ଚିନ୍ତାର ବିଷୟବସ୍ତୁ ଥିଲା । ସେଥିପାଇଁ ସୁଯୋଗକୁ ଅପେକ୍ଷା କରୁଥିବା ସମୟରେ ଉଦୟବଟର ଧର୍ମାବଲମ୍ବୀମାନେ ଜମିଦାର ପକ୍ଷରୁ ଅତର୍କିତଭାବେ ଆକ୍ରାନ୍ତ ହେବାରୁ, ମୁଁ ସେମାନଙ୍କ ସହିତ ଦୃଢ଼ଭାବେ ଯୋଗସୂତ୍ର ସ୍ଥାପନ କରି ରହିଲି ଏବଂ ଷଣ୍ଢରାଜବଂଶର ଦେବତାମାନଙ୍କ ପତନୋନ୍ମୁଖ ମନ୍ଦିରମାନଙ୍କ ଜୀର୍ଣ୍ଣ-ସଂସ୍କାର କରିବାକୁ ଜମିଦାର ପ୍ରଜା ନିର୍ବିଶେଷରେ ସାହାଯ୍ୟ ଭିକ୍ଷା କରି ସମସ୍ତଙ୍କ ଦ୍ୱାରସ୍ଥ ହେଲି । ଜମିଦାର ପକ୍ଷର ଦୁର୍ଦ୍ଦାନ୍ତ ପ୍ରତିକ୍ରିୟାଶୀଳ ଲୋକେ ପ୍ରଥମେ ପ୍ରଥମେ ମୋର ଉଦ୍ଦେଶ୍ୟ ବୁଝିନପାରି ସହାନୁଭୂତିର ସହିତ ମନ୍ଦିର ଜୀର୍ଣ୍ଣସଂସ୍କାର କାମରେ ଯଥାଶକ୍ତି ସାହାଯ୍ୟଦେଲେ ଏବଂ ମେଳା ଲୋକେ ବା ଉଦୟବଟ ଧର୍ମାବଲମ୍ବୀମାନେ ପ୍ରତି ଗ୍ରାମରୁ ସର୍ବାଗ୍ରେ ବାହାରିପଡ଼ିଲେ ବଦାନ୍ୟତାର ସହିତ । ତେଣୁ ଯେଉଁ ରକ୍ଷଣଶୀଳମାନେ ମନ୍ଦିର, ଦିଅଁଦେବତା, ବୈଦିକାନୁଷ୍ଠାନ, ବ୍ରାହ୍ମଣ ବୈଷ୍ଣବ ସେବା ଇତ୍ୟାଦି ସନାତନୀ ପନ୍ଥାମାନଙ୍କୁ ଆକଟି ଧରିଥିଲେ କିମ୍ବା ମେଳା ଲୋକଙ୍କ ଜାତିଧର୍ମ ନିର୍ବିଶେଷରେ ପ୍ରଗତିଶୀଳ ପନ୍ଥା ପ୍ରତି ଉତ୍କଟ ବିରୋଧଭାବ ଦେଖାଉଥିଲେ ସେମାନେ ମନ୍ଦିର-ସଂସ୍କାର କାମରେ ସାହାଯ୍ୟଦେବାକୁ ବାଧହେଲେ ।

ଗୋଟିଏ ବର୍ଷ କାମ ଚାଲିବା ପରେ ହିସାବ ଛପାହେଲା ଯେ ଅନ୍ତତଃ ଦଶହଜାର ଟଙ୍କା ସଂଗୃହୀତ ହୋଇ ମନ୍ଦିର-ସଂସ୍କାର କାମରେ ନିୟୋଜିତ ହୋଇଛି । ସେତେବେଳେ କୁଜଙ୍ଗ ଜମିଦାରୀ କର୍ତ୍ତୃପକ୍ଷଙ୍କ ଦିବାସ୍ୱପ୍ନ ଭାଙ୍ଗିଗଲା ଏବଂ ସଙ୍ଗେ ସଙ୍ଗେ ମୋତେ ଜଣେ ନିଃସମ୍ପର୍କୀୟ ଲୋକ ବୋଲି ଚିତ୍ର କରାଯାଇ କୌଣସି ସୂତ୍ରରୁ କିଛି ସହଯୋଗ କରାନଯିବାପାଇଁ ଆଦେଶନାମା ରାଜ୍ୟମୟ ଚଳାଇଦିଆଗଲା । ମୁଁ ସେହିପରି ପ୍ରତିକ୍ରିୟାକୁ ଅପେକ୍ଷା କରି ବସିଥିଲି । କାରଣ ଲୋକମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ଯୋଜନା ମୋର ଶେଷସୀମାରେ ପହଞ୍ଚିଥାଏ ଏବଂ ମୁଁ ଯେକୌଣସିପ୍ରକାରେ ଆନ୍ଦୋଳନ ଆରମ୍ଭକରିଦବାକୁ ପ୍ରସ୍ତୁତ ହୋଇ ଅପେକ୍ଷା ରଖିଥାଏ । ଲୋକସାଧାରଣରେ ମୋ ପ୍ରତି ଏକ ଅନୁପମ ଶ୍ରଦ୍ଧା ସଞ୍ଚାରିତ ହୋଇସାରିଥାଏ । ଏହି ସମୟରେ ସାମାନ୍ୟ କାରଣରେ ଜଣେ କୈବର୍ତ୍ତଶ୍ରେଣୀର ନେତା (ଡାଙ୍ଗୁଆ) ହରି ପରିଡ଼ାଙ୍କ ଉପରେ ଅକାରଣେ ବା ସାମାନ୍ୟ କାରଣରେ ଜମିଦାରଙ୍କ ପକ୍ଷରୁ ମାଡ଼ହେଲା । ବାରୁଦଖାନା ପରି କ୍ଷେତ୍ର ପ୍ରସ୍ତୁତ ଥିଲା ଏବଂ ସ୍ଫୁଲିଙ୍ଗପାତମାତ୍ରେ ବିସ୍ଫୋରଣଘଟିଲା ।

କୁଜଙ୍ଗରେ କଳିଙ୍ଗ ନାବିକମାନଙ୍କ ବଂଶଧରମାନେ ପ୍ରକୃତରେ ସଂଗଠିତ ଓ ଦୁର୍ଦ୍ଧର୍ଷ । ବିରାଟ ମହାନଦୀ ମୁହାଣରୁ ମାଛଧରିବାପାଇଁ ଶତ ଶତ ସଂଖ୍ୟାରେ ଲୋକ ମାଇଲ ମାଇଲ ଦୀର୍ଘ ଜାଲ, ବହୁସଂଖ୍ୟକ ଡଙ୍ଗା, କାଠୁଆ ହୁଲି, କିଳାକାଠ ଇତ୍ୟାଦି ଆବଶ୍ୟକ । ତେଣୁ ସାମରିକ ସଂଗଠନ ପରି ଶୃଙ୍ଖଳା ନରହିଲେ ଏସବୁ ଜୀବିକା ଚଳାଇବା ଅସମ୍ଭବ । କାରଣ ଏହି ଅଞ୍ଚଳର ମୁହାଣିଆ ନଦୀମାନଙ୍କରେ ଇଲିସିମାଛ

ଜୁଆରିବା ସଙ୍ଗେ ସଙ୍ଗେ ସେମାନେ ଆଗରୁ ସମସ୍ତେ ଡଙ୍ଗା, ହୁଲି, ଜାଲ, କିଳାକାଠ ଘେନି ଗ୍ରାମେ ଗ୍ରାମେ ଅପେକ୍ଷା କରି ବସିଥାନ୍ତି । ପରିଶ୍ରମ ଅନୁସାରେ ଲାଭ ହେବାର ଆଶା ନଦେଖିଲେ ସେମାନେ ପ୍ରାୟ ମାଛ ଧରନ୍ତି ନାହିଁ । ନିର୍ଦ୍ଦିଷ୍ଟ ପରିମାଣରେ ମାଛ ଆସିବା ଅନୁମାନ କଲେ ପ୍ରତିଦଳର ଭଲ ଭାଇ ଓ ଡାଙ୍ଗୁଆମାନେ ଗ୍ରାମଗ୍ରାମକୁ ସମ୍ବାଦ ଦେଇ ଜଗତମାନଙ୍କୁ (କୈବର୍ତ୍ତ ସଂଗଠନ) ପରିଚାଳନା କରନ୍ତି । ସେମାନେ ସଙ୍ଗେ ସଙ୍ଗେ ଶତ ଶତ, ସହସ୍ର ସହସ୍ର ସଂଖ୍ୟାରେ ଉପସ୍ଥିତହୋଇ ଥଳ ପାଉଥିବା ଗୋଟିଏ ସ୍ଥାନରେ ମହାନଦୀ ମୁହାଣର ଏପାଖରୁ ସେପାଖ ପର୍ଯ୍ୟନ୍ତ କିଳାକାଠ ପୋତି ଦିଅନ୍ତି ଏବଂ ଜାଲ ଘେରାଇଦିଅନ୍ତି । ମାଇଲିଏ କିମ୍ବା ଦୁଇ ମାଇଲ ଉପରେ ସେହିପରି ଆଉ ଗୋଟିଏ ସ୍ଥାନରେ ଜାଲ ଓ କିଳାକାଠଦ୍ୱାରା ଅବରୁଦ୍ଧ କରିଦିଅନ୍ତି ।

ଏହିପରି ଏକ ଅବରୁଦ୍ଧ ସ୍ଥାନରେ ମାଛର ପରିମାଣ ସମୟସମୟରେ ଏତେ ହୋଇଥାଏ ଯେ ଦେଶମୟ ମାଛଶୁଖୁଆ ବ୍ୟବସାୟୀମାନେ ବି ତାହା କିଣିବାକୁ ସକ୍ଷମ ହୋଇପାରନ୍ତିନାହିଁ । ମାଛ ଅଳ୍ପହେଲେ ତାହା ପଣକାହାଣ ସୁମାରି (ଗଣନା) କରି ବେପାରୀମାନଙ୍କୁ ଦିଆଯାଏ । ମାଛ ବେଶି ହେଲେ ଡଙ୍ଗା ଡଙ୍ଗା ମୂଲ ହୋଇଯାଏ । ଗୋଟିଏ ଡଙ୍ଗାରେ ସାଧାରଣତଃ ଶହେ ମହଣ ମାଛ ବୋଝାଇ ହୋଇପାରେ, ସେ ସମୟରେ ଯାହାର ଅନ୍ୟୁନ ମୂଲ୍ୟ ଥିଲା ଦୁଇହଜାର ଟଙ୍କା । ଭଟ୍ଟା ସମୟରେ ଏହିପରି ମାଛକୁ ଅବରୁଦ୍ଧ କରାଯାଇ ଜୁଆର ଆରମ୍ଭ ମାତ୍ରେ ଜାଲକୁ ଉପରଆଡ଼କୁ ଚଳାନ୍ତି। ଆହାଣ ବା ମାଛ ଅକ୍ତିୟାର ହେବାପାଇଁ ଗୋଟିଏ ଅଗଭୀର ଜାଗା ବଛାଯାଇଥାଏ— ଯେଉଁଠାରେ ଜୁଆରବେଳେ ଚାରିପାଞ୍ଚ ଫୁଟ ପାଣି ଛିଡ଼ାହେଇପାରିବ ଓ ଭଟ୍ଟାସମୟରେ ନିର୍ମଳ ଶୁଖିଲା ହୋଇଯିବ । ଜୁଆର ହେବା ସଙ୍ଗେ ସଙ୍ଗେ ପାଣି ନଦୀର ଉପରଆଡ଼କୁ ଗତିକରେ ଏବଂ ସ୍ରୋତ ଅନୁକୂଳରେ ଜାଲ ବୁହାଇ ନିଆଯାଏ । ଅବରୁଦ୍ଧ ମାଛ କ୍ରମଶଃ ଅଗଭୀର ସଂକୀର୍ଣ୍ଣତର ଆହାଣକୁ ପ୍ରବେଶ କରିବାକୁ ବାଧହୁଏ । ଜୁଆର ସଉରା ବା ଶେଷସୀମାରେ ପହଞ୍ଚିଲାବେଳକୁ ମାଛ ସ୍ୱଚ୍ଛନ୍ଦରେ ଆହାଣରେ ପ୍ରବେଶକରେ । ସେହିଠାରେ ପୁଣି ତାକୁ ନିବିଡ଼ ଜାଲ ଓ କିଳାକାଠଦ୍ୱାରା ଅବରୁଦ୍ଧ କରାଯାଏ । ଭଟ୍ଟାପଡ଼ିଲେ ମାଛ ଶୁଖିଲାରେ ପଡିଯାଏ । ଏହିପରି ହଜାରେ କିମ୍ବା ତତୋଧିକ ମହଣ ମାଛ ଏକାବେଳେ ଧରାହେବା ସାଧାରଣ କଥା । ଖୁବ୍ ବେଶି ମାଛ ଥିଲେ ତିନିଚାରି ଫୁଟ ପାଣି ଭଟ୍ଟାସମୟରେ ରହିପାରିବା ସ୍ଥାନ ଆହାଣପାଇଁ ବଛା ହୋଇଥାଏ ଏବଂ ମାଛକୁ ଏକାଥରେ ମାରିଦିଆନଯାଇ ଆବଶ୍ୟକମତେ ଅଳ୍ପ ଅଳ୍ପ ପରିମାଣରେ ଧରାଯାଏ । ଏପରିକି ମାଛ ଗହଳ ହୋଇଥିଲେ ସପ୍ତାହ ସପ୍ତାହ ବ୍ୟାପୀ ଆହାଣରେ ମାଛକୁ ଅବରୁଦ୍ଧ ରଖି ଧୀରେ ଧୀରେ ଧରିନିଆଯାଏ ।

ଚିତ୍ରୋତ୍ପଳା ଓ ଲୁଣା ସଙ୍ଗମସ୍ଥଳ ମାର୍ଶାଘାଇ ନିକଟରେ ନାରଣପୁରଠାରେ ଏହିପରି ଗୋଟିଏ ଆହାଣର ଦୃଶ୍ୟ ବର୍ଦ୍ଧମାନ ମହାରାଜାଙ୍କ ତଦାନୀନ୍ତନ ପ୍ରତିନିଧି

ରାଜେନ୍ଦ୍ର କୁମାର ସେନ୍ ଦେଖିବାର ସୁବିଧା ପାଇଥିଲେ ଏବଂ ଗୋଟିଏ ମୁହାଣରେ ଜଗତମାନେ ବାଇଶହଜାର ଟଙ୍କା ଏକାଥରେ ପାଇବା କଳ୍ପନା କରି ଅସ୍ଥିର ହୋଇପଡ଼ିଲେ ଏବଂ ଏହିସବୁ ନଦୀ ଯାହାର ସଂଖ୍ୟା ୫୭ କିତା ବା ଖଣ୍ଡ ଅଟେ ତାହାସବୁ ମାତ୍ର ପାଞ୍ଚଶ ଏକ ଟଙ୍କାରେ ଜଗତମାନେ ପୂର୍ବ ଷଣ୍ଡରାଜା, ବିଦ୍ୟାଧର ଷଣ୍ଡଙ୍କଠାରୁ, ୧୮୬୧ ମସିହା ଏପ୍ରିଲ ୨୦ ତାରିଖ ସନନ୍ଦ ବଳରେ ଭୋଗଦଖଲ କରୁଥିବା ଏକ ବିଡ଼ମ୍ବନା ବ୍ୟାପାର ବୋଲି ଉପଲବ୍ଧି କରି ବୃଦ୍ଧି କରିବାକୁ ସୁବିଧା ଉଣ୍ଡିଲେ । ଆଗକୁ ବନ୍ଦୋବସ୍ତ ଆସୁଥିବାରୁ ସେହି 'ଯାବତଚନ୍ଦ୍ରାର୍କେ' ଭିତ୍ତିରେ ମିଳିଥିବା ଚିରସ୍ଥାୟୀ ସନନ୍ଦକୁ ରଦ୍ଦ କରିବାର ପ୍ରଲୋଭନ ତାଙ୍କର ପ୍ରବଳ ହୋଇଉଠିଥିଲା ।

ଯେତେବେଳେ ସେ ଏହିପରି ଏକ ସୁଯୋଗକୁ ଅପେକ୍ଷା କରୁଥିଲେ, ଠିକ୍ ସେତିକିବେଳେ ଦୈବୀ ନିର୍ଦ୍ଦେଶ ଭଳି ମୁଁ ମଧ୍ୟ ଅପେକ୍ଷା କରୁଥିଲି ରାଜନୈତିକ ଆନ୍ଦୋଳନରେ ଏହି ସଂଗଠିତ ଶକ୍ତିକୁ ପ୍ରବର୍ତ୍ତାଇ ଦେବାକୁ । ଏହି ସମୟରେ ତାଙ୍ଗୁଆ ହରି ପରିଡ଼ାଙ୍କୁ ଅକାରଣେ ମାଡ଼ହେଲା ଏବଂ ବିପ୍ଳବର ନିଆଁ ଦପ୍‌କରି ଜଳିଉଠିଲା । ଜମିଦାର ପକ୍ଷରୁ ମଧ୍ୟ ଜଗତମାନଙ୍କୁ ମାଲିମକଦ୍ଦମାରେ ଜଡ଼ିତ କରି ସେମାନଙ୍କ ଏକତା ଓ ନୈତିକ ବଳ ଭାଙ୍ଗିଦବାର ଚିରାଚରିତ କୌଶଳ ପ୍ରୟୋଗ କରିବାକୁ ସମୟ ଲାଗିଲାନାହିଁ । ଜଗତମାନେ ମଧ୍ୟ ବିପ୍ଳବର ଚିହ୍ନ ସ୍ୱରୂପ ରଜାଙ୍କ ପକ୍ଷରୁ ବହୁଦିନରୁ ଆବଦ୍ଧ ହୋଇ ମିଠାମାଛ ବଢ଼ାହୋଇଥିବା ସୁରକ୍ଷିତ ବାଲିଆ ଓ ବଡ଼ବନ୍ଧ ନଦୀରୁ ଜବରଦସ୍ତ ମାଛ ମାରିନେଲେ, ଫଳରେ ମାଲିମକଦ୍ଦମା ଉଭୟ ପକ୍ଷରେ ଆରମ୍ଭ ହୋଇଗଲା । ରାଜାଙ୍କ ପକ୍ଷରୁ ଅଭିଯୋଗ ଜଗତମାନେ ଆମ ସୁରକ୍ଷିତ ବନ୍ଧୁଆ ନଦୀରୁ ମାଛ ଚୋରୀକରି ନେଇଗଲେ ବୋଲି ଏବଂ ଜଗତମାନଙ୍କର ଦାବିହେଲା ଏହା ଆମର ଷଣ୍ଡରାଜାଙ୍କ ପ୍ରଦତ୍ତ ସନନ୍ଦଭୁକ୍ତ ନଦୀ ବୋଲି । ତେତେବେଳେ କଟକ ଜିଲ୍ଲାର ଡି.ଏସ୍.ପି. ବୈଷ୍ଣବ ଚରଣ ଦାସ ଏ ଫଉଜଦାରୀ ମକଦ୍ଦମା ତଦନ୍ତକୁ ଆସିଲେ । ଲାଲମୋହନ ପଟ୍ଟନାୟକ ତିର୍ତ୍ତୋଲ ଥାନା ଅଫିସର ଥାଆନ୍ତି ଏବଂ ଏରସମାରେ ଜଣେ ମୁସଲମାନ ଥାନା ଅଫିସର ଥାଆନ୍ତି । ତାଙ୍କ ନାମ ମକବୁଲ ଅଲି କିମ୍ବା ସେହିପରି କିଛି । କିନ୍ତୁ ମାଛ ଚୋରୀହୋଇଥିବା ଇଲାକା ହେଉଛି ତିର୍ତ୍ତୋଲ ଏବଂ ତିର୍ତ୍ତୋଲ ଅଫିସର ରାଜାପକ୍ଷକୁ ସମର୍ଥନ କରି ଏତଲା ନେଇଥାନ୍ତି । ମକବୁଲ ଅଲିଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ନଥିଲେହେଁ ନୂଆଗାଁର ତତ୍‌କାଳୀନ ୪ନମ୍ବର ପ୍ରେସିଡେଣ୍ଟ ରାମଚନ୍ଦ୍ର ସାମନ୍ତରା (ଯୋଗିବାବୁ)ଙ୍କ ସହିତ ଅଲିଙ୍କର ବିଶେଷ ସଦ୍ଭାବ ଥାଏ ଏବଂ ସନନ୍ଦଦୃଷ୍ଟେ ଜଗତମାନଙ୍କ ବିରୋଧରେ ଚାର୍ଜସିଟ୍ ନଦେଇ, ଫାଇନାଲ ରିପୋର୍ଟ କିପରି ଦିଆଯାଇପାରିବ ସେ ବିଷୟରେ ଡି.ଏସ୍.ପି. ମହୋଦୟଙ୍କୁ ସୁପାରିସ୍ କରିବାକୁ ମୋ ଅନୁରୋଧକ୍ରମେ ଯୋଗିବାବୁ ଅଲିଙ୍କୁ ପ୍ରବର୍ତ୍ତାଇପାରିଥିଲେ । ମକବୁଲ ସାହେବ କୁଜଙ୍ଗାଭିମୁଖେ ଡି.ଏସ.ପି.ଙ୍କ ସାକ୍ଷାତପାଇଁ ଯାତ୍ରାକଲେ ଏବଂ ଯଥାସମୟରେ

ସନନ୍ଦ ବିଷୟ ଉତ୍‌ଥାପନ କରି ଗରିବ କୈବର୍ତ୍ତମାନଙ୍କ ସ୍ୱତ୍ୱ ଉପରେ ଯେପରି ଆଞ୍ଚ ନ ଆସେ ତାହା ଦେଖିବାକୁ ପୁଲିସର ତୁଙ୍ଗ ଅଫିସରଭାବେ ତାଙ୍କର ମଧ୍ୟ କର୍ତ୍ତବ୍ୟ ଅଛି ବୋଲି ସୂଚାଇ ଦେଇଥିଲେ । ସ୍ୱାଧୀନଚେତା ହାକିମଭାବେ ବୈଷ୍ଣବବାବୁଙ୍କର ଅବିସମ୍ବାଦୀ ଖ୍ୟାତି ଥିଲା । ବିଶେଷତଃ ଏ କ୍ଷେତ୍ରରେ ଜମିଦାର ପକ୍ଷରୁ ତାଙ୍କୁ ପ୍ରଭାବିତ କରିବାକୁ ଷୋଡ଼ଶୋପଚାର ପୂଜା ପ୍ରଭୃତିର ଯେଉଁ ଘୃଣ୍ୟ ଉଦ୍ୟମ ଓ ଘନଘଟାର ଅଭିନୟ ଚାଲିଥିଲା, ତାହାର ମର୍ମ ତାଙ୍କ ତୀକ୍ଷ୍ଣ ଦୃଷ୍ଟିକୁ ଏଡ଼ାଇପାରିନଥିଲା । ଯଥାସମୟରେ ତଦନ୍ତ ଆରମ୍ଭ ଓ ଶେଷ ହୋଇଥିଲା ଏବଂ ଯଥାସମୟରେ କଟକ ପ୍ରତ୍ୟାବର୍ତ୍ତନ କରି ବୈଷ୍ଣବବାବୁ ମତ ଦେଲେ ଯେ ସନନ୍ଦଦୃଷ୍ଟେ ଏ ମକଦ୍ଦମା ଅଦାଲତର ବିଚାରଯୋଗ୍ୟ । ଜମିଦାର ପକ୍ଷର ସମସ୍ତ ଆଶା ଓ ତଦବିର ମରୀଚିକାରେ ମିଳେଇଗଲା ଏବଂ କେବଳ ଯେ ଜଗତମାନଙ୍କ ବିରୋଧରେ ଅଦାଲତରେ ଗୋଟିଏ କ୍ଷତିପୂରଣ ମକଦ୍ଦମା ଦାଏର କରାଗଲା ତାହା ନୁହେଁ, ଜଗତମାନଙ୍କୁ ଜବତ କରିବାପାଇଁ ନାନାବିଧ ଚକ୍ରାନ୍ତର ସୂତ୍ରପାତ ହେଲା । ବୋଲିବା ବାହୁଲ୍ୟ ଯେ, ମୋତେ ମଧ୍ୟ ତହିଁରେ ଜଡ଼ିତ କରିଦେବା ପାଇଁ କୌଣସି ଚେଷ୍ଟା, ଅପଚେଷ୍ଟା ବାଦ ଦିଆଗଲା ନାହିଁ ।

ମୁଁ କଂଗ୍ରେସ କର୍ମୀଭାବେ ଏ ଅଞ୍ଚଳକୁ ସଂଗଠନ କରିବାକୁ ଆସି ଏପରି ମାଲିମକଦ୍ଦମାରେ ଜଡ଼ିତ ହେବା କେତେଦୂର ସମୀଚୀନ କିମ୍ବା ମାଲିମକଦ୍ଦମାରେ ଜନତାକୁ ଜଡ଼ିତ କରିଦେବା କେତେଦୂର ନିନ୍ଦନୀୟ ହେବ, ତାହା ମଧ୍ୟ ମୁଁ ବିଚାର କରି ସ୍ଥିରକରିପାରୁନଥିଲି । ତେଣୁ ପୂର୍ବୋକ୍ତ ଜିଲା ସମ୍ମିଳନୀଟିଏ ତିର୍ତ୍ତୋଲରେ ବସାଇବାକୁ ଓ ନେତୃବର୍ଗଙ୍କର ସମର୍ଥନ ପାଇବାକୁ ମୁଁ ଉଦ୍ୟମରେ ରହିଲି । କଟକ ଜିଲା ସଭାପତି କାମରୁ ଇସ୍ତଫା ଦେଇ ଏହି ଐତିହାସିକ ଜିଲା ସମ୍ମିଳନୀରେ ଲାଗିପଡିଲି । ସେତେବେଳେ କଂଗ୍ରେସ ଆନ୍ଦୋଳନ ଭୀଷଣଭାବେ ମାନ୍ଦା ପଡିଥାଏ ଏବଂ ଗାନ୍ଧିବାଦୀ ଓ ସ୍ୱରାଜ୍ୟ ଦଳ ମଧ୍ୟରେ ତୀବ୍ର ମତଭେଦର ସୂତ୍ରପାତ ହୋଇଥାଏ । ତେଣୁ ଏହା ଗୋଟିଏ ସମଗ୍ର ଜାତୀୟ ଜୀବନରେ ଘଡ଼ିସନ୍ଧି ବେଳ । ଜିଲା ସମ୍ମିଳନୀ ଡକାଇବା ମାତ୍ରକେ ସମସ୍ତେ ମତ ନିର୍ବିଶେଷରେ ଯୋଗଦେବାପାଇଁ ସ୍ୱୀକୃତି ବ୍ୟକ୍ତକଲେ । ଅବଶ୍ୟ ସବୁ ବିଷୟରେ ଦାସେ ଆପଣଙ୍କ ମତ ଅନୁସାରେ ମୁଁ ପରିଚାଳିତ ହେଉଥାଏ । ଯଥାସମୟରେ ଶ୍ରୀ ଯଦୁମଣି ମଙ୍ଗରାଜଙ୍କ ପୌରୋହିତ୍ୟରେ ତର୍ତ୍ତୋଲ ଜିଲା ସମ୍ମିଳନୀ ଆରମ୍ଭହେଲା । ଦାସେ ଆପଣେ ବାବୁ, ବାବାଜୀ ରାମଦାସ, ଡାକ୍ତର ଏକରାମ ରସୁଲ, ଅଟଳବାବୁ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଯୋଗ ପ୍ରଦାନ କରି ସମ୍ମିଳନୀକୁ ସର୍ବାଙ୍ଗସୁନ୍ଦର ଓ ସାଫଲ୍ୟମଣ୍ଡିତ କରିଥିଲେ । ଏହି ସଭାରେ ସ୍ୱରାଜ୍ୟ ଦଳ ପ୍ରତି ଦାସେ ଆପଣେଙ୍କ ପରୋକ୍ଷ ସମର୍ଥନ ଥିବା ପ୍ରକାଶପାଇଥିଲା

ଏବଂ ଏହି ଜିଲା ସମ୍ମିଳନୀରେ ସ୍ୱରାଜ୍ୟ ଦଳର ବୈଧାନିକ ସଂଗଠନ ବ୍ୟବସ୍ଥା କଟକ ଜିଲାପାଇଁ ପ୍ରସ୍ତାବ ଗୃହୀତ ହୋଇଗଲା । ଜଗତମାନେ ସେମାନଙ୍କ ସମସ୍ୟା ବିଷୟରେ ସବୁକଥା ଦାସେ ଆପଣଙ୍କୁ ଜଣାଇଲେ ଏବଂ ଯଦିଓ ସମ୍ମିଳନୀରେ ବିଧିବଦ୍ଧଭାବେ ସେମାନଙ୍କପାଇଁ କୌଣସି ପ୍ରସ୍ତାବ ଗୃହୀତ ହୋଇନଥିଲା, ତଥାପି 'କ୍ଷେତ୍ରେକର୍ମ ବିଧିଯତେ' ନୀତିକୁ ଅନୁସରଣ କରି କାମ କରିଯିବାକୁ ମୋ ଉପରେ ସ୍ୱତନ୍ତ୍ର ଦାୟିତ୍ୱ ନ୍ୟସ୍ତ କରାଗଲା । ତାହା ସଙ୍ଗେ ସଙ୍ଗେ ସମଗ୍ର ଜିଲାର ସଂଗଠନ କର୍ମୀଭାବେ ମୋ ଉପରୁ ସବୁପ୍ରକାର ଦାୟିତ୍ୱ ପ୍ରତ୍ୟାହାର କରିନିଆଯାଇ କେବଳ କୁଜଙ୍ଗ ଅଞ୍ଚଳର ଜଟିଳ ସମସ୍ୟାଦୃଷ୍ଟେ ସେହିଠାରେ ଏକାଗ୍ରଭାବେ ଲାଗିପଡ଼ିବାକୁ ମୋତେ ସୂଚନା ଦିଆଗଲା । ସେହିଦିନୁଁ ମୁଁ ଏକ ବ୍ୟାପକ କ୍ଷେତ୍ରର ଦାୟିତ୍ୱରୁ ମୁକ୍ତିଲାଭକରି ସ୍ୱତନ୍ତ୍ର କୁଜଙ୍ଗ ସମସ୍ୟାମାନଙ୍କର ସମାଧାନ ଦିଗରେ ଏକାଗ୍ର ହେଲି ।

ପ୍ରତିକ୍ରିୟାଶୀଳ ଦଳମାନଙ୍କୁ ସଙ୍ଗରେ ଧରି ବର୍ଦ୍ଧମାନ ମହାରାଜାଙ୍କ କର୍ମଚାରୀମାନେ ଆକ୍ରମଣମୂଳକ ଅଭିଯାନ ଆରମ୍ଭ କରିଦେଲେ । 'ଚକଡା ଘେରି' ନାମରେ କନିକା ରାଜ୍ୟ ସୀମାରେ କୁଜଙ୍ଗ ଇଲାକାର ଗୋଟିଏ ଅଂଶ ଓ ସେଠାରେ 'ପାଣିଖିଆ' ନାମରେ ଗୋଟିଏ ମଛଦିଆରେ ମଙ୍ଗରାଜପୁରର ଜଗତମାନେ ମାଛ ଧରୁଥିଲେ । ସେ ଇଲାକା କେନ୍ଦ୍ରାପଡ଼ା ସବ୍‌ଡିଭିଜନର ମହାକାଳପଡା ପୁଲିସ ଷ୍ଟେସନ ଅନ୍ତର୍ଗତ । ମଙ୍ଗରାଜପୁରର ଜଗତମାନଙ୍କୁ ଗିରଫ କରାଯାଇ ସେମାନଙ୍କ ମଧ୍ୟରୁ ସନେଇ ତରେଇ, ଭାଗ ବେହେରା ପ୍ରମୁଖ ନେତୃସ୍ଥାନୀୟ ଲୋକମାନଙ୍କୁ ଜମିଦାର ଦଳକୁ ଆସିବା ସର୍ତ୍ତରେ ଖଲାସ କରିଦିଆଗଲା । ବରିହା ଗ୍ରାମର ବିହାରୀ ଉତ୍ତର ସିଂହ, ଭବାନୀପୁରର ଭଗବାନ ସାମଲ ଏହିପରି କାଁ ଭାଁ କିଏ କେଉଁଠି ଜମିଦାର ଦଳରେ ରହିଲେ । ଏହି କେତେଜଣଙ୍କ ବ୍ୟତୀତ ସମଗ୍ର ଜଗତ ଗ୍ରାମ ସଂଘବଦ୍ଧ ହୋଇ ଛିଡ଼ାହୋଇଗଲେ । ଏମାନଙ୍କ ମଧ୍ୟରେ ଯେଉଁମାନେ ନେତୃତ୍ୱ ପ୍ରଦାନକଲେ ସେମାନେ ଚିରସ୍ମରଣୀୟ ହୋଇ ରହିବାର ଯୋଗ୍ୟ । ତାଳଦଣ୍ଡାରୁ କଣ୍ଟୁରି ବେହେରା, କଣ୍ଟୁରି ପଣ୍ଡା; ଗୋଠଡିଆରୁ ରାମ ବେହେରା, ହରିପାଣି; ଗଣ୍ଡକିପୁରରୁ ପୁରୀ ପରିଡା, ରଘୁ ମାଝି, ଭବାନୀପୁରରୁ ବିଦେଇ ତରେଇ ଓ ପିପଲରୁ ଦୀନେଇ ମାଝୀମାନଙ୍କର ନାମ ଉଲ୍ଲେଖଯୋଗ୍ୟ । କ୍ଷତିପୂରଣ ମକଦ୍ଦମା ବ୍ୟତୀତ ଜଙ୍ଗଲରୁ କାଠ ଚୋରାଇ ନେଇଥିବା ଅପରାଧରେ ଗୋଟିଏ ଫଉଜଦାରୀ ମକଦ୍ଦମା ପୂର୍ବୋକ୍ତ ନେତୃସ୍ଥାନୀୟ ଲୋକମାନଙ୍କ ବିରୋଧରେ ଆରମ୍ଭ କରିଦିଆଗଲା । ଘମାଘୋଟ ଏ ମକଦ୍ଦମା ଲଢ଼ାଲଢ଼ି ଚାଲିଥାଏ ସତ, କିନ୍ତୁ ଜଙ୍ଗଲକୁ ନଗଲେ ଜାଳେଣି ଓ କିଳାକାଠ, ଜାଲରେ ରଙ୍ଗ ଦେବାପାଇଁ କସା ଛେଲି (ଗରଣ) ଓ ଅନ୍ୟାନ୍ୟ ଆବଶ୍ୟକୀୟ ଜିନିଷ ପାଇବେ କିପରି ? ଅନନ୍ୟୋପାୟ ହୋଇ ମୋତେ ଏହାର ଗୋଟିଏ ବାଟ କାଢ଼ିବାକୁ ଜିଦ୍

କରି ବସିଲେ । ମୁଁ ମଧ୍ୟ କୌଣସି ଉପାୟ ନପାଇ ଆଳିରାଜା ବ୍ରଜସୁନ୍ଦର ଦେବଙ୍କୁ ଧରିଲି । ତାଙ୍କ ପିତାମହୀ ଓ ମୋ ପିତାମହ ଉଭୟେ ସହୋଦର ଭାଇଭଉଣୀ ଥିବାରୁ, ହିସାବରେ ସେ ମୋର ଭାଇ ଥିଲେ ଏବଂ କେତେକ ଜଗତମାନଙ୍କ ମାମଲତକାରଙ୍କ ସମଭିବ୍ୟାହାରରେ ମୁଁ ତାଙ୍କୁ ସାକ୍ଷାତକଲି ଏବଂ ଉପକୂଳବର୍ତ୍ତୀ ଦେବୀ ନଦୀ ମୁହାଣରେ ଥିବା ତାଙ୍କ ମରିଚପୁର ଜମିଦାରୀର ଜଙ୍ଗଲରୁ କାଠ ନେବାକୁ ଗୋଟିଏ ଛାଡ଼ ଦେବା ପାଇଁ ଅନୁରୋଧକଲି । ଯଦିଓ ନଦୀପଥ କୁଜଙ୍ଗରୁ ମରିଚପୁର ଯାଏ ଅଛି ଏବଂ ଚେଷ୍ଟା କଲେ ମରିଚପୁର ଜଙ୍ଗଲରୁ ଆବଶ୍ୟକୀୟ ପଦାର୍ଥମାନ ଅନାୟାସରେ ଅଣାଯାଇ ପାରନ୍ତା, ତଥାପି ଛାଡ଼ ହସ୍ତଗତ ହେବା ମାତ୍ରେ ଜଗତମାନେ ଘୁଣାକ୍ଷରେ ମରିଚପୁର ଜଙ୍ଗଲକୁ ନଆସି ସେହି ଛାଡ଼ ବଳରେ କୁଜଙ୍ଗ ଜଙ୍ଗଲରୁ ରୀତିମତ କାଠ ଇତ୍ୟାଦି ଆହରଣ କରି କାମ ଚଳାଇଲେ ଏବଂ ଦୈବାତ୍ ଧରାପଡ଼ିଲେ ମରିଚପୁର ଛାଡ଼ ଦେଖାଇ ଜମିଦାର ପକ୍ଷର ସମସ୍ତ ଉଦ୍ୟମ ପଣ୍ଡ କରିବାକୁ ସକ୍ଷମ ହୋଇପାରିଲେ ।

କିନ୍ତୁ ଆଳି ରାଜାଙ୍କଠାରୁ ଏହି ଛାଡ଼ ଖଣ୍ଡି ହସ୍ତଗତ କରିବାକୁ ଗୋଟିଏ ଅଙ୍ଗୀକାରରେ ଜଗତମାନଙ୍କୁ ଆବଦ୍ଧ ହେବାକୁ ପଡ଼ିଲା । ତାହା ସେତେବେଳେ ଅବଶ୍ୟ ଆଳି ରାଜା ପ୍ରକାଶ କଲେନାହିଁ; କିନ୍ତୁ ଭବିଷ୍ୟତ୍‌ରେ ଆବଶ୍ୟକ ପଡ଼ିଲେ କିମ୍ବା ଜଗତମାନଙ୍କଦ୍ୱାରା ସାଧିତହୋଇପାରିବାଭଳି କୌଣସି ସମସ୍ୟା ଘଟିଲେ ଆଳିରାଜା ସମ୍ବାଦ ଦେବାମାତ୍ରେ ସେମାନେ ସଦଳବଳେ ଉପସ୍ଥିତ ହୋଇପାରିବେ, ଏହି ଅଙ୍ଗିକାରରେ ଜଗତମାନେ ଓ ମୁଁ ସମସ୍ତେ ଏକତ୍ରେ ଆବଦ୍ଧ ହୋଇରହିଲୁ । ଏ ଅଙ୍ଗୀକାର ଦଶରଥଙ୍କର କୈକେୟୀଙ୍କଠାରେ ଅଙ୍ଗୀକାର ପରି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣଭାବେ କରାଯାଇଥିଲା, ଯାହାରି କୁଫଳରେ ଦଶବର୍ଷ ପରେ ମୋତେ ଜଡ଼ିତ ହେବାକୁ ପଡ଼ିଥିଲା । ସ୍ଥାନାନ୍ତରରେ ତାର ବିଶଦ ବିବରଣୀ ଦିଆଯିବ ।

—

# ଉଦୟବଟ ଆନ୍ଦୋଳନ

କାଠଚୋରୀ ମକଦମାରେ ତଳ କୋର୍ଟର ଜଗତ ନେତାମାନେ ଦଣ୍ଡିତ ହେଲେ ଏବଂ ଜଜ୍‌କୋର୍ଟରେ ଖଲାସ ହୋଇଗଲେ । କୁଜଙ୍ଗ ଜଙ୍ଗଲରୁ ଆଳିରାଜାଙ୍କ ଛାଡ଼ ବଳରେ ନିରଙ୍କୁଶଭାବେ ଆବଶ୍ୟକମତେ କାଠ କାଟିବାର ପଥ ପରିଷ୍କାର ହୋଇ ଯିବାରୁ ଜଗତମାନଙ୍କ ସଂଗଠନ ଖୁବ୍ ଜୋରସୋରରେ ଆଗେଇଚାଲିଲା । ମାଲିମକଦମା ଇତ୍ୟାଦିର ପ୍ରତ୍ୟକ୍ଷ ତଦ୍‌ବିରରେ ମୁଁ ଲାଗିରହିଥିବା ଦେଖି ମୋତେ କିପରି କେଉଁଠି ଜଡାଇଦେବେ ଏହି ଅପେକ୍ଷାରେ କୁଜଙ୍ଗ କର୍ତ୍ତା ପ୍ରସ୍ତୁତହୋଇରହିଲେ । ପୂର୍ବୋକ୍ତ ସନନ୍ଦ କୁଜଙ୍ଗର ସବୁ ଜଗତମାନଙ୍କପାଇଁ ମିଳିଥିଲା । ଏହି ଜଗତମାନେ ପୁଣି ଦୁଇ ଶ୍ରେଣୀର– ଶିଉଳୀ ଓ ନିହାରୀ । ଶିଉଳୀମାନେ ନିରୋଳା ନାବିକ ଏବଂ ବିଖ୍ୟାତ କଳିଙ୍ଗ ନାବିକମାନଙ୍କର ପ୍ରତ୍ୟକ୍ଷ୍ୟ ବଂଶଧର । ସମୁଦ୍ରରେ ବୋଇତ ଚାଳନା କରିବାର ଯେଉଁ ସ୍ମୃତି ଓ କିଂବଦନ୍ତୀ ଅଛି ତାହା ଏହିମାନଙ୍କର ପୂର୍ବପୁରୁଷମାନେ ସାଧନ କରୁଥିଲେ । ତେଣୁ ସେମାନଙ୍କର ଜାତୀୟ ସନ୍ତକ 'ମଙ୍ଗଧରା' ଅଟେ । ବୋଇତ ଚାଳନାର ଗୌରବ ଲୁପ୍ତି ପରେ ସେମାନେ ମାଛଧରାକୁ ସେମାନଙ୍କର ମୁଖ୍ୟ ବ୍ୟବସାୟ ବୋଲି ଗ୍ରହଣ କରିବାକୁ ବାଧହୋଇଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଖଣ୍ଡାୟତ ଓ ଏହି କୈବର୍ତ୍ତମାନଙ୍କ ମଧ୍ୟରେ ସମାଜଗତ କୌଣସି ପ୍ରଭେଦ ନଥିଲା । ସ୍ଥଳଯୋଦ୍ଧାମାନଙ୍କୁ ପଦାତିକ ଓ ଖଣ୍ଡାୟତ ଯେପରି ଆଖ୍ୟା ଦିଆହୋଇଥିଲା, ଜଳଯୋଦ୍ଧାମାନଙ୍କୁ ସେହିପରି କୈବର୍ତ୍ତ ଆଖ୍ୟା ଦିଆହୋଇଥିଲା; କିନ୍ତୁ ଏମାନଙ୍କ ମୂଳସମାଜ ଏକ ଓ ଅଭିନ୍ନ ଥିଲା । ପଣ୍ଡିତଜୀଙ୍କ ଏହି ମତକୁ ଦୃଢ଼ଭାବରେ ପୋଷଣ କରେ ଏମାନଙ୍କ ପଦବୀ ବା ସଂଜ୍ଞା (Title) । ସ୍ୱାଇଁ, ରାଉତ, ମାଝି, ବେହେରା ଇତ୍ୟାଦି ସଂଜ୍ଞା ଠିକ୍ ଖଣ୍ଡାୟତମାନଙ୍କ ପରି ଏମାନଙ୍କ ମଧ୍ୟରେ ମଧ୍ୟ ବ୍ୟାପକଭାବେ ପ୍ରଚଳିତ ଅଛି । ଅନ୍ୟ ଶ୍ରେଣୀ ନିହାରୀମାନଙ୍କର ଠିକ୍ ସେହିପରି ମାଛ ଧରିବା ଓ ନୌସଞ୍ଚାଳନ କରିବା ବ୍ୟବସାୟ ହୋଇଥିଲେ ମଧ୍ୟ ଚୂଡ଼ାକୁଟିବା ଆଉ ଗୋଟିଏ ଅଧିକା ବ୍ୟବସାୟ । ସାରା ଓଡ଼ିଶାରେ ଏହି ନିହାରୀ ଶ୍ରେଣୀର କୈବର୍ତ୍ତ ଚାରିଆଡ଼େ ବ୍ୟାପି ରହିଛନ୍ତି । ଅନ୍ୟାନ୍ୟ ବ୍ୟବସାୟ ସେମାନଙ୍କଦ୍ୱାରା ଆୟତ୍ତ ହୋଇଥିଲେ ମଧ୍ୟ ମାଛଧରା ସେମାନଙ୍କର ମୌଳିକ ଓ ମୁଖ୍ୟ ବ୍ୟବସାୟ ବୋଲି ନିରୂପଣ କରାଯାଇପାରେ, ଯେହେତୁ 'ସଳିଙ୍ଗ' ବା ଜାଲବୁଣା କାଠି ସେମାନଙ୍କ ମୌଳିକ ସନ୍ତକ ଅଟେ । ସେ ଯାହାହେଉ ଉଭୟ ଶ୍ରେଣୀ ମଧ୍ୟରେ ଯେକୌଣସି

କାରଣରୁ ହେଉ ବହୁକାଳରୁ ମନୋମାଳିନ୍ୟ ଥିଲା । ସନନ୍ଦଭୁକ୍ତ ନଦୀମାନଙ୍କରେ ଉଭୟ ଶ୍ରେଣୀର ସମାନ ସ୍ୱତ୍ୱଥିବା ଦୃଷ୍ଟିରୁ ଉଭୟଙ୍କୁ ଏହି ସାଧାରଣ ଶତ୍ରୁ ବିରୋଧରେ ଏକ ହୋଇ ଛିଡ଼ାହେବାକୁ ମିଳାଇ ଦେବାର ସର୍ବୋତ୍ତମ ଚେଷ୍ଟା ମୋ ଆଡୁ କରାଯାଇଥିଲା । କୁଜଙ୍ଗର କୈବର୍ତ୍ତମାତ୍ରେ ବେଦବ୍ୟାସଙ୍କୁ ସେମାନଙ୍କର ଇଷ୍ଟଦେବ ବୋଲି ମାନନ୍ତି । ବେଦବ୍ୟାସଙ୍କର ମନ୍ଦିର ପାରାଦ୍ୱୀପରେ ପ୍ରଚ୍ଛନ୍ନ ଅଛି ଏବଂ ପରାଶର ଓ କୈବର୍ତ୍ତକନ୍ୟାଙ୍କ ଔରସରୁ ବେଦବ୍ୟାସଙ୍କର ଜନ୍ମ ବୋଲି କୈବର୍ତ୍ତମାନେ ତାଙ୍କୁ ଇଷ୍ଟ ବୋଲି ସ୍ୱୀକାର କରନ୍ତି । ବେଦବ୍ୟାସଙ୍କର ଜନ୍ମ ଏହି ପାରାଦ୍ୱୀପରେ ବୋଲି ତାଙ୍କର ଅନ୍ୟ ନାମ ଦ୍ୱୈପାୟନ ଥିବା ଏମାନଙ୍କ ମଧ୍ୟରେ ପୁରୁଷ ପରମ୍ପରାକ୍ରମେ କିଂବଦନ୍ତୀ କଥିତ ହୋଇ ଆସିଅଛି । ବିଶେଷତଃ ପରାଶର ଓ ବେଦବ୍ୟାସ ଦ୍ୱୈପାୟନଙ୍କର ଏହି ଦ୍ୱୀପରେ ଆଶ୍ରମ ଅଦ୍ୟାବଧି ପ୍ରତିଷ୍ଠିତ ଥିବାରୁ କୈବର୍ତ୍ତମାନେ ଏହାକୁ ସେମାନଙ୍କର ତୀର୍ଥସ୍ଥଳ ମନେକରିବା ସ୍ୱାଭାବିକ ମଧ୍ୟ । ସେ ଯାହାହେଉ, ଏହି ଉଭୟ ଶ୍ରେଣୀ ଜଗତମାନଙ୍କ ମଧ୍ୟରେ ମନୋମାଳିନ୍ୟର ଅବସାନପାଇଁ ଏବଂ ବର୍ତ୍ତମାନ ଆକ୍ରମଣକୁ ମିଳିତଭାବେ ପ୍ରତିରୋଧ କରିବାକୁ ମୁଁ ସମସ୍ତଙ୍କୁ ଡକାଇଥିଲି ଏବଂ ସେମାନଙ୍କର ବଛା ବଛା ପ୍ରତିନିଧିଶ୍ରେଣୀୟ ସମସ୍ତେ ପାରାଦ୍ୱୀପରେ ଏକତ୍ରିତହୋଇ ଅତୀତର ସମସ୍ତ ବିରୋଧଭାବ ଭୁଲିଯାଇଥିଲେ । ପାରାଦ୍ୱୀପ ସେମାନଙ୍କର ଗୋଟିଏ ତୀର୍ଥସ୍ଥଳ ଏବଂ ତୀର୍ଥରେ ବ୍ୟାସଦେବଙ୍କ ଛଡ଼ା ପରାଶର, ଯୋଜନଗନ୍ଧା, ଉଦୟବଟ ଇତ୍ୟାଦି ଦର୍ଶନୀୟ ପୀଠ ଅଛି ଏବଂ ମିଳନ ପରେ ସମସ୍ତେ ଏହିସବୁ ସ୍ଥାନକୁ ଦର୍ଶନ ଉଦ୍ଦେଶ୍ୟରେ ଯାଇଥିଲେ ।

ଓଡ଼ିଶାରେ ଉଦୟବଟ ଗୋଟିଏ ଶାସ୍ତ୍ର ଓ ପୁରାଣସମ୍ମତ ଧର୍ମପୀଠ । ପଞ୍ଚ ମହାପୁରୁଷ– ଜଗନ୍ନାଥ, ବଳରାମ, ଯଶୋବନ୍ତ, ଅନନ୍ତ ଓ ଅଚ୍ୟୁତ ଇତ୍ୟାଦି ଶାସ୍ତ୍ରକାରମାନେ ସେମାନଙ୍କ ଗ୍ରନ୍ଥରେ ଏହି ଉଦୟବଟ ବିଷୟରେ ଭୂରି ଭୂରି ଲେଖିଛନ୍ତି । ଯବନକୁଳତିଳକ ଭକ୍ତ ସାଲବେଗ ଉଦୟବଟ ବିଷୟରେ ବହୁ ଅଲୌକିକ ଅନୁଭୂତିର ସଙ୍କେତ ଦେଇଯାଇଛନ୍ତି ତାଙ୍କ 'ଚକଡାମଡା' ଗ୍ରନ୍ଥରେ । ସର୍ବଶେଷରେ କୁଜଙ୍ଗର ବୀରପୁତ୍ର ରାଜୀବଲୋଚନ ଦାସ ଏହି ଉଦୟବଟରେ ସାଧନା କରି ସିଦ୍ଧିଲାଭ କରିଥିଲେ । ବହୁଶିଷ୍ୟ ତାଙ୍କଦ୍ୱାରା ଦୀକ୍ଷିତ ହେଲା ପରେ ଏହି ଗୁରୁପୀଠକୁ ସେମାନଙ୍କ ଅବଦାନଦ୍ୱାରା ସୁମଣ୍ଡିତ ଓ ସୁଦୃଶ୍ୟପୂର୍ଣ୍ଣ କରିପାରିଥିଲେ । ଆଗରୁ ବର୍ଣ୍ଣିତ ଅଛି, ଏହି ସିଦ୍ଧପୁରୁଷଙ୍କ ଲୋକପ୍ରିୟତା ଏପରି ଆଶାତୀତଭାବେ ବଢ଼ିଗଲା ଯେ ବର୍ତ୍ତମାନ କର୍ମଚାରୀମାନେ ପ୍ରମାଦଗଣିଲେ ଏବଂ ଛଳେ-ବଳେ-କୌଶଳେ ତାଙ୍କୁ ନାନା ମିଥ୍ୟା ମକଦମାରେ ଜଡ଼ିତକରି ନଜରବନ୍ଦି ହୋଇ କଟକରେ ରହିବାର ଆଦେଶ କରାଇ ପାରିଲେ । ଫଳରେ ଉଦୟବଟକୁ ଶିଷ୍ୟ ଓ ଭକ୍ତମାନଙ୍କ ସମାଗମ ବନ୍ଦହୋଇଗଲା

ଏବଂ ଜମିଦାର ପକ୍ଷ ଏହି ସୁସଜ୍ଜିତ ପୀଠଟିକୁ ଦଖଲକରି ବ୍ୟବହାରୀୟ ସମସ୍ତ ସାମଗ୍ରୀ ଲୁଣ୍ଠନକରି ନେଇଯିବା ପରେ ଉକ୍ତସ୍ଥାନକୁ ଜଗିବାପାଇଁ କଡ଼ା ପ୍ରହରୀର ବ୍ୟବସ୍ଥା ଖଞ୍ଜିଦେଲେ । ରାଜୀବଲୋଚନ ଦାସ ତାଙ୍କ ତିରୋଧାନ ପରେ ତାଙ୍କ ଶବକୁ ଏହି ଉଦୟବଟରେ ସମାଧି ଦେବାପାଇଁ ଶିଷ୍ୟମାନଙ୍କୁ ଉପଦେଶ ଦେଇଯାଇଥିଲେ ଏବଂ ୧୯୨୪ ମସିହାରେ ତ୍ରିଲୋଚନପୁର ଭିତର ଜେନଟୁଙ୍ଗିରେ ତାଙ୍କ ଦେହତ୍ୟାଗ ହେବାରୁ, ଭାଇଗ ବିଶ୍ୱାଳ ପ୍ରମୁଖ ଶିଷ୍ୟମାନେ ଜମିଦାର କର୍ମଚାରୀମାନଙ୍କ ନିକଟରେ ତାଙ୍କର ଉଦୟବଟରେ ସମାଧି ଦେବାର ଶେଷଇଚ୍ଛା ଥିବା ଜଣାଇଲେ । ତେଣୁ ପ୍ରଧାନ କର୍ମଚାରୀ କୃପାସିନ୍ଧୁ ପରିଜା, ପେସ୍କାର ଗୋଟିଏ ହୁକୁମନାମାଦ୍ୱାରା ଏହି ଶବକୁ ଉଦୟବଟରେ ସମାଧି ଦେବାକୁ ନିର୍ଦ୍ଦେଶ ଦେବାରୁ ଶିଷ୍ୟମାନେ ମହାଉତ୍ସାହରେ ତାହା ସାଧନ ଓ କାର୍ଯ୍ୟକାରୀ କରିଥିଲେ । ଉଦୟବଟରେ ଯଥାସମୟରେ ସାଡମ୍ବରେ ଶବ ସମାଧି ଦିଆଗଲା ଏବଂ ସେଠାରେ ନିୟମିତ ସନ୍ଧ୍ୟା, ଆରତି, ଭୋଗରାଗର ବ୍ୟବସ୍ଥା କରିବାକୁ ଶିଷ୍ୟମାନଙ୍କ ପକ୍ଷରୁ ଆୟୋଜନ କରାଗଲା । ପୁଣି ଶିଷ୍ୟ ଓ ସାଧକମାନଙ୍କର ସମାଗମ ଆରମ୍ଭହେଲା ଏବଂ ବର୍ଦ୍ଧମାନ ମହାରାଜାଙ୍କ ପ୍ରତିନିଧି ମେନେଜରଙ୍କ କାନରେ ଏ ସମ୍ବାଦ ପହଞ୍ଚିବା ମାତ୍ରେ, ସେ ପୁଣି ଲୋକ ପଠାଇ ସମାଗତ ଭକ୍ତମାନଙ୍କୁ ନିସ୍ତୁକ ମାଡ଼ଚଢ଼ାଇ ସାମାନ୍ୟଭାବେ ନିର୍ମିତ ହୋଇଥିବା ଟୁଙ୍ଗି ପ୍ରଭୃତି ଆଶ୍ରୟ ସ୍ଥାନକୁ ଭାଙ୍ଗିଦେଲେ । କେବଳ ବାବାଜୀଙ୍କ ସମାଧିଟି ଭୂମିତଳେ ଅକ୍ଷତହୋଇ ରହିଲା । ମିଳନ ପରେ ଦର୍ଶନାକାଂକ୍ଷୀ ଜଗତମାନେ ମୋତେ ସାଙ୍ଗରେ ନେଇ ଅନ୍ୟାନ୍ୟ ତୀର୍ଥସ୍ଥାନ ପ୍ରଦକ୍ଷିଣ ପରେ ଉଦୟବଟରେ ପହଞ୍ଚିଲେ ଏବଂ ତତ୍ରସ୍ଥ ବାବାଜୀଙ୍କ କୃତ ଟୁଙ୍ଗୀ, ସମାଧି ପାବଚ୍ଛ ଇତ୍ୟାଦି ଦର୍ଶନୀୟ ବିଷୟଗୁଡ଼ିକ ଦେଖି ଫେରିଆସିଲେ । ସେମାନଙ୍କ ମନରେ କୌଣସି ବିପ୍ଳବାତ୍ମକ ପ୍ରତିକ୍ରିୟା ନଥିଲା । ଶାନ୍ତି ଶୃଙ୍ଖଳାର ସହିତ ସେମାନେ ଫେରିଆସିଲେ । କିନ୍ତୁ ଏକଥା ମେନେଜରଙ୍କ କାନରେ ପଡିବା ମାତ୍ରେ ସେ ବାଣବିଦ୍ଧ ବ୍ୟାଘ୍ର ପରି ଗର୍ଜିଉଠିଲେ ଏବଂ ମୁଁ ଓ ଅନ୍ୟାନ୍ୟ ଜଗତଙ୍କ ନାମରେ ଫଉଜଦାରୀ ମକଦମା ଆରମ୍ଭ କରିଦେଲେ ।

ପାରାଦ୍ୱୀପରେ ସେତେବେଳେ କୁଜଙ୍ଗର ଶେଷରାଜା ଜଗଦୀଶ କ୍ଷଣ୍ଡ ନରେନ୍ଦ୍ରବାହାଦୂରଙ୍କର କେତେବର୍ଷପୂର୍ବେ ପରଲୋକ ହୋଇଥିଲା । ବିଧବାରାଣୀ ଭାବବତୀ ପାଟମହାଦେବୀ ଦୁଇଟି କନ୍ୟା ଘେନି ପାରାଦ୍ୱୀପ ଦୁର୍ଗରେ ଅବସ୍ଥାନ କରୁଥିଲେ । ସେମାନଙ୍କ ରାଜ୍ୟ ଚାଲିଯିବା ପରେ ସେମାନଙ୍କ ଆର୍ଥିକ ଅବସ୍ଥା ଖୁବ୍ ଖରାପ ଥିଲା । କୁଜଙ୍ଗ ବାହାରେ ଥିବା ଦେବୋତ୍ତରର ସାମାନ୍ୟ ଆୟରୁ ଠାକୁରମାନଙ୍କୁ ଚଳାଇ ନିଜେ ଚଳୁଥିଲେ । ଯଦିଓ ଗୋଟିଏ ଶତାବ୍ଦୀ ବିଚ୍ଛେଦରେ ଦୁଇଟି ବଂଶ ମଧ୍ୟରେ ସମସ୍ତ ବ୍ୟାବହାରିକ ବା ପାରିବାରିକ ସମ୍ପର୍କ ତୁଟିଯାଇଥିଲା ତଥାପି

କୌତୂହଳାକ୍ରାନ୍ତ ହୋଇ ମୁଁ ସେମାନଙ୍କ ଦୁରବସ୍ଥା ସ୍ୱଚକ୍ଷୁରେ ଦେଖିଆସିଲି । ସେମାନଙ୍କ ଋଣ, ନିଃସହାୟ ଅବସ୍ଥା, ବିବାହୋପଯୁକ୍ତା କନ୍ୟା, ଭଗ୍ନ ମନ୍ଦିର ଇତ୍ୟାଦି ଯାବତୀୟ ବିଷୟ ବୁଝି ଓ ମନେ ମନେ ଯଥାସାଧ୍ୟ ସାହାଯ୍ୟ କରିବାକୁ ସଂକଳ୍ପ କଲି । ମୋର ସହାନୁଭୂତିସୂଚକ ଆଶ୍ୱାସନା ସଦ୍ୟ ବିଧବା ରାଣୀଙ୍କର ଏକ ପ୍ରଧାନ ଭରସାସ୍ଥଳ ହୋଇଗଲା ଏବଂ ଅସହଯୋଗ ଆନ୍ଦୋଳନରେ ସେ ମଧ୍ୟ ବ୍ରତୀ ହେବାକୁ ଟିକିଏ ହେଲେ ଦ୍ୱିଧା ବୋଧ କଲେନାହିଁ । ସେ ମୋ ସାଙ୍ଗରେ ଆଲୋଚନା ପରେ ସବୁପ୍ରକାର ପ୍ରଗତିପାଇଁ ପ୍ରସ୍ତୁତ ହୋଇଯିବା ଦେଖି ମୁଁ ମନେ ମନେ ସାର୍ଥକତା ଅନୁଭବ କଲି ।

—

# ବୈଧାନିକ ସଂଘର୍ଷ

ଉଭୟଶ୍ରେଣୀ କୈବର୍ତ୍ତଙ୍କ ମଧ୍ୟରେ ମନୋମାଳିନ୍ୟ ମେଣ୍ଟିଯାଇ କୁଜଙ୍ଗ ନଦୀ ସମ୍ପର୍କୀୟ ସନନ୍ଦ ବିଷୟରେ ଆଗତ ହୋଇଥିବା ମକଦମା ଲଢ଼ିବାକୁ ଏକ ମିଳନ ଘଟିଲା । ତାହା ଦେଖି ବର୍ଦ୍ଧମାନ ପକ୍ଷରୁ ଅବଶ୍ୟ ପ୍ରମାଦ ଗଣିବାର କଥା । ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ମିଳିତ କୈବର୍ତ୍ତ ପ୍ରତିନିଧିମାନେ ଉଦୟବଟ ଯାଇ ମହାରାଜାଙ୍କ ସୁରକ୍ଷିତ ଉଦ୍ୟାନରେ ଅନଧିକାର ପ୍ରବେଶ କରିଥିବାରୁ ମୋ ସମେତ କୈବର୍ତ୍ତ ପ୍ରତିନିଧିମାନଙ୍କ ନାମରେ ପେନାଲ କୋର୍ଡ଼ ୧୪୭ ଦଫାର ଫଉଜଦାରୀ ମକଦମା ଆଗତ କରାଗଲା । କଲେକ୍ଟର ପେକ୍ ସାହେବ ବର୍ଦ୍ଧମାନ ସବ୍‌ମେନେଜରଙ୍କ ହାତରେ ଖେଳନା ପରି କାର୍ଯ୍ୟ କରୁଥିବାରୁ ଏହି ମକଦମାଟି ସରକାର ପକ୍ଷରୁ ଦାଏର କରିବାକୁ ବିଳମ୍ବ ଘଟିଲାନାହିଁ । ଫଳରେ ଆମେ ସମସ୍ତେ ଅତର୍କିତଭାବେ ଗିରଫ ହେଲୁଁ । ଏହା ଏପରି ଅସଂଯତଭାବେ କରାଯାଇଥିଲା ଯେ ବହୁଦିନ ଲାଗିଲା ମକଦମାର ବିବରଣ, ଅଭିଯୋଗର କାରଣ ବୁଝିବାକୁ ।

କ୍ରମାନ୍ୱୟେ ମକଦମା ତଦନ୍ତ କରିବାକୁ ଇନ୍ସପେକ୍ଟର ଓ ସହକାରୀ ପୁଲିସ ସାହେବ ଦାମୋଦର ରଥ ଚାଲିଲେ । ଦାମୋଦର ରଥ ସରଜମିନ୍ ତଦନ୍ତ କରିବାକୁ ଉଦୟବଟକୁ ଗସ୍ତ କରିବା ପ୍ରୋଗ୍ରାମ ସ୍ଥିର ହେଲା । ଆଗରୁ କୁହାଯାଇଛି ଉଦୟବଟରେ ବାବାଜୀ ରାଜୀବଲୋଚନ ଦାସଙ୍କ କଳେବରକୁ ସମାଧି ଦିଆଯାଇଥିଲା । କାଳେ ଆମ୍ଭେମାନେ ଗୁରୁଙ୍କ ସମାଧି ସ୍ଥାନକୁ ଯିବାର ଅଧିକାର ଅଛି ବୋଲି କହି ଅଭିଯୋଗକୁ ବିରୋଧ କରିବୁ ଏହି ଆଶଙ୍କାରେ ମେନେଜରଙ୍କ ପକ୍ଷରୁ ଏହା ମଧ୍ୟରେ ଗୋଟିଏ ଜଘନ୍ୟକାର୍ଯ୍ୟ ସମାପନ କରାଯାଇସାରିଥାଏ । ଦୁଇ ତିନିଦିନ ଆଗରୁ ଶ୍ରୀପଞ୍ଚମୀ ପର୍ବ ଉପଲକ୍ଷେ ପାରାଦ୍ୱୀପରେ ଯାତ୍ରା ହେଉଥିଲା । ସମସ୍ତେ ସେଥିରେ ବିଭୋର ଥିବାର ସୁଯୋଗ ନେଇ କେତେଜଣ ମେହେନ୍ତର, କେତେଜଣ ବିଶ୍ୱସ୍ତ ଚପରାସୀ, ଚପରାସୀମାନଙ୍କ କର୍ତ୍ତା ନାଜର ନେତୃତ୍ୱରେ ଏହି ଅସଭ୍ୟ ଅଭିଯାନ ଚାଲିଲା । ରାତ୍ରି ଦ୍ୱିତୀୟ ପ୍ରହରର ଘନ ଅନ୍ଧକାରରେ ଉଦୟବଟରେ ଥିବା ବାବାଜୀଙ୍କ ସମାଧି ତାଡ଼ି ଏକ ଅଗଭୀର କୁଆରିଆ ନଦୀରେ ଫିଙ୍ଗିଦିଆଗଲା ।

ପରଦିନ ଯଥାରୀତି ସହକାରୀ ପୁଲିସ ସାହେବଙ୍କ ନେତୃତ୍ୱରେ ତଦନ୍ତ ଚାଲିଲା । ଆସାମୀମାନେ ଚିହ୍ନଟ ହେବାପାଇଁ ଆମ ପକ୍ଷରୁ ଦାବି ହେଲା । କିନ୍ତୁ ଯେଉଁ ଉଦ୍ୟାନ ପ୍ରହରୀ ମକଦମାର ଏତଲା ଦେଇଥିଲା, ଆସାମୀମାନଙ୍କ ପରେଡ଼ ହେଲାବେଳେ

ସେ ଗୋଟିଏ ଦୁଇଟି ଲୋକଙ୍କ ବ୍ୟତୀତ କାହାକୁ ଚିହ୍ନିପାରିଲାନାହିଁ । ଆସାମୀ ପରେଡ଼ ବେଳେ ଆମେ ଆଉ କେତେଜଣ ଲୋକ ଠିଆକରାଇଥିଲୁଁ । ମୁଦେଇ ଭଜନୀ ମଳିକ ଆସାମୀମାନେ ବଳପୂର୍ବକ ବାରଣ ନମାନି ରକ୍ଷିତ ଉଦ୍ୟାନରେ ପ୍ରବେଶ କରିଥିବାର ଏତଲା ଦେଇଥିବାରୁ ପ୍ରତ୍ୟେକ ଆସାମୀକୁ ପରିଷ୍କାର ଚିହ୍ନିଥିବା ଆବଶ୍ୟକ । କିନ୍ତୁ ଚିହ୍ନଟ ପରେଡ଼ରେ ରାମ ବେହେରା କିଏ ପଚାରିବା ବେଳକୁ ବିଦେଇ ତରେଇଙ୍କୁ ଏବଂ ଦୀନେଇ ମାଝିଙ୍କୁ ଚିହ୍ନାଇବାକୁ ଯାଇ କଣ୍ଟୁରି ପଣ୍ଡାଙ୍କୁ ଚିହ୍ନାଇଥିଲେ । କେବଳ ମୋତେ ଓ ଆଉ ଜଣକ ବ୍ୟତୀତ କାହାକୁ ଠିକ୍ ଚିହ୍ନିପାରିଲେନାହିଁ । ସେଠାରେ ଅନେକ ଲୋକଙ୍କର ତଦନ୍ତ ଦେଖିବାକୁ ସମାଗମ ହୋଇଥିଲା । ମୁଦେଇଙ୍କର ଏତାଦୃଶ ଅଜ୍ଞତା ଦେଖି ସମସ୍ତେ ହୋ ହୋ ହୋଇ ହସିଉଠିଲେ । ଅବଶ୍ୟ ପୁଲିସ ସାହେବ ବଡ଼ ଅପ୍ରତିଭ ହୋଇଯାଉଥାନ୍ତି ସତ; କିନ୍ତୁ ତାଙ୍କର କିଛି ଚାରା ନଥିଲା । କଲେକ୍ଟର ପେକ୍ ସାହେବଙ୍କ ସମର୍ଥନ ଥିଲା ମୁଦେଇଙ୍କ ପକ୍ଷରେ । ଘମାଘୋଟ ମକଦମା ଚାଲିଲା । ବୀରବାବୁ (ସ୍ୱର୍ଗୀୟ ଚିଫ୍‌ଜଷ୍ଟିସ୍), ଶ୍ରୀ ବାଞ୍ଛାନିଧି ମହାପାତ୍ର (ପରେ ଆଡ଼ଭୋକେଟ୍ ଜେନେରାଲ), ଶ୍ରୀ ବିଚିତ୍ରାନନ୍ଦ ମହାନ୍ତି ପ୍ରମୁଖ ଆମ୍ଭମାନଙ୍କ ପକ୍ଷରୁ ଏବଂ ଜାନକୀ ବାବୁ (ସୁବାସ ବୋଷଙ୍କ ପିତା), ରେବତୀବାବୁ, ଶୁକବାବୁ ମୁକ୍ତାର ପ୍ରମୁଖ ବର୍ଦ୍ଧମାନଙ୍କ ଖର୍ଚ୍ଚରେ ସରକାରୀ ପକ୍ଷରୁ ଯୋଗଦେଇଥିଲେ । ବିଚାରକ ଥିଲେ ଡେପୁଟି କଲେକ୍ଟର ରାୟବାହାଦୁର ବୈଦ୍ୟନାଥ ମିଶ୍ର । ବିଚାରରେ ଆମ୍ଭମାନଙ୍କ ଦୋଷ ସାବ୍ୟସ୍ତ ହେଲା ଏବଂ ପ୍ରତ୍ୟେକଙ୍କୁ ୫୧ଟଙ୍କା ଜୋରିମାନା କିମ୍ବା ୬ ମାସ ସଶ୍ରମ କାରାଦଣ୍ଡ ଆଦେଶ ହେଲା । କେବଳ ମୋତେ ୧୦୦ଟଙ୍କା ଜୋରିମାନା ହୋଇଥିଲା । ଅପିଲରେ ମୋରିଡିର୍ ସାହେବ ଜଜ୍‌ଙ୍କ ରାୟରେ ଆମ୍ଭେମାନେ ଖଲାସ ହୋଇଗଲୁ ସତ, ତଥାପି ପେକ୍ ସାହେବ କଲେକ୍ଟରଙ୍କ ତଦ୍‌ବିରରେ ପୁଣି ସରକାରୀ ପକ୍ଷରୁ ହାଇକୋର୍ଟରେ ଅପିଲ କରାଗଲା ।

ଏପରି ସବୁ ସରକାରୀ ଅପିଲ ହାଇକୋର୍ଟ ଗ୍ରହଣ କରିବା ଆଗରୁ ଆଡଭୋକେଟ୍ ଜେନେରାଲଙ୍କ ସମର୍ଥନ ଥିବା ଦରକାର । ତେଣୁ ଆଡଭୋକେଟ୍ ଜେନେରାଲଙ୍କ ଜୁନିୟରମାନଙ୍କୁ ଧରି ତାହା କରାଇନେବାପାଇଁ ବର୍ଦ୍ଧମାନଙ୍କ ସବ୍‌ମେନେଜର ଓ ଶୁକବାବୁ ମୁକ୍ତାର ପାଟନା ପର୍ଯ୍ୟନ୍ତ ଦଉଡ଼ିଲେ । ମୁଁ ଏ ଖବର ପାଇ ପାଟନା ଦଉଡ଼ିଲି ଏବଂ ତେତେବେଳେ ଆଡ୍‌ଭୋକେଟ୍ ଜେନେରାଲ କାଉନ୍‌ସିଲର ଜଣେ ଧରାବନ୍ଧା ମେମ୍ବର ଥିବାରୁ ଏବଂ ମୁଁ ମଧ୍ୟ ଜଣେ କାଉନସିଲର୍ ମେମ୍ବର ଥିବାରୁ ଯଦିଓ ପାଟନା ହାଇକୋର୍ଟର ଆଡ୍‌ଭୋକେଟ୍ ଜେନେରାଲ ସୁଲତାନ ଅହମଦ୍‌ଙ୍କ ସହିତ ମୋର ପ୍ରତ୍ୟକ୍ଷ ପରିଚୟ ନଥିଲା, ତଥାପି ମୋର ପରିଚୟ ପାଇବା ମାତ୍ରେ, ସେ ଉପର ମହଲାରୁ ଦଉଡ଼ିଆସିଲେ ଏବଂ ଯଥୋପଯୁକ୍ତ ଅଭ୍ୟର୍ଥନା କରି ମୋତେ ତାଙ୍କ କୋଠରିକୁ

ଘେନିଗଲେ । ତାଙ୍କ ଘରର ମାର୍ବଲଖଚିତ ବହୁ ସାଜସଜ୍ଜା ଦେଖି ମୁଁ ବାସ୍ତବିକ ଆଶ୍ଚର୍ଯ୍ୟ ଓ ଅଭିଭୂତ ହୋଇପଡ଼ିଥିଲି । ତତୋଧିକ ଆଶ୍ଚର୍ଯ୍ୟ ହେଲି ଏହି ବିଶାଳ ଐଶ୍ୱର୍ଯ୍ୟର ଅଧିକାରୀ ସୁଲତାନ୍ ଅହମଦଙ୍କ ଅତିଭଦ୍ରୋଚିତ କୋମଳ ସ୍ୱଭାବ ଦେଖି । କୃଷ୍ଟି ବା କଲଚର୍ ନାମ ଶୁଣାଯାଏ ସତ; କିନ୍ତୁ ସେଦିନ ମୋ ଜୀବନରେ ଏଠାରେ ଜଣେ ଲୋକ ଦେଖିବା ପ୍ରଥମ ଘଟିଲା; ଯାହାଙ୍କୁ ଦେଖି ବାସ୍ତବ କୃଷ୍ଟି କ'ଣ ଧାରଣା କରିପାରିଲି ।

ମୁଁ ମୋ ଦୁଃଖ ବୁଝାଇବାକୁ ଏତେ ସୁବିଧା ପାଇବି ଆଶାକରିନଥିଲି । ତେଣୁ ସବୁକଥା ବୁଝାଇବାକୁ ଚେଷ୍ଟା ଆରମ୍ଭକଲି; କିନ୍ତୁ ଏ କଣ— ମୋ ମନ କଥା ଆରମ୍ଭ କରୁ ନ କରୁଣୁ ସେ ବୁଝିଯାଇ ନିଜେ କହିଦେଉଥିଲେ । କି ତୀକ୍ଷ୍ଣ ପ୍ରତିଭା ! ସେହିଠାରେ ବସି ନଥି ମଗାଇଆଣିଲେ । ଦେଖିଲେ ଯୁନିୟରମାନେ ଅପିଲ ଗୃହୀତ ହେବାପାଇଁ ସୁପାରିସ୍ କରିସାରିଛନ୍ତି, କେବଳ ଆଡଭୋକେଟ୍ ଜେନେରାଲଙ୍କ ସ୍ୱାକ୍ଷରପାଇଁ ବାକି ଅଛି । ସଙ୍ଗେ ସଙ୍ଗେ ନାଲିରଙ୍ଗରେ ଗାରଟିଏ ପକାଇ କାଟିଦେଲେ ଏବଂ ନିଜର ଅମତ ପ୍ରକାଶକରି ଦୁଇ-ଚାରିଧାଡ଼ି ଲେଖି ମୋ ଆଡ଼କୁ ଫାଇଲକୁ ଦେଖିବାକୁ ପକାଇଦେଲେ । ମୁଁ ଦେଖିଲି ସେହି ଦୁଇ-ଚାରିଧାଡ଼ିରେ ମୋ ମନର ସମସ୍ତ କଥା ସନ୍ନିବେଶିତ ହୋଇଯାଇଛି । କୃତଜ୍ଞତାରେ ମୁଁ ଅଧୀର ହୋଇପଡ଼ିଲି । ସଙ୍ଗେ ସଙ୍ଗେ ମୋତେ ସାଙ୍ଗରେ ନେଇ ଆଉ ଗୋଟିଏ ପ୍ରକୋଷ୍ଠକୁ ଗଲେ । ସେଠାରେ ଉଭୟଙ୍କ ପାଇଁ ନାନାବିଧ ଖାଦ୍ୟସାମଗ୍ରୀ ପୃଥକ ଟେବୁଲରେ ରଖାଯାଇଛି । ପାଖରେ ଆଉ ଗୋଟିଏ ବଡ଼ ଟେବୁଲରେ ଦୁଇଜଣଙ୍କପାଇଁ ପୃଥକ ପୃଥକ ଖାଦ୍ୟସବୁ ରଖାହୋଇଛି । ମୁଁ ସିଧା ବଡ ଟେବୁଲରେ ବସିବା ମାତ୍ରେ ଅହମଦ୍ ସାହେବ କହିପକାଇଲେ— ମୁଁ ଭାବିଥିଲି ଆପଣ ଟିକିଏ Orthodox ବୋଲି, ମୁସଲମାନ ସାଙ୍ଗରେ ଖାଇବାକୁ ଆପତ୍ତି ଥାଇପାରେ ।'' ମୁଁ ସଙ୍ଗେ ସଙ୍ଗେ କହିପକାଇଲି, ''ଆପଣ ଯେକୌଣସି ହିନ୍ଦୁଠାରୁ ବଡ଼ ହିନ୍ଦୁ । ହୃଦୟବତ୍ତାହିଁ ହିନ୍ଦୁର ବିଶେଷତ୍ୱ ।''

ଖାଇବାବେଳେ ମୁଁ ତାଙ୍କୁ ନଜଣାଇ ରହିପାରିଲିନାହିଁ ଯେ, ସେଦିନ ହେଉଛି ମୋର ଚତୁର୍ଥଦିନ ନିର୍ଜଳା ଉପବାସ, କାରଣ ଜୀବନରେ ଏହିପରି ଗୁରୁତର ସମସ୍ୟା ଘଟିଲେ ମୁଁ ସାଧାରଣତଃ ଏହିପରି ଉପବାସ କରେ । ମହାତ୍ମାଜୀଙ୍କ ଅନଶନ ଗୋଟିଏ ନୀତିମୂଳକ ଅସ୍ତ୍ର ଏବଂ ନୈତିକ ଅସ୍ତ୍ରଭାବେ ତାହା ସେ ବ୍ୟବହାର କରନ୍ତି । ଆମ୍ଭମାନଙ୍କ କ୍ଷୁଦ୍ରପରିସର ମଧ୍ୟରେ ତାହାର ଉପଯୋଗିତା ଯେ ଅମୂଲ୍ୟ, ତାହା ଯେ ସାମାନ୍ୟ ଅନୁଶୀଳନର ସୁବିଧା ପାଇଛି, ସେ ବୁଝିଛି ।

ସେ ପ୍ରକାଶ କଲେ, ''ସେଥିପାଇଁ ଆପଣ ଯାହା କହିଗଲେ ମୁଁ ତାହା ସହଜରେ ବୁଝିଗଲି ଏବଂ ଅବିଶ୍ୱାସର ପ୍ରଶ୍ନ ଉଠିଲାନାହିଁ । ହୁଏତ ଆପଣଙ୍କ ନୈତିକବଳ ମୋ ଉପରେ କାମ କରୁଥିଲା ।''

କେତେଦିନ ପରେ ଆମ ଆଡ୍‌ଭୋକେଟ୍ ଶ୍ରୀ ଗଜେନ୍ଦ୍ରବାବୁ ଟେଲିଗ୍ରାମ୍ କଲେ ଯେ ଅନ୍ୟପକ୍ଷ ତଥାପି ତଦ୍‌ବୀରରେ ଅଛନ୍ତି । କାରଣ ବୈଦ୍ୟନାଥବାବୁଙ୍କ ରାୟଟା ବାହେଲ୍ ହେବାପାଇଁ ସାନଭାଇ ପୀତାମ୍ବରବାବୁ (ପରେ ଓଡ଼ିଶା ହାଇକୋର୍ଟ ଜଷ୍ଟିସ୍) ତଦ୍‌ବିରର ନେତୃତ୍ୱ ନେଇଥିଲେ । ଏ ନିଷ୍ଫଳତା ବର୍ଦ୍ଧମାନ ପକ୍ଷରେ ଏକ ମାରାତ୍ମକ ପ୍ରଭାବ ଘଟାଇଲା ।

ତେତେବେଳକୁ ଆଉ ଗୋଟିଏ ସାଂଘାତିକ ମକଦମାର ସୂତ୍ରପାତ ହୋଇ ସାରିଥାଏ– ସମାଧି ତଡ଼ା ମକଦମା । ଏହା ଆମ ପକ୍ଷରୁ ଆକ୍ରମଣାତ୍ମକ । ବାବାଜୀ ଦାମ ଦାସ, ରାଜୀବ ବାବାଜୀଙ୍କ ଶିଷ୍ୟ, ମୁଦେଇ ହୋଇ ଏତଲା ଦେଇଥାନ୍ତି ଯେ ଗୁରୁଙ୍କ ସମାଧି ସବ୍‌ମେନେଜରଙ୍କ ପ୍ରରୋଚନାରେ ଯଦୁ ଗୋଛାୟତ ଓ ସପନୀ ଗୋଛାୟତ ମେହେନ୍ତରମାନେ, ଚପରାସୀ ଓ ନାଜର ଆଦେଶରେ ତାଡ଼ିପକାଇଛନ୍ତି । ଯଦୁ ଗୋଛାୟତ ବାବାଜୀଙ୍କ ଶିଷ୍ୟଥିଲେ । ସେ ଏହି ଅକୃତ୍ୟ କରିସାରିବା ପରେ ପାପର ପ୍ରାୟଶ୍ଚିତ୍ତ ଖୋଜି ବ୍ୟାକୁଳ ହୋଇଉଠିଲେ । ଆମ୍ଭମାନଙ୍କ କାନକୁ ଯିବାରୁ ପରସ୍ପର ପ୍ରତିଶୋଧ ନେବାପାଇଁ ଉଦ୍‌ଗ୍ରୀବ ଥିବାରୁ ଜଗତମାନେ ଏ ମକଦମାର ନେତୃତ୍ୱ ଗ୍ରହଣକଲେ ଓ ମୁଁ ପ୍ରତ୍ୟକ୍ଷ ଦାୟିତ୍ୱରେ ରହିଲି । ଏପରି ଗୋଟିଏ ଏତଲା ନେବାକୁ ସ୍ଥାନୀୟ ପୁଲିସ ଅଫିସର ଇତସ୍ତତଃ ହେବାର କଥା । କିନ୍ତୁ ଲୋକଙ୍କୁ ବଶ କରିବାରେ ପଟୁ ଜଗତମାନେ କୁଜଙ୍ଗ ସବ୍‌ମେନେଜର ରାୟବାହାଦୂର ରାଜେନ୍ଦ୍ର କୁମାର ସେନ୍‌ଙ୍କୁ ପ୍ରଥମ ମୁଦାଲା କରି ଏତଲା ଦବାନବା କରାଇପାରିଲେ । ତଦନ୍ତ ହେଲା, ଯଦୁ ଗୋଛାୟତ ଆନୁପୂର୍ବିକ ସବୁ କହିଗଲେ । ଜୁଆରିଆ ନଦୀରେ ଜୁଆର ଛାଡ଼ିଲାବେଳେ ଦେଖାଗଲା ସମାଧି ଘେନିଥିବା ମାଟି ନନ୍ଦିଆର ସମସ୍ତ ଖପରା, ସମାଧିସ୍ଥ ଗୁରୁଙ୍କର ପ୍ରତ୍ୟେକ ଖଣ୍ଡି ଅସ୍ଥି ଓ ସମାଧି ସମୟରେ ଭକ୍ତ ଗୋଟିଏ ଟଙ୍କା ପକାଇ ଥିଲା, ସେ ଟଙ୍କାଟି ମଧ ଖପରାରେ ଆଶ୍ଚର୍ଯ୍ୟଜନକଭାବେ ଲାଗିରହିଚି । ସବୁ ମାଲ ଚାଲାଣ ହେଲା । ଯଦୁ ଗୋଛାୟତ ଗିରଫଦାର ହେଲା । ସବ୍‌ମେନେଜର ଉପାୟାନ୍ତର ନଦେଖି ପଳାଇଲେ ରାଜନଗର, ଯେଉଁଠି ଜିଲ୍ଲା କଲେକ୍ଟର ପେକ୍ ସାହେବ ଗସ୍ତରେ ଥିଲେ । ସମସ୍ତ ସମ୍ବାଦ ଶୁଣି ସେ ଗୋଟିଏ ଘରୋଇ ଟେଲିଗ୍ରାମ୍ କଲେ ଜଗତସିଂହପୁର ସର୍କଲ ଇନ୍‌ସପେକ୍ଟରଙ୍କ ପାଖକୁ ଏହି ମର୍ମରେ ଯେ ସବ୍‌ମେନେଜର ତାଙ୍କ ସହିତ ଗସ୍ତରେ ଥିବାରୁ ତମ ଉଦୟବଟ ତଦନ୍ତ ବନ୍ଦକର ଏବଂ ତଦନ୍ତକୁ ଯିବା ଆଗରୁ ତାଙ୍କ ସହିତ ଦେଖାକର ।

ଆଗରୁ କୁହାହୋଇଛି ଲୋକଙ୍କୁ ବଶକରିବାରେ ଜଗତମାନେ ଅତି ପଟୁ । ଏହି କାରଣରୁ ସ୍ଥାନୀୟ ଟେଲିଗ୍ରାମ୍ ମାଷ୍ଟରଙ୍କୁ ଜଗତମାନେ ନିଜର କରିନେଇଥିଲେ । ଜଗତସିଂହପୁର କୁଜଙ୍ଗ ଗୋଟି ୧ ଲାଇନ୍‌ରେ ଥିବାରୁ କଲେକ୍ଟର ସାହେବଙ୍କ ତାରଟି

କୁଜଙ୍ଗ ମାଷ୍ଟର ଚିପିରଖିଲେ । 'କୁଜଙ୍ଗ ସବ୍-ମେନେଜର' ନାମ ହେଉ ହେଉ କୁଜଙ୍ଗ ମାଷ୍ଟର କୌତୂହଳ ହୋଇପଡ଼ିଥିଲେ । ଯଥାସମୟରେ ଟେଲିଗ୍ରାମ୍‌ର ବିଷୟବସ୍ତୁ ଆମ ହାତକୁ ଆସିଲା ଏବଂ ଏହା ଯେପରି ନଷ୍ଟ ନହେବ ଓ ଅନିର୍ଦ୍ଦିଷ୍ଟ କାଳପର୍ଯ୍ୟନ୍ତ କଲିକତା ହେଡ୍‌ଅଫିସରେ ଜମାରହିବାକୁ ଆମ୍ଭେମାନେ ବୈଧାନିକଭାବେ ଲାଗିପଡ଼ିଲୁ । ଏହିପରି ଯେଉଁ ଟେଲିଗ୍ରାମ୍ ନକଲ ସୁରକ୍ଷିତ ହୋଇଥିବ ତାହା କେବଳ ସୁରକ୍ଷାପାଇଁ ଟଙ୍କା ଜମାଦେଉଥିବା ଆବେଦନକାରୀ ବ୍ୟତୀତ ଆଉ କାହାକୁ ମିଳିପାରେନା । ପରେ ଏହି ଟେଲିଗ୍ରାମ୍‌ଟିର ଯେଉଁ ବିଶେଷତ୍ୱ ଫୁଟିଉଠିଲା ସ୍ଥାନାନ୍ତର କୁହାଯିବ । ଟେଲିଗ୍ରାମ୍‌ଟିର ଆତ୍ମପ୍ରକାଶ ସମସ୍ତ ବିବାଦରେ ନିଷ୍ପତ୍ତିମୂଳକ ଅଂଶ ଗ୍ରହଣ କରିଥିଲା ।

ସମାଧିତଡ଼ା ମକଦମା ବିଚାର କଲେ ସ୍ୱୟଂ ସଦର ମହକୁମା ମାଜିଷ୍ଟ୍ରେଟ ରାୟସାହେବ ମାଧବଚନ୍ଦ୍ର ମିଶ୍ର । ରାୟବାହାଦୁର ବୈଦ୍ୟନାଥ ମିଶ୍ର ସ୍ୱାଧୀନଚେତା ହାକିମ ବୋଲି ତାଙ୍କର ନାମ ଥିଲା । ତାଙ୍କ ପର୍ଯ୍ୟନ୍ତ ଯେତେବେଳେ ପୂର୍ବବର୍ଣ୍ଣିତ ମତେ ପ୍ରୟୋଗମାନ ହୋଇଥିଲା, ସଦା ରାଜଭକ୍ତ ମାଧବବାବୁଙ୍କ ପ୍ରଶ୍ନ ଉଠୁଛି କେଉଁଠି ? ତେଣୁ ମହକୁମା ମାଜିଷ୍ଟ୍ରେଟଙ୍କ ସ୍ଥାନୀୟ ତଦନ୍ତରେ ସ୍ଥିରହେଲା ଯେ, ସମାଧି ତାଡ଼ିବା ଗୋଟିଏ କପୋଳକଳ୍ପିତ ଅମୂଳକ କଥା ଏବଂ ଅନ୍ୟମାନଙ୍କ ପ୍ରରୋଚନାରେ ଦାମ ଦାସ ନାମରେ ଓଲଟା ସୁପର୍ଦ୍ଧ ୨୧୧ ଧାରା ମକଦ୍ଦମା ସରକାରୀଭାବେ କରାଯାଉ । ଲକ୍ଷ୍ୟଥିଲା ମୋତେ ପରେ ଜଡ଼ିତକରିବାକୁ ।

ସେହି ମୁତାବକ ଦାମ ଦାସଙ୍କୁ ଟଣାହେଲା । ମକଦ୍ଦମା ଅନ୍ୟ ଆକାର ଧରିଲା । ଆମ୍ଭମାନଙ୍କ ପ୍ରରୋଚନାରେ ଦାମ ଦାସ ଏହା କରିଛି, ଏହି ପ୍ରମାଣ କରାଇପାରିଲେ ଏହାପରେ ଆମ୍ଭମାନଙ୍କ ପାଳି ପଡ଼ିବ । ତେଣୁ ଦାମ ଦାସ ମକଦମା ପ୍ରତି ଆମ୍ଭେମାନେ ସଜାଗ ଦୃଷ୍ଟି ରଖିଲୁ । ସରକାରୀ ସାକ୍ଷୀମାନଙ୍କ ସାକ୍ଷ୍ୟ ଦେବାପରେ ଦାମ ଦାସଙ୍କ ଉପରେ ମକଦମା ଅଭିଯୋଗ କରାଗଲା । ତା'ପରେ ପଡ଼ିଲା ଦାମ ଦାସଙ୍କ ଆତ୍ମରକ୍ଷା ପାଳି । ଡିଫେନ୍‌ସ ପାଇଁ ତାଙ୍କ ମୂଳ ମକଦମା ସାକ୍ଷୀମାନଙ୍କ ସହିତ କଲେକ୍‌ଟର ପେକ୍ ସାହେବଙ୍କ ଟେଲିଗ୍ରାମ୍‌ର ନକଲପାଇଁ ଶମନ କରାଗଲା । ପେକ୍ ସାହେବ ସମ୍ବାଦ ପାଇ ପ୍ରମାଦ ଗଣିଲେ ଏବଂ ଯେତେ ଚେଷ୍ଟାକଲେ କେଉଁଠୁ ନକଲଟିଏ ପାଇ ପାରିଲେନାହିଁ— କିନ୍ତୁ ସ୍ପଷ୍ଟ ମନେଥିଲା ଟେଲିଗ୍ରାମ୍ କରିଥିବା କଥା । ଏ ମକଦମାରେ ପ୍ରତିବାଦୀ ପକ୍ଷ ଜଗତମାନଙ୍କ ନେତୃତ୍ୱରେ ଚାଲିଥିବାରୁ ମକଦମା ତଦବିରରେ ଆଦୌ ତ୍ରୁଟି ନଥିଲା, ବରଂ ବହୁ କ୍ଷେତ୍ରରେ ଦକ୍ଷତର ଥିଲା । ତେଣୁ ପେକ୍ ସାହେବ ସାକ୍ଷୀ ଅଡ଼ାରେ ପଶି ବୀରବାବୁଙ୍କ ଜେରାର ସମ୍ମୁଖୀନ ହେବାକୁ ଆତଙ୍କ ମଣିଲେ ଏବଂ ମକଦମା ନିଷ୍ପତ୍ତିପାଇଁ ଯଥାସାଧ୍ୟ ଉଦ୍ୟମ ଚଳାଇବାକୁ ସବ୍‌ମେନେଜରଙ୍କ ଉପରେ ଚାପଦେଲେ । ବୋଲିବା ବାହୁଲ୍ୟ ଯେ ରାୟ ବାହାଦୁରଙ୍କ ଅନ୍ତରଙ୍ଗବନ୍ଧୁ ପହଲିବାନ୍ଙ୍କୁ ମିଳାମିଶାର ଦାୟିତ୍ୱ ନେଲେ ।

ମଣିଜଙ୍ଗା ଡାକବଙ୍ଗଳାରେ ପେକ୍ ସାହେବଙ୍କ ସମେତ ଉଭୟ ପକ୍ଷ ଏକତ୍ର ହେଲେ । ଜଗତମାନଙ୍କ ସନନ୍ଦ ସ୍ୱୀକୃତ ହେଲେ ଆମେ ସର୍ତ୍ତରେ ରାଜିହେବୁ ବୋଲି ମୁଁ ପ୍ରସ୍ତାବ ଦେଲି । କୁଜଙ୍ଗ ଷଣ୍ଢରାଜାଙ୍କ ପ୍ରଦତ୍ତ ସତାବନ କିତା ନଦୀକୁ କୁଜଙ୍ଗ ଜଗତମାନେ ଯାବତଚନ୍ଦ୍ରାର୍କେ ୫୦୧ଟଙ୍କା ଖଜଣାରେ ଭୋଗ କରିବା ବିରୋଧରେ ଜଜ୍‌କୋର୍ଟରେ ବର୍ଦ୍ଧମାନଙ୍କ ପକ୍ଷରୁ ଚାଲିଥିବା ଅପିଲ ଓ ବାଲିଆ ନଦୀଖଣ୍ଡକ ବିବାଦୀୟ ଦଖଲ ସତ୍ତ୍ୱ ଭାବରେ ବର୍ଦ୍ଧମାନଙ୍କ ଡିଗ୍ରୀ ବିରୋଧରେ ଜଗତଙ୍କ ଅପିଲ ଉଭୟ ଉଠାଇନିଆଗଲା । ଦାମ ଦାସଙ୍କ ମକଦମା ଉଠାହେଲା । ଉଦୟବଟ ଓ ତାହା ପାଖକୁ ଲାଗି ଏ ୩-୫୦ ଜମି ମେଳାମହୋତ୍ସବାଦି କାମରେ ବ୍ୟବହୃତ ହେବାକୁ ଓ ସମାଧି ପୁନଃପ୍ରତିଷ୍ଠା କରିବାକୁ ଦାମ ଦାସ ଓଗେର ଶିଷ୍ୟମାନଙ୍କୁ ଦିଆଗଲା ।

ଆଗାମୀ ପୁଷପୂର୍ଣ୍ଣମୀ ଦିନ ଜଗତମାନଙ୍କର ହାଡ଼ଖାଲ (ହୀରାଖାଲ) ପୀଠରେ କୁଜଙ୍ଗ ରାଜ୍ୟର ଦୁଇ ଅଂଶର ପ୍ରାୟ ସମସ୍ତ ଶିଉଳୀ ଓ ନିହାରୀ ଜଗତମାନଙ୍କର ଏକ ମହାମେଳା ଅନୁଷ୍ଠିତ ହେଲା । ଡଙ୍ଗା ଡଙ୍ଗା ଖିରୀ, ଡାଲି, ତରକାରି ଅନ୍ୟୂନ ଦଶହଜାର ଲୋକମାନଙ୍କର ଏକତ୍ର ରନ୍ଧାବଢ଼ା ହୋଇ ଶୃଙ୍ଖଳାର ସହିତ ଖିଆପିଆ କରିବା, ଏ ଦୃଶ୍ୟ ଅନ୍ତତଃ ମୋ ପକ୍ଷରେ ସେହି ପ୍ରଥମ ଅବଶ୍ୟ । ଏହି ମିଳନକୁ ଆନୁଷ୍ଠାନିକଭାବେ ସମର୍ଥନ କରିବାକୁ ବିଲାତରେ ସେତେବେଳେ ରହୁଥିବା ବର୍ଦ୍ଧମାନ ମହାରାଜା, ତାଙ୍କ ଯୁବରାଜ ପ୍ରଭୃତି କୁଜଙ୍ଗ ଆସିଲେ । ବିବାଦୀୟ ବାୟୁମଣ୍ଡଳ ପରିଷ୍କାର ହୋଇଗଲା । କିନ୍ତୁ କୁଜଙ୍ଗରେ ଏହିସବୁ ଆନ୍ଦୋଳନ ମାଧ୍ୟମରେ କଂଗ୍ରେସ ଯେଉଁ ପ୍ରତିଷ୍ଠା ଅର୍ଜନ କରିନେଲା, ପରବର୍ତ୍ତୀ ଇତିହାସ କହିବ ତାହାର ପରିଣାମ । ସେତେବେଳେ ୧୯୨୯ ମସିହା । ଭାବୀ ସତ୍ୟାଗ୍ରହର ରୂପରେଖର ଧାରଣାଦେବାକୁ ମହାତ୍ମାଜୀ ଲେଖାଲେଖି ଆରମ୍ଭକଲେଣି ଓ ଆମ୍ଭେମାନେ ପ୍ରସ୍ତୁତ ହେଉଥାଉ ଆସନ୍ନ ଗୋଟାଏ ନା ଗୋଟାଏ କିଛି ବିପ୍ଳବର ସମ୍ମୁଖୀନ ହେବାପାଇଁ । ଯଦିଓ କୁଜଙ୍ଗର ଦୁଇଟି ଦଳ ଜଗତମାନଙ୍କର ଓ ଉଦୟବଟର ଶିଷ୍ୟ ସାଧକମାନଙ୍କର ପ୍ରତ୍ୟକ୍ଷ ଦାୟିତ୍ୱ ଗ୍ରହଣ କରି କଂଗ୍ରେସ ପକ୍ଷରୁ ମୁଁ କାମ କରୁଥିଲି, କିନ୍ତୁ ସର୍ବସାଧାରଣଙ୍କର ସମର୍ଥନ ଓ ସହଯୋଗ ମନୋଭାବ ଆମ୍ଭମାନଙ୍କ ପଛରେ ଥିବା ଆମ୍ଭେମାନେ ପରିଷ୍କାର ଉପଲବ୍ଧି କରିପାରୁଥିଲୁ । ସେହି ସମ୍ବଳ କୁଜଙ୍ଗ ଲବଣ ସତ୍ୟାଗ୍ରହର ମୂଳଧନ ହେଲା ।

—

# ଆଇନଭଙ୍ଗର ଉଦ୍‌ଯୋଗ ପର୍ବ

ଯଦିଓ ସ୍ୱରାଜ୍ୟଦଳର ବୈଧାନିକ ବିରୋଧ ଶାସକ ଗୋଷ୍ଠୀ ପ୍ରାଣରେ ଯୁଗପତ୍ ବିସ୍ମୟ ଓ ଆତଙ୍କ ସୃଷ୍ଟି କରିବାକୁ ସକ୍ଷମ ହୋଇପାରିଥିଲା, ଯଦିଓ କେନ୍ଦ୍ର ଆସେମ୍ବ୍ଲି ଓ ପ୍ରାଦେଶିକ କାଉନ୍‌ସିଲ୍‌ମାନଙ୍କରେ ସ୍ୱରାଜ୍ୟ ଦଳର ଭିଟଲଭାଇ ପଟେଲ, ପଣ୍ଡିତ ମୋତିଲାଲ, ଚିତ୍ତରଞ୍ଜନ ଦାସ ପ୍ରମୁଖ ବ୍ୟକ୍ତିମାନଙ୍କ ପ୍ରତିଭା ସମଗ୍ର ଭାରତର ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ଭାବୀ ଭାରତର ଶାସନପ୍ରଣାଳୀ ସମ୍ପର୍କରେ ଏକ ପରିଷ୍କାର ରୂପରେଖର ଛାୟାପାତ କରିବାକୁ ସମର୍ଥ ହୋଇପାରିଥିଲା; କିନ୍ତୁ ତାହା ଗାନ୍ଧୀଜୀଙ୍କ କଳ୍ପିତ ସ୍ୱାଧୀନତାଠାରୁ ପୃଥକ କିମ୍ବା ସ୍ୱରାଜ ଦଳର ଅନୁସୃତ ପନ୍ଥା ଗାନ୍ଧିଜୀଙ୍କ ଧ୍ୟେୟ ପନ୍ଥାଠାରୁ ସ୍ୱତନ୍ତ୍ର ବୋଲି ଗାନ୍ଧିଜୀ ସ୍ୱରାଜ୍ୟ ଦଳର ଏଭଳି ଅଭିଯାନ ସବୁ ଉପରେ ଅତି ଅଳ୍ପ ଆସ୍ଥା ସ୍ଥାପନ କରୁଥିଲେ । ବରଂ ତାଙ୍କର ହୃଦ୍‌ବିଶ୍ୱାସ ଥିଲା ଯେ ଏସବୁ କୂଟନୈତିକ କାରବାରରେ ଇଂରେଜ ଜାତିକୁ ଜିଣିବାକୁ ପୃଥିବୀରେ କେହି ଜନ୍ମହୋଇନାହିଁ ଏବଂ ପୃଥିବୀ ବିଜୟପାଇଁ ଇଂରେଜ ଅସ୍ତ୍ରାଗାରରେ ଯେତେ ଯେତେ ଅସ୍ତ୍ର ଅଛି, ତନ୍ମଧ୍ୟରେ କୂଟନୈତିକ ଇଂରେଜୀ ଭାଷା ହେଉଛି ସର୍ବୋତ୍କୃଷ୍ଟ । ଅର୍ଦ୍ଧଧରଣୀବ୍ୟାପୀ ସାମ୍ରାଜ୍ୟକୁ ସପ୍ତସମୁଦ୍ର ମନ୍ଥନ କରୁଥିବା ଇଂରେଜ ଯୁଦ୍ଧ-ଜାହାଜଠାରୁ ଇଂରେଜୀ ଭାଷା ଯେ ରକ୍ଷାକରିବାକୁ ଅଧିକ ଉପଯୋଗୀ, ତାହା ଇଂରେଜୀ ଭାଷାରେ ଅଲୌକିକ ନୈପୁଣ୍ୟ ହାସଲକରିଥିବା ଗାନ୍ଧିଜୀ ସ୍ପଷ୍ଟ ବୁଝିଥିଲେ ଏବଂ ସେହି କାରଣରୁ ସ୍ୱରାଜ୍ୟ ଦଳର ବାକ୍‌ସର୍ବସ୍ୱ ଅଭିଯାନକୁ ଭାରତୀୟ ସ୍ୱାଧୀନତା ଯୁଦ୍ଧର ଆବଶ୍ୟକୀୟ ଅସ୍ତ୍ର ବୋଲି ଗ୍ରହଣ କରିପାରୁନଥିଲେ । ସେଥିପାଇଁ ସେ ସ୍ୱରାଜ୍ୟ ଦଳର ସଫଳତା ଉପରେ ନିର୍ଭର ନକରି, ତନ୍ଦ୍ରାଭିଭୂତ ନହୋଇ, ସ୍ୱକଳ୍ପିତ ଅହିଂସା ଅସହଯୋଗର ଶେଷ ପରିଣତି ସତ୍ୟାଗ୍ରହ ଅସ୍ତ୍ରକୁ ସତ୍ୟ, ଅହିଂସା ମନ୍ତ୍ରରେ ମନ୍ତ୍ରପୂତ କରିପଜାଉଥିଲେ ।

ତେତେବେଳେ ଯଦିଓ ଭାରତ ଜାତୀୟ କଂଗ୍ରେସ ସ୍ୱରାଜ୍ୟ ଦଳର ପରାକାଷ୍ଠା ଉପଲବ୍‌ଧି କରି ମୁହ୍ୟମାନ ହୋଇଯାଇଥିଲା, ତଥାପି ତାହା ଗାନ୍ଧିଜୀଙ୍କ ଅସାଧାରଣ ଶକ୍ତି ବିଷୟରେ ଅଚେତନ ନଥିଲା । 'ୟଙ୍ଗ୍ ଇଣ୍ଡିଆ' ମାଧ୍ୟମରେ ଗାନ୍ଧିଜୀଙ୍କ ଲେଖା ପରେ ଲେଖା ଗଭୀରରୁ ଗଭୀରତର, ଉଚ୍ଚରୁ ଉଚ୍ଚତର ସ୍ତର ଭେଦକରି ଚିନ୍ତା ଓ କଳ୍ପନା ରାଜ୍ୟରେ ଆଗେଇ ଚାଲିବାକୁ ଯଥେଷ୍ଟ ଖୋରାକି ଯୋଗାଇପାରୁଥିଲା ଏବଂ ସମସ୍ତେ ବୁଝିପାରୁଥିଲେ ଦରଦସ୍ତୁର ବା ମାପଚୁପ୍ ଜରିଆରେ ନହୋଇ ଗାନ୍ଧିଜୀଙ୍କ ପ୍ରକଳ୍ପିତ ଏକ ସ୍ୱତ· ନିର୍ଦ୍ଦେଶରେ ଆମ୍ଭମାନଙ୍କୁ ପରିଚାଳିତ ହେବାକୁ ପଡ଼ିବ । ତଥା ି

ତାହା ଯେ ଏଡ଼େ ଆସନ୍ନ ଏ ଧାରଣା କାହାରି ନଥିଲା; ବୋଧହୁଏ ସ୍ୱୟଂ ଗାନ୍ଧିଜୀଙ୍କର ଥିଲା କି ନା ସନ୍ଦେହ । କାରଣ ସେ ସବୁବେଳେ "ଏକ ଆଲୋକ ଅପେକ୍ଷାରେ ଅଛନ୍ତି" ବୋଲି କହୁଥିଲେ ଏବଂ "ରଶ୍ମିର ରେଖା ଦେଖିବା ମାତ୍ରେ ସତ୍ୟାଗ୍ରହ ଆରମ୍ଭ କରିଦେବାକୁ କୌଣସି ପାର୍ଥିବ ଶକ୍ତି ତାଙ୍କୁ ଅଟକାଇ ପାରିବନାହିଁ" ବୋଲି ସେ ସବୁ କ୍ଷେତ୍ରରେ ଘୋଷାଣକରୁଥିଲେ । ଏପରି ଏକ ବ୍ୟାପକ ଅର୍ଥ ବୁଝାଉଥିବା ଆଧ୍ୟାତ୍ମିକ ବା ନୈତିକ ଭିତ୍ତି ଉପରେ ଆମ କର୍ମୀମାନଙ୍କର ପ୍ରତ୍ୟୟ ବା ଆସ୍ଥା ଅତି ସାମାନ୍ୟ ଥିଲା– ଏକଥା ସ୍ୱୀକାର ନକଲେ ସତ୍ୟର ଅପଳାପ କରିବାକୁ ହେବ । ରାଜନୀତି ଭଳି ଏକ ଖାଣ୍ଟି ବୈଷୟିକ ବ୍ୟାପାରରେ ଏସବୁ ଅତିମାନବିକ ଦର୍ଶନର ତାତ୍ପର୍ଯ୍ୟ ପ୍ରୟୋଗ, ଗାନ୍ଧିଜୀଙ୍କ ଭଳି ବ୍ରତାଚାରୀ ପକ୍ଷରେ ଆଧ୍ୟାତ୍ମିକ ଗବେଷଣା ବା ଅନୁଶୀଳନ ବୋଲି ଗ୍ରହଣ କରାଯାଇପାରେ; କିନ୍ତୁ ଏହାର ସଫଳତା ସମ୍ବନ୍ଧରେ ସମସ୍ତେ ଯେ ସନ୍ଦିହାନ ଥିଲେ, ଏହା ନିଶ୍ଚିତଭାବେ କୁହାଯାଇପାରେ । ତଥାପି ସର୍ବାପେକ୍ଷା ଅତ୍ୟାଶ୍ଚର୍ଯ୍ୟ ବିଷୟ ହେଉଛି ଯେ ଏ ସମ୍ପର୍କୀୟ ତାଙ୍କ ଲେଖାରାଜି ପଢ଼ିଲା ବେଳେ ଅନ୍ତରର ଅନ୍ତସ୍ତଳରେ ତାହା ଅକ୍ଷରେ ଅକ୍ଷରେ, ଛନ୍ଦ୍ରେ ଛନ୍ଦ୍ରେ ଖାଲି ଗୃହୀତ ହୋଇଯାଉଥିଲା ତାହା ନୁହେଁ, ପ୍ରତିଷ୍ଠା ଅର୍ଜନ ମଧ୍ୟ କରିପାରୁଥିଲା । ଭାରତବର୍ଷରେ ତେତେବେଳେ ଗାନ୍ଧିଜୀଙ୍କ ସମସାମୟିକ ବିରାଟ ବିରାଟ ନରପୁଙ୍ଗବମାନେ ଜୀବିତ ଥିଲେ । ପ୍ରଥିତଯଶା କବି, ନ୍ୟାୟୟିକ, ଦାର୍ଶନିକ, ବାଗ୍ମୀ, ରବୀନ୍ଦ୍ରନାଥ ଠାକୁର, ଶ୍ରୀନିବାସ ଶାସ୍ତ୍ରୀ, ତେଜ୍‌ବାହାଦୁର ସାପ୍ରୁ, ମଦନମୋହନ ମାଲବ୍ୟ ଇତ୍ୟାଦି ଯେଉଁମାନଙ୍କ ଅନୁପମ ପ୍ରତିଭା ବିଷୟରେ କୌଣସି ପ୍ରଶ୍ନ ଉଠିନପାରେ, ସମସ୍ତେ ଗାନ୍ଧିଜୀଙ୍କ ଅଭିନବ ପ୍ରୟୋଗ ବିଷୟରେ ସଚେତନ ଥିଲେ ଏବଂ ସ୍ଥଳବିଶେଷରେ ବିରୋଧ ଯେ କରୁନଥିଲେ ତାହା ନୁହେଁ, ତଥାପି ଗାନ୍ଧିଜୀଙ୍କ ମହୋଦାର, ମହାମହତ୍ତ୍ୱମଣ୍ଡିତ ଐଶ୍ୱର୍ଯ୍ୟମୟ ଯୁକ୍ତିପରମ୍ପରା ଶୁଣି ଅଭିଭୂତ ହୋଇପଡୁଥିଲେ । ଦୁର୍ଜ୍ଜୟ ଭୌତିକ ବ୍ୟାପାରରେ ସିଦ୍ଧହସ୍ତ ପାଶ୍ଚାତ୍ୟ ସଭ୍ୟତା ଏବଂ ଏହି ସଭ୍ୟତାଭିମାନୀ ଇଂରେଜ ଶାସନବଳ ଓ କଳ ଏହିଠାରେ ଗାନ୍ଧିଜୀଙ୍କ ନିକଟରେ ହାର ମାନୁଥିଲା । ବିଶ୍ୱାସ ଥାଉ ବା ନଥାଉ ତୃଣଖଣ୍ଡ ପରି ଆମ୍ଭେମାନେ ସେହି ବିଶାଳ ପ୍ଲାବନ ସ୍ରୋତରେ ଏକ ଅସ୍ପଷ୍ଟ ଭବିଷ୍ୟତାଭିମୁଖରେ ଭାସିଚାଲିଥିଲୁ ।

ବିପ୍ଳବକୁ ସଚରାଚର ଅଗ୍ନିର ଉପମା ଓ ଆଖ୍ୟା ଦିଆହୋଇଥାଏ । ଏହି ବିପ୍ଳବାଗ୍ନିରେ ଦେଶପ୍ରେମୀମାନେ ପତଙ୍ଗ ପରି ଝାସଦିଅନ୍ତି ଏବଂ ଦେଶର ଐତିହ୍ୟ ସେମାନଙ୍କ ଆତ୍ମୋତ୍ସର୍ଗଦ୍ୱାରା ସମୃଦ୍ଧ ହୋଇଉଠେ । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଅସହଯୋଗ ବା ସତ୍ୟାଗ୍ରହ ଆନ୍ଦୋଳନ ବିରାଟ ବିପ୍ଳବ ସତ; କିନ୍ତୁ ତାହା ବିପ୍ଳବ-ଅଗ୍ନି ନୁହେଁ, ବିପ୍ଳବର ଆଲୋକ । ତାହାର ଧ୍ୱଂସକାରୀ ଶକ୍ତି ସୀମାବଦ୍ଧ, ଅ଼ଂ୍କାରରେ ପଥ-ପ୍ରଦର୍ଶନକାରୀ ଶକ୍ତି ପ୍ରଚ୍ଛନ୍ନ ।

ତାହା ଏପରି ଏକ ସ୍ୱଚ୍ଛ (transparent) ଆବରଣରେ ଆବୃତ ଯେ, ଅଗ୍ନିଶିଖାରେ ଝାସଦେବାପାଇଁ ପତଙ୍ଗଙ୍କୁ ଆକୃଷ୍ଟ କଲାପରି ତାହା ତତୋଧିକ ଆକୃଷ୍ଟ କରିପାରୁଥିଲା; କିନ୍ତୁ ଆତ୍ମୋତ୍ସର୍ଗ-ବ୍ରତୀମାନେ ଲମ୍ଫଦେବାମାତ୍ରେ ସତ୍ୟ ଅହିଂସାର ସେହି ସ୍ଫଟିକାବରଣ ସେମାନଙ୍କୁ ସତତ ରକ୍ଷାକରୁଥିଲା । ଏହି ଅଦୃଷ୍ଟ ଓ ଅଶ୍ରୁତପୂର୍ବ ବିଶେଷତ୍ୱକୁ ବ୍ୟାପକଭାବେ ଉପଲବ୍ଧି କରାଇବାରେ ଗାନ୍ଧିଜୀ ଏକମାତ୍ର ସିଦ୍ଧହସ୍ତ ଥିଲେ ଏବଂ ବୁଝାଇବାର ସେ ଶୈଳୀ କେବଳ ତାଙ୍କୁହିଁ ଜଣାଥିଲା । ଇଂରେଜମାନଙ୍କ ସର୍ବୈବ ଭୌତିକ ମାରଣାସ୍ତ୍ର ଏହିପ୍ରକାର ନୈତିକ ମାରଣାସ୍ତ୍ର ନିକଟରେ ଅବଶ୍ୟ ଅକାମୀ ହୋଇଯିବ, ଏହା ଇଂରେଜମାନେ ସ୍ପଷ୍ଟ ଅନୁଭବ କଲାମାତ୍ରେ ଗାନ୍ଧିଜୀଙ୍କ ସାଧନା ସିଦ୍ଧିରେ ପ୍ରତିଷ୍ଠିତ ହୋଇଯିବ, ଏହା ଗାନ୍ଧିଜୀଙ୍କୁ ସ୍ପଷ୍ଟ ଜଣାଥିଲା । ଗାନ୍ଧିଜୀଙ୍କ ବ୍ୟତୀତ ଆଉ ସମସ୍ତେ ଦୋଦୁଲ୍ୟମାନ ସନ୍ଦେହ ଦୋଳାରେ ଆଲୋଡ଼ିତ ହେଉଥିଲେ । କିନ୍ତୁ ସତ୍ୟ ଓ ଅହିଂସାର ଯେଉଁ ସ୍ଫୁଲିଙ୍ଗ ସେ ମର୍ମେ ମର୍ମେ ଅନୁଭବ କରିପାରିଥିଲେ, ତାହାକୁ ବ୍ୟାପକ କ୍ଷେତ୍ରରେ, ବ୍ୟାବହାରିକ ଜୀବନରେ ପ୍ରୟୋଗ କରିବାପାଇଁ ପ୍ରୟୋଜନୀୟ ସାଧନ ସାମଗ୍ରୀ ସଂଗ୍ରହରେ ସେ ତାଙ୍କ ସ୍ୱୀୟ ସ୍ୱତନ୍ତ୍ର ପ୍ରଣାଳୀଦ୍ୱାରା ଅବିଷ୍କାର ଓ ଉଦ୍ଭାବନରେ ଲାଗିପଡ଼ିଥିଲେ । ତାହା ସମସ୍ତଙ୍କୁ ଗୋଚର ଥାଇ ମଧ୍ୟ ଅଗୋଚର ଥିଲା, ଅନୁମାନ ଥାଇ ମଧ୍ୟ ଅନୁଭବ ନଥିଲା । ସେହି ଅନିର୍ବାଣ ସ୍ଫୁଲିଙ୍ଗକୁ ବିଜ୍ଞାନସମ୍ମତ ବା ସଭ୍ୟତାସମ୍ମତ ଆପଦହୀନ ଆଲୋକ ବର୍ତ୍ତିକାରେ ପରିବର୍ତ୍ତିତ ଓ ବର୍ଗଗଣିତ ଗୁଣନରେ ପରିବର୍ଦ୍ଧିତ କରିବାର ସୋପାନସବୁ ଆରୋହଣ ଓ ଅବତରଣ କରିବା ଏତାବତ୍ କାଳ ଥିଲା ଗାନ୍ଧିଜୀଙ୍କ ଅନୁଶୀଳନ ଏବଂ ସେହି ଆଲୋକ ଅପେକ୍ଷାରେ, ସେହି ଅନୁଭୂତିମୟ ସିଦ୍ଧି ଅପେକ୍ଷାରେ ରହି ଦେଶବାସୀଙ୍କୁ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ସେ ନିର୍ଦ୍ଦେଶ ପ୍ରଦାନ କରୁଥିଲେ କିମ୍ବା ସମସ୍ତ ଆୟତ୍ତ କରିସାରିବା ପରେ ମଧ୍ୟ ପ୍ରୟୋଗ ପାଇଁ ପ୍ରଶସ୍ତ ସୁଯୋଗ ସୁବିଧାକୁ ଅପେକ୍ଷା କରୁଥିଲେ ।

ଠିକ୍ ଏହିପରି ଏକ କ୍ରାନ୍ତିମୟ ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ଉଭୟ ପକ୍ଷର ଯୋଦ୍ଧୃମାନେ ରଣକ୍ଷେତ୍ରରେ ପରସ୍ପର ସମ୍ମୁଖୀନ ହୋଇ ଛିଡ଼ାହେବାକୁ ଉଦ୍‌ଯୋଗ କରୁଥିବାବେଳେ, ଉତ୍କଳ ଆକାଶର ଉଜ୍ଜ୍ୱଳତମ ଗ୍ରହ ଅସ୍ତମିତ ହୋଇ ଉତ୍କଳକୁ ଘୋରାନ୍ଧକାରରେ ବୁଡ଼ାଇଦେଲେ ପଣ୍ଡିତ ଗୋପବନ୍ଧୁ ଦାସ । ଦାସେ ଆପଣଙ୍କ ଅତର୍କିତ ତିରୋଧାନ ଆମ୍ଭମାନଙ୍କୁ ବଜ୍ରପାତ ପରି ବିହ୍ୱଳ କରିଦେଲା ଏବଂ ଆସନ୍ନ ମହାଭାରତୀୟ ସଂଗ୍ରାମର ଜଣେ ପ୍ରଥମଶ୍ରେଣୀ ଯୋଦ୍ଧା ଓ ସେନାପତିଙ୍କର ଆକସ୍ମିକ ବିୟୋଗ ସାରା ଭାରତକୁ ମ୍ରିୟମାଣ କରିଦେଲା । ଉତ୍କଳର କଂଗ୍ରେସ ସଂଗଠନ ତେତେବେଳେ ସମସ୍ୟାବହୁଳ ପରିସ୍ଥିତିର ସମ୍ମୁଖୀନ ହୋଇ ନାମକୁମାତ୍ର ବଞ୍ଚି ରହିଥାଏ । ପ୍ରୌଢ଼ ଓ ଯୁବକମାନଙ୍କ ମଧ୍ୟରେ ସ୍ୱରାଜ୍ୟପନ୍ଥୀ ଓ ଗାନ୍ଧିବାଦୀଙ୍କ ମଧ୍ୟରେ

ବିଭେଦ ଏବଂ ବିରାଟ କର୍ମପ୍ରବଣତାର ଦୁରନ୍ତ ପିପାସା ମେଣ୍ଟାଇବାପାଇଁ ଯଥେଷ୍ଟ କର୍ମ ଅଭାବରୁ, ଅଳସୁଆ ମସ୍ତିଷ୍କ ସଇତାନର କାରଖାନା ହେବାପରି, ଉତ୍କଳ କଂଗ୍ରେସ ମହଲରେ ନିଶ୍ଚେଷ୍ଟତା ଫଳରେ ନାନାବିଧ ବିଶୃଙ୍ଖଳା ଘୋଟିଆସୁଥାଏ । କେବଳ ଦାସେ ଆପଣଙ୍କ ସ୍ନେହ ଓ ସହନଶୀଳତା, କର୍ମବହୁଳତା ଓ ବିହ୍ୱଳତା ଅକ୍ସିଜେନ ପ୍ରୟୋଗ ପରି ସଙ୍ଗଠନକୁ ବଞ୍ଚାଇ ରଖିଥାଏ ମାତ୍ର । ଯେତେବେଳେ ସେ ସଂଯୋଗ ତନ୍ତ୍ରୀଟି ଛିଣ୍ଡିଗଲା, ସେ ଆଦର୍ଶ ଚୂଡ଼ା ଭାଙ୍ଗିପଡ଼ିଲା । କଂଗ୍ରେସ ସଂଗଠନର ଆଉ ରହିଲା କଣ– ଏହି ପ୍ରଶ୍ନ ସମସ୍ତଙ୍କୁ ଘାରିରଖିଲା ସେପର୍ଯ୍ୟନ୍ତ, ଯେପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶରେ ଗୋପବନ୍ଧୁ ଚୌଧୁରୀ ଆଗେଇ ନଆସିଥିଲେ । ଅବଶ୍ୟ ପ୍ରୌଢ଼ମାନେ ଟିକିଏ ନାସିକା କୁଞ୍ଚନ କରିବାର କଥା; କିନ୍ତୁ ଭାଗୁବାବୁ, ମହତାବବାବୁ ପ୍ରଭୃତି ଯୁବକ ଦଳ ଗାନ୍ଧିଜୀଙ୍କ ନିର୍ଦ୍ଦେଶକୁ ବଳିଷ୍ଠଭାବେ ସମର୍ଥନ କରିଗଲେ । ଉତ୍କଳ କଂଗ୍ରେସ ସଂଗଠନ ଅକୂଳ ସମୁଦ୍ରରେ ଥଳ ପାଇବା ପରି ଅନୁଭବ କଲା । ଆସନ୍ନ ଯୁଦ୍ଧ ଉଦ୍ଦେଶ୍ୟ ଓ ଉଦ୍‌ଯୋଗର ଅହରହ ମନ୍ତ୍ରଣା ଚାଲିଲା । ଦାସେ ଆପଣଙ୍କ ସଦ୍ୟ ବିଚ୍ଛେଦର ଉତ୍କଟ ପ୍ରତିକ୍ରିୟା ଧୀରେ ଧୀରେ ଅପସରିଗଲା । ସାଙ୍ଗଠନିକ ଶିଥିଳତା କ୍ରମଶଃ ମ୍ଳାନ ହୋଇଗଲା ଏବଂ ଉପର୍ଯ୍ୟୁପରି ଯୁଦ୍ଧୋଦ୍ୟମର ବ୍ୟଗ୍ର ଆବେଗ ଆଗରେ ସର୍ବବିଧ ବିଶୃଙ୍ଖଳା ପଙ୍ଗୁ ହୋଇଗଲା । ତୀବ୍ର ଉଦ୍ଦୀପନାର ଆଲିଙ୍ଗନରେ କ୍ଲିଷ୍ଟ ଜଡ଼ିମା ଲୁପ୍ତହୋଇ ଉତ୍କଳ କଂଗ୍ରେସ ସଙ୍ଗଠନର ଉଦ୍ଦାମ ସ୍ୱାସ୍ଥ୍ୟ ଫେରିଆସିଲା ।

ଏସବୁ କୃତିତ୍ୱର ନେତୃତ୍ୱ ପଡ଼ିଲା ଗାନ୍ଧିବାଦୀମାନଙ୍କ ହାତରେ । ଯଦିଓ ଗୋପବନ୍ଧୁ ଚୌଧୁରୀ ସ୍ୱରାଜ୍ୟ ଦଳ ଶୃଙ୍ଖଳା ମଧ୍ୟକୁ ଆସି ଜିଲାବୋର୍ଡ ନିର୍ବାଚନରେ ମଳାଶୁର ରାଜକିଶୋର ଦାସଙ୍କୁ ପରାସ୍ତ କରି ଏରସମାରୁ ନିର୍ବାଚିତ ହୋଇ କଟକ ଜିଲାବୋର୍ଡ ଚେୟାରମ୍ୟାନ ହୋଇଥିଲେ ଏବଂ ସୁନାମ ଓ ଦକ୍ଷତା ସହିତ କର୍ତ୍ତବ୍ୟ ତୁଲାଇ ଶେଷରେ ଇସ୍ତଫା (?) ଦେଇଥିଲେ, ତଥାପି ତାଙ୍କ ମୌଳିକ ଚିନ୍ତାଧାରା ଗାନ୍ଧିବାଦ ଥିଲା । ଯଦିଓ ଶ୍ରୀ ହରେକୃଷ୍ଣ ମହତାବ ଠିକ୍ ସେହି ସମୟରେ ବାଲେଶ୍ୱର ଜିଲାବୋର୍ଡ ଚେୟାରମ୍ୟାନ ହୋଇ ସେ କର୍ତ୍ତବ୍ୟ ପୂରାପୂରି ତୁଲାଇସାରିବା ପରେ, ୧୯୨୬-୨୭ ନିର୍ବାଚନରେ ଦକ୍ଷିଣ ବାଲେଶ୍ୱରରେ ସଫଳତା ସହିତ ପ୍ରତିଦ୍ୱନ୍ଦ୍ୱିତା କରି ବିହାର-ଓଡ଼ିଶା କାଉନ୍‌ସିଲକୁ ନିର୍ବାଚିତ ହୋଇପାରିଥିଲେ; କିନ୍ତୁ ନିର୍ବାଚନ ମକଦମାରେ ହାରି ସ୍ୱରାଜ୍ୟଦଳ ସଂକ୍ରାନ୍ତୀୟ ପ୍ରତ୍ୟକ୍ଷ ଦାୟିତ୍ୱରୁ ମୁକ୍ତହୋଇ ଗାନ୍ଧିବାଦୀମାନଙ୍କ ସହିତ (ମତ ଯାହା ଥାଉନା କାହିଁକି) ସମାସ୍କନ୍ଧ ହୋଇ ନେତୃତ୍ୱ ପ୍ରଦାନ କରିବାକୁ ଛିଡ଼ାହୋଇଗଲେ । ସେମାନଙ୍କ 'ଯୁଦ୍ଧଂଦେହି' ରବ ଶୁଣିବାବେଳକୁ, ଓଡ଼ିଶା ସ୍ୱରାଜ୍ୟ ଦଳର ପ୍ରତ୍ୟକ୍ଷ ଦାୟିତ୍ୱରେ ଥିବା ଆମେ କେତୋଟି, କେନ୍ଦ୍ର ଆସେମ୍ବ୍ଲି ଦାୟିତ୍ୱରେ

ଥିବା ପଣ୍ଡିତ ନୀଳକଣ୍ଠ ଦାସ, ଭୁବନାନନ୍ଦ ଦାସ ଏବଂ ବିହାର-ଓଡ଼ିଶା ପ୍ରାଦେଶିକ କାଉନ୍‌ସିଲରେ ଥିବା ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ମିଶ୍ର, ନନ୍ଦକିଶୋର ଦାସ ଏବଂ ସ୍ୱୟଂ ଲେଖକ କିପରି ବିଡ଼ମ୍ବିତ ହେଉଥିବେ ସହଜେ ଅନୁମେୟ । ଅବଶ୍ୟ ଅନ୍ୟମାନଙ୍କ ତତ୍‌କାଳୀନ ଭାବଧାରା ବିଷୟରେ ମୁଁ କେତେକାଂଶରେ ଅପରିଚିତ, କିନ୍ତୁ ମୋ. ନିଜ ଅଭିଜ୍ଞତା ବିଷୟରେ ଲେଖିବାକୁ ଗଲେ, ମୁଁ ଲେଖିବି ଯେ, ମୁଁ ଜୀବନରେ କେବେ ଏପରି ଅନାଶ୍ୱସ୍ତି ବା ଉତ୍କଣ୍ଠା ବୋଧ କରିନଥିଲି । ଅବଶ୍ୟ କେତେକ ଅବାଞ୍ଛିତ ପରିସ୍ଥିତିର ସମ୍ମୁଖୀନ ହୋଇ ମୋତେ କାଉନ୍‌ସିଲ୍, ଜିଲାବୋର୍ଡ଼ ଓ ଆସେମ୍ବ୍ଲି ଇତ୍ୟାଦିପାଇଁ କେତେଗୁଡ଼ିଏ ନିର୍ବାଚନ ଦ୍ୱନ୍ଦ୍ୱରେ ଓହ୍ଲାଇବାକୁ ପଡ଼ିଥିଲା; କିନ୍ତୁ ସବୁଗୁଡ଼ିକରେ ଜୟଯୁକ୍ତ ହୋଇଥିଲେ ମଧ୍ୟ ମୁହୂର୍ତ୍ତକପାଇଁ ମୁଁ ସେ ଦୃଷ୍ଟିରୁ ଗୌରବ ଅନୁଭବ କରିପାରିନଥିଲି । କାରଣ, ଗାନ୍ଧିବାଦହିଁ ମୋର ମୌଳିକ ସ୍ୱପ୍ନ । ନିର୍ବାଚନରେ ଯେତେଥର ଆସିଛି, ତାହାପରେ ମୋତେ ଏଥିପାଇଁ ଅନୁତାପଦ୍ୱାରା ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଛି । ସତ୍ୟାଗ୍ରହପାଇଁ 'ସାଜ ସାଜ' ରବରେ ଗଗନ ପବନ ମୁଖରିତ ହୋଇଉଠୁଥିବାବେଳେ, ଆମ୍ଭେମାନେ କ୍ଷୁଣ୍ଣ ମନରେ ଅପରାଧୀ ପରି କାଉନ୍‌ସିଲ ଓ ଆସେମ୍ବ୍ଲିର ସୀମାବଦ୍ଧ କୂପରେ ମଣ୍ଡୂକ ହୋଇ ଏକପ୍ରକାର ଆତ୍ମଗୋପନ କରୁଥିଲୁଁ ଏବଂ ସାଧାରଣ କର୍ମୀମାନେ ଅସୀମ ସମୁଦ୍ରରେ ସନ୍ତରଣ କରିବାକୁ ପ୍ରସ୍ତୁତ ହେଉଥିବା ଦେଖି ମନରେ ଈର୍ଷା ଅନୁଭବ କରୁଥିଲୁଁ ।

ମୁଁ ଏତେଦୂର ଆତ୍ମଗ୍ଲାନି ଅନୁଭବ କରିଥିଲି ଯେ, ତୁଙ୍ଗମହଲର କୌଣସି ନିର୍ଦ୍ଦେଶ ପାଇବା ଆଗରୁ ମୁଁ କାଉନସିଲରେ ଯୋଗଦେଇପାରିଲିନାହିଁ ଏବଂ ଦଳର ଶୃଙ୍ଖଳା ଭାଙ୍ଗି ଇସ୍ତଫାପତ୍ରଟିଏ ସିଧା କାଉନ୍‌ସିଲକୁ ପଠାଇଦେଇ ଶାନ୍ତିଲାଭକଲି ୧୯୨୯ରେ । ଅବଶ୍ୟ ସେଥିପାଇଁ ସହ ସଭ୍ୟମାନଙ୍କଠାରୁ ତିରସ୍କାର ଶୁଣିବାଯାଏ କଥା ଯାଇଥିଲା; କିନ୍ତୁ ମୁଁ ତେତେବେଳକୁ କୁଜଙ୍ଗ ଅଞ୍ଚଳକୁ ସ୍ଥାୟୀଭାବେ ଫେରିଯାଇ ଅଞ୍ଚଳ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଯେକୌଣସି ପରିସ୍ଥିତିପାଇଁ ପ୍ରସ୍ତୁତ ହେବାରେ ଲାଗିଯାଇଥିଲି । ସତ୍ୟାଗ୍ରହର ରୂପରେଖ କ'ଣ ହେବ, ଆନ୍ଦୋଳନର ପ୍ରଣାଳୀ କ'ଣ ହେବ ତାହା ମୋ ପକ୍ଷରେ ସମ୍ପୂର୍ଣ୍ଣ ଅଚିନ୍ତନୀୟ ବ୍ୟାପାର ହୋଇଥିଲେ ମଧ୍ୟ, ଖଜଣାବନ୍ଦ ପରି ଏକ ନିଷ୍ପତ୍ତିମୂଳକ ବ୍ୟାପକ ବିପ୍ଳବ ବିଷୟରେ ଅନୁମାନ ପୋଷଣକରି, ସେହି ଦୃଷ୍ଟିରେ ସ୍ଥାନେ ସ୍ଥାନେ ଆଲୋଚନା କରୁଥାଏଁ । ମୋଟଉପରେ କ୍ଷେତ୍ରପ୍ରସ୍ତୁତ କରି ରଖିବା ଥିଲା ମୋର କାମ, ତେଣିକି ନିର୍ଦ୍ଦେଶ ଯାହା ଆସୁନା କାହିଁକି କେବଳ ରୋପଣ କରିବାକୁ ବାକି ରହିଥିଲା ଯାହା କିଛି । ଆଗତ ପ୍ରାୟ ସ୍ୱାଧୀନତା ଯୁଦ୍ଧରେ ମୁକ୍ତ ବିହଙ୍ଗମ ପରି ଉଡ଼ିବୁଲିବାକୁ କାଉନ୍‌ସିଲ ଇତ୍ୟାଦିର ଜଞ୍ଜାଳ ତୁଟାଇ ଯେତେବେଳେ ପରୀକ୍ଷାମୂଳକ ଖଣ୍ଡିଉଡ଼ାଦେଇ ଅଞ୍ଚଳ ସଂଗଠନରେ ଲାଗିଗଲି, ଅନୁଭବ କଲି ପାଦରେ ନୂତନପ୍ରକାର ଶିଙ୍କୁଳି— ତାହା

ହେଉଛି କୁଜଙ୍ଗ ଷଣ୍ଢରାଜବଂଶର ଶେଷ ବଂଶଧର ରାଜା ଜଗଦୀଶ ଷଣ୍ଢ ନରେନ୍ଦ୍ର ବାହାଦୁରଙ୍କ ବିଧବାପତ୍ନୀ ଭାବବତୀ ପାଟମହାଦେବୀଙ୍କ ପ୍ରତି ମୋର ବିବେକାନୁମୋଦିତ କର୍ତ୍ତବ୍ୟ ।

ପୂର୍ବରୁ କୁହାଯାଇଛି ମୁଁ ବଣ୍ଟୁଆଷଣ୍ଢଙ୍କ ନାତୁଣୀର ପୁଅ ମାମୁଙ୍କର ଅର୍ଥାତ୍ ବଣ୍ଟୁଆଷଣ୍ଢଙ୍କ ନାତିଙ୍କର ପୋଷ୍ୟ ପୁତ୍ର ହୋଇ ଆଠଗଡ଼ରେ ଥିଲି ବୋଲି । ଆଠଗଡ଼ରୁ ବହିଷ୍କୃତ ହୋଇ କୁଜଙ୍ଗ ଅଞ୍ଚଳର ବଣିକୁନ୍ଦକୁ ଭାବୀକର୍ମକେନ୍ଦ୍ର ବାଛିବା ପରେ ପାରାଦ୍ୱୀପସ୍ଥିତ ଷଣ୍ଢବଂଶ ସହିତ, ଦୂରସମ୍ପର୍କୀୟ ହେଲେ ମଧ, ସମ୍ବନ୍ଧ ସ୍ଥାପନ କରିବା ସ୍ୱାଭାବିକ ହେଲା । ସଦ୍ୟ ବିଧବାରାଣୀ ଦୁଇଟି କନ୍ୟାଙ୍କ ସହିତ ପାରାଦ୍ୱୀପରେ ଅବସ୍ଥାନ କରୁଥିଲେ । ଆର୍ଥିକ ଅବସ୍ଥା ଶୋଚନୀୟ ଥିଲା । ଋଣ ଜାଲରେ ଯାହା କିଛି ଦେବୋତ୍ତର ସମ୍ପତ୍ତି ଥିଲା ତାହା ସର୍ବତୋଭାବେ ଜଡ଼ିତ । ଗୋଟିଏ ବିବାହ ଉପଯୁକ୍ତା କନ୍ୟା । ସମସ୍ତ ପରିସ୍ଥିତି ବୁଝିବାକୁ ମୋତେ ଅଧିକ ସମୟ ଲାଗିଲା ନାହିଁ । ମୋ ଭବିଷ୍ୟତ୍ ଆନ୍ଦୋଳନ ଦୃଷ୍ଟିରୁ ମୁଁ ଏହି ମହିଳାଙ୍କ ଗତିବିଧି, ଚିନ୍ତାଧାରା, ଦୃଢ଼ଚିତ୍ତ ଇତ୍ୟାଦି ଆବଶ୍ୟକ ଗୁଣମାନ ଲକ୍ଷ୍ୟକରି ଆଶାତୀତ ସନ୍ତୋଷ ଲାଭକରିପାରିଲି । ଅର୍ଥଦିଗରେ ଯଦିଓ ମୋର ସ୍ୱଚ୍ଛଳତା ନଥିଲା, ତଥାପି ମୋ ଅଧିକାରରେ ଯଥେଷ୍ଟ ମୂଲ୍ୟବାନ୍ ଭୂସମ୍ପତ୍ତି ଥିଲା । ସେହି ବଳରେ ଭାବବତୀଙ୍କୁ ଆବଶ୍ୟକ ସମସ୍ତ ପ୍ରକାର ଆର୍ଥିକ ସାହାଯ୍ୟ ଯୋଗାଇପାରିଲି ଏବଂ ବିବାହଉପଯୁକ୍ତା କନ୍ୟାଙ୍କୁ ପାତ୍ରସ୍ଥ କରିଦେବାକୁ ସବୁମନ୍ତେ ସମର୍ଥ ହୋଇପାରିଲି ।

କୁଜଙ୍ଗ ଜମିଦାର ବର୍ଦ୍ଧମାନ ମହାରାଜାଙ୍କ ସ୍ଥାନୀୟ ଅମଲା ଶାସନ ବିରୋଧରେ ସ୍ୱରୋତ୍ତଳନ କଲା ମାତ୍ରେ ସେମାନେ ମୋତେ କୁଜଙ୍ଗରେ କୌଣସି ସୁବିଧା ଦେବାକୁ ବିଧବାରାଣୀଙ୍କୁ ମନାକରିଦେଲେ, କାରଣ ତାଙ୍କ ମନ୍ଦିରମାନଙ୍କ ଜୀର୍ଣ୍ଣସଂସ୍କାର ସାଧନରେ ବ୍ରତୀ ହୋଇ ମୁଁ କୁଜଙ୍ଗବାସୀମାନଙ୍କ ସମାଦର ଲାଭକରିଥାଏଁ । କିନ୍ତୁ ଦୃଢ଼ଚେତା ଏହି ମହୀୟସୀ ମହିଳା ସେମାନଙ୍କ ଜଘନ୍ୟ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲେ । ଫଳରେ ବର୍ଦ୍ଧମାନ ରାଜ୍ୟ ସରକାରରୁ ତାଙ୍କୁ ମିଳୁଥିବା ମାସିକ ଷାଠିଏ ଟଙ୍କା ଭତ୍ତା ବନ୍ଦକରିଦିଆଗଲା । ଜଙ୍ଗଲ, ଗୋମହିଷାଦି ଚାରଣ ଇତ୍ୟାଦି ଯେଉଁସବୁ ସୁବିଧା ତାଙ୍କୁ ଦିଆଯାଇଥିଲା ତାହା ଯଦୃଚ୍ଛା ସଙ୍କୁଚିତ କରିଦିଆଗଲା । ତାଙ୍କ ହିତାକାଂକ୍ଷୀ ଅଞ୍ଚଳର ଲବ୍‌ଧପ୍ରତିଷ୍ଠ ଭଦ୍ରବ୍ୟକ୍ତିମାନେ, ମୋର ସମ୍ପର୍କ ତୁଟାଇଦେବାକୁ ବହୁପ୍ରକାର ପ୍ରବର୍ତ୍ତାଇ ତାଙ୍କ ନିକଟରେ ନିରସ୍ତ ହେଲେ । ସର୍ବଶେଷରେ ଗତ କେତେ ବର୍ଷରେ ମୁଁ ଯେତେ ଯାହା ଆର୍ଥିକ ସାହାଯ୍ୟ ଦେଇଥିଲି ତାହା ଏକକାଳୀନ ଫେରାଇଦେବାର ପ୍ରତିଶ୍ରୁତି ଦେଇ ମଧ ସର୍ବଥା ବିଫଳ ହେଲେ । ଏସବୁର ପରିଣାମ ତାଙ୍କ ପକ୍ଷରେ ଯାହାହେବ, ସେ ବିଷୟରେ ସେ ସର୍ବଦା ସଚେତନ ଥାଇ, ରାଜପରିବାରର

ବ୍ୟୟବହୁଳ ଅନୁଷ୍ଠାନମାନଙ୍କୁ ଯତ୍‌ପରୋନାସ୍ତି ସଂକ୍ଷେପ କରିପକାଇ, ଦାରିଦ୍ର୍ୟକୁ ବରଣକରିନେଲେ । ଦାରିଦ୍ର୍ୟଦଂଶନରେ ବର୍ଷ ବର୍ଷ ଧରି ପୀଡ଼ିତ ହୋଇ ସ୍ୱାସ୍ଥ୍ୟଭଙ୍ଗ ଘଟିବାରୁ ତାଙ୍କଠାରେ କର୍କଟ ରୋଗର ଲକ୍ଷଣ ଜଣାଗଲା । ସ୍ୱାମୀଙ୍କର ସେହି ରୋଗରେ ମୃତ୍ୟୁ ଘଟିଥିବାରୁ, ଏହି ମାରାତ୍ମକ ରୋଗ ସହିତ ସେ ସୁପରିଚିତ ଥିଲେ ଏବଂ କାଉନ୍‌ସିଲ ନିର୍ବାଚନ ଓ ମହାରାଜାଙ୍କ ସହିତ ସାଂଘାତିକ ମାଲିମକଦମାରେ ବ୍ୟାପୃତଥିବାରୁ, ମୋତେ ଏହି ରୋଗ ବିଷୟରେ ଘୁଣାକ୍ଷରେ ଜାଣିବାକୁ ଦେଇନଥିଲେ । ମୃତ୍ୟୁପୂର୍ବରୁ ତାଙ୍କ ସ୍ୱାମୀ ଦେବୋତ୍ତର ଇତ୍ୟାଦି ଯାବତୀୟ ସ୍ଥାବରାସ୍ଥାବର ସମ୍ପତ୍ତିରେ ତାଙ୍କୁ ଉତ୍ତରାଧିକାରିଣୀ ମନୋନିତ କରି ଏବଂ ଇଚ୍ଛାକଲେ ଉପର୍ଯ୍ୟୁପରି ସାତଗୋଟି ପୋଷ୍ୟପୁତ୍ର ଗ୍ରହଣ କରିପାରିବାର କ୍ଷମତା ପ୍ରଦାନକରି ଗୋଟିଏ ଉଇଲ ସମ୍ପାଦନ କରିଯାଇଥିଲେ । ତେଣୁ ଏହି ମାରାତ୍ମକ ରୋଗ ବଳରେ କବଳିତ ହେବାପରେ ଦେବସେବା ଓ ଯାହା କିଛି ଅବିଶିଷ୍ଟ ସମ୍ପତ୍ତି ଥିଲା ତାହା କିପରି କାହାଠାରେ ନ୍ୟସ୍ତ କରାଯିବ ସେହି ଚିନ୍ତା ତାଙ୍କୁ ଗ୍ରାସକରି ରହିଲା । କାଉନ୍‌ସିଲ୍ ବସୁଥିବା ସମୟରେ ମୁଁ ଏକକାଳୀନ ମାସାବଧି ପାଟଣାରେ ରହୁଥିଲି । ଏହି ସୁଯୋଗରେ ସେ କଟକ ଆସି ମୋ ପକ୍ଷରେ ପ୍ରତିଷ୍ଠିତ ଓକିଲ ବୀରକିଶୋର ରାୟ (ପରେ ଚିଫ୍‌ଜଷ୍ଟିସ୍)ଙ୍କ ପରାମର୍ଶ ଗ୍ରହଣକରି, ଲକ୍ଷେ ଟଙ୍କା ମୂଲ୍ୟର ଗୋଟିଏ ଦତ୍ତପତ୍ରରେ ହଜାରେ ଏକର ପରିମିତ ନିସ୍କର ଦେବୋତ୍ତର ଲାଖରାଜ ମୋତେ ପ୍ରଦାନ କରିଦେଲେ । ଏହି ଦଲିଲଟି ସଂପାଦନ କରିବାକୁ ସରକାରୀ ଫିସ୍ ଓ ଆନୁଷଙ୍ଗିକ ଖର୍ଚ୍ଚ ନିର୍ବାହ କରିବାକୁ ବହୁ ସହସ୍ର ଟଙ୍କାର ଆବଶ୍ୟକତା ଯେ ସେ କିପରି ମେଣ୍ଟାଇଲେ, ତାହା ଶେଷପର୍ଯ୍ୟନ୍ତ ମଧ୍ୟ ମୁଁ ଚେଷ୍ଟାକରି ଜାଣିପାରିନଥିଲି ।

ଏହି କ୍ରିୟାନୁଷ୍ଠାନଟିଦ୍ୱାରା ମୋ ଜୀବନର ଗତି ବଦଳାଇ ଦେବାରେ ସେ ସିଦ୍ଧିଲାଭ କରିଥିଲେ । କାରଣ ମୋ ପ୍ରତି ତାଙ୍କର ଅନୁପମ ଶ୍ରଦ୍ଧା, ଆନୁଗତ୍ୟ ଇତ୍ୟାଦିଦ୍ୱାରା ମୁଁ ଆଗରୁ ଏପରି ମୁଗ୍ଧ ହୋଇଥିଲି ଯେ, ସେ ଋଣରୁ ମୁକ୍ତ ହେବାକୁ ମନସ୍ଥ କରିଥିଲି ତାଙ୍କ ଦୁଇକନ୍ୟାଙ୍କୁ ମୋ ଜମିଦାରୀଭୁକ୍ତ ଦୁଇଖଣ୍ଡି ଗ୍ରାମ ପୃଥକଭାବେ ଖଞ୍ଜିଦେଇ ପ୍ରତିଷ୍ଠିତ କରିଦେବି ଏବଂ ଜୀବନ ଥିବାଯାଏ ସେ କନ୍ୟାମାନଙ୍କୁ ପାଖରେ ରଖିପାରିବେ । ତାପରେ ମୁଁ ଦେଶ କାମରେ ଷୋଳପଣ ଲିପ୍ତରହିବାକୁ ଅବିବାହିତ ଜୀବନ ଯାପନ କରିବି । ଏହି ଲକ୍ଷରେ ଜ୍ୟେଷ୍ଠାକନ୍ୟାଙ୍କୁ ରାଷ୍ଟ୍ରଦ୍ରୋହ କାରଣରୁ ରାଜ୍ୟରୁ ବିତାଡିତ ଘୁମୁସର ଭଞ୍ଜରାଜବଂଶର ଶେଷଦାୟାଦଙ୍କ ସହିତ ବିବାହ କରାଇଦେଇଥିଲି । କିନ୍ତୁ ପାଣିଗ୍ରହଣର ମାତ୍ର ଦୁଇବର୍ଷ ପରେ ଏହି ଦରିଦ୍ର ଅଥଚ ଅଭିମାନୀ ଯୁବକ ସ୍ଥାୟିଭାବେ ଘୁମୁସର ଫେରିଗଲେ । ସେଦିଗରୁ ନିରାଶ ହେବା ପରେ ଏହି ଦୂରଦୃଷ୍ଟିସମ୍ପନ୍ନା ମହିଳା ମନେ ମନେ ମୋ ଉପରେ ଦାୟିତ୍ୱ ନ୍ୟସ୍ତ

କରିବାକୁ ସଂକଳ୍ପ କରି ମୋ ଅଗୋଚରରେ ତାହା ମଧ୍ୟ କାର୍ଯ୍ୟରେ ପରିଣତ କରିଗଲେ । ମୁଁ ଜାଣିବା ପରେ ମୋ ସଂକଳ୍ପସବୁ ଭଣ୍ଡୁର ହେଲା ବୋଲି ବୁଝିଲି ସତ, କିନ୍ତୁ ତାହାର ପ୍ରତିକାର କରିବା ଦୂରେ ଥାଉ ପ୍ରତିବାଦ କରିବାକୁ ମଧ୍ୟ ସାହସ ହେଲାନାହିଁ । କାରଣ ତାଙ୍କ ନିକଟରେ ମୁଁ ସେହିପରି କୃତଜ୍ଞତା ପାଶରେ ଆବଦ୍ଧଥିଲି । ଏ ଘଟଣାର ଅବ୍ୟବହିତ ପରେ ମୋର କର୍ତ୍ତବ୍ୟ ହେଲା ତାଙ୍କୁ କଟକ ଆଣି ଚିକିତ୍ସାର ସୁବ୍ୟବସ୍ଥା କରିବା । ତାହାହିଁ ପୂର୍ବୋଲ୍ଲିଖିତ ମତେ ମୁକ୍ତ ବିହଙ୍ଗ ଗୋଡ଼କୁ ଶିକୁଳି ପରି ଲାଗୁଥିଲା । ତଥାପି ସ୍ୱୀୟ ଅଞ୍ଚଳରେ ଆସନ୍ନ ସଂଗ୍ରାମପାଇଁ ସାଂଗଠନିକ ଅଗ୍ରଗତି ଅପ୍ରତିହତଭାବେ ଚଳାଇରଖିଥିଲି ।

ପୂର୍ବରୁ କହିଛି ଖଜଣା ବନ୍ଦ ଆନ୍ଦୋଳନ ଚାଲିବା ଅନୁମାନକରି ସେହିପରି ମୋ ଅଞ୍ଚଳରେ ଆଲୋଚନା ଓ ସଂଗଠନ ଚଳାଇଥାଏଁ ଏବଂ ଏହିସବୁ ଦାୟିତ୍ୱ ତୁଲାଇବାକୁ ଯେଉଁ ନିଷ୍ଠା, ଯେଉଁ ଏକାଗ୍ରତା ଲୋଡ଼ା ତାହାର ପ୍ରଧାନ ଅନ୍ତରାୟ ହେଉଥାଏ ମୋର ବୈଷୟିକ ବ୍ୟାପାର । ଉଭୟ କାମକୁ ଏକାଧାରରେ ଚଳାଇବା ମୋପକ୍ଷରେ ଅସମ୍ଭବ ଜାଣି ମୋ ସମକକ୍ଷ ଜଣେ ବିଶ୍ୱସ୍ତ ବାଲ୍ୟବନ୍ଧୁଙ୍କଠାରେ ବୈଷୟିକ ଦାୟିତ୍ୱ ନ୍ୟସ୍ତକରିବାକୁ ବାଧହେଲି । ସେ ମଧ୍ୟ ଜଣେ ଚତୁର ଅଗ୍ରଗଣ୍ୟ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ଅନ୍ୟତମ, ତିଗିରିଆର ଶ୍ରୀ ମଧୁସୂଦନ ପଟ୍ଟନାୟକ, କନିକା ଆନ୍ଦୋଳନର ଜେଲ ଫେରନ୍ତା ନେତା । ଉଭୟେ ଏକତ୍ର ନାନାବିଧ ରାଜନୈତିକ ଆଲୋଚନା କରିବା ଅତି ସୁବିଧାପ୍ରଦ ହୋଇଥାଏ । ଆମ ଦୁଇ ବାଲ୍ୟବନ୍ଧୁଙ୍କ ମଧ୍ୟରେ ଆନ୍ତରିକତା ଏଡ଼େ ଘନିଷ୍ଠ ଯେ, ଜଣକ ହୃଦୟରେ କୌଣସି ଭାବ ଉଦୟ ହେବାମାତ୍ରେ, ତାହା ଅନ୍ୟ ହୃଦୟରେ ପ୍ରତିଫଳିତ ବା ପ୍ରତିବିମ୍ବିତ ହୋଇପାରୁଥିଲା । ଦୁଇବନ୍ଧୁ ନିରୋଳାରେ ବସି ନିୟମିତ ଖବରକାଗଜ ପଢ଼ିବା ଓ ନାନାଦିଗରୁ ଆଲୋଚନା କରିବା ଚାଲିଥାଏ । ହଠାତ୍ ଦିନେ ମୁଁ କହିପକାଇଲି– ସମୁଦ୍ରବେଷ୍ଟିତ ଆମ ଏ ଉପକୂଳରେ ଖଜଣା ବନ୍ଦ ଆନ୍ଦୋଳନ ଅପେକ୍ଷା ଲୁଣମରା ଆନ୍ଦୋଳନ ଅଧିକ ବ୍ୟାପକ ହୋଇପାରନ୍ତା । ଏ ବିଷୟରେ ଅଧିକ କିଛି ଆଲୋଚନା ହେଲାନାହିଁ । ଠିକ୍ ଦୁଇଦିନ ପରେ ମଧୁବାବୁ ହଠାତ୍ ଆସି ମତେ କୁଣ୍ଢାଇପକାଇ ଖବର ଦେଲେ, ‘‘ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ସ୍ଥିର କରିଥିବା ଆଜି ଖବରକାଗଜରେ ବାହାରିଛି ।’’ ଅବଶ୍ୟ ଦୁଇଦିନ ପୂର୍ବେ ମୁଁ ଯେତେବେଳେ ଲୁଣମାରି ଆଇନଭଙ୍ଗ କରିବା କଥା ସୂଚାଇଥିଲି, ତାହା ଉପରେ ବିଶେଷ କୌଣସି ଗୁରୁତ୍ୱ ଆରୋପ କରିନଥିଲି; କିନ୍ତୁ ଗାନ୍ଧିଜୀଙ୍କ ଚିନ୍ତାଧାରା ସେଦିନ କିପରି ଯେ ମୋଠାରେ ପ୍ରତିଫଳିତ ହୋଇଗଲା, ତାହା ଭାବି ମଧୁବାବୁଙ୍କ ବିସ୍ମୟର ସୀମା ରହିଲାନାହିଁ । ତେଣୁ ଦ୍ୱିଧାହୀନଭାବେ କୁଜଙ୍ଗ ଅଞ୍ଚଳରେ ଲବଣ ସତ୍ୟାଗ୍ରହ ବ୍ୟାପକ ଆକାରରେ ଚଳାଇବାପାଇଁ ମୁଁ ସଂକଳ୍ପନିଷ୍ଠ ହୋଇଗଲି । ବୋଲିବା ବାହୁଲ୍ୟ

ଯେ ମଧୁବାବୁ ମୋ ବିଷୟାଦି ଦେଖାଶୁଣା କରିବା ଦାୟିତ୍ୱ ତୁଲାଇବାପାଇଁ ଆବଶ୍ୟକ ହେଲେ ସତ୍ୟାଗ୍ରହରେ ଏ ଯାତ୍ରାରେ ଯୋଗ ନଦେବାପାଇଁ ସ୍ଥିରକରିଦେଲେ । କାରଣ ତାଙ୍କର ବିଶ୍ୱାସ ଥିଲା ଯେ, ବୈଷୟିକ ଝିନ୍‌ଝଟ୍‌ରୁ ମୋତେ ସମ୍ପୂର୍ଣ୍ଣ ମୁକ୍ତ ରଖିବାରେ ସାହାଯ୍ୟ କରିବାଦ୍ୱାରା ମୁଁ ପୂର୍ଣ୍ଣ ପରାକ୍ରମରେ ଲାଗିପଡିବି ଏବଂ ଏହା ତାଙ୍କ ପକ୍ଷରେ ସତ୍ୟାଗ୍ରହରେ ପ୍ରତ୍ୟକ୍ଷ ଯୋଗଦେବାଠାରୁ ଅଧିକ କିଛି ହେଲା ବୋଲି ବିଚାର କରାଯାଇପାରିବ ।

ଗାନ୍ଧିଜୀଙ୍କ ଦାଣ୍ଡିଯାତ୍ରା ସପ୍ତାହକ ମଧରେ ଆରମ୍ଭ ହୋଇଗଲା । ସାରା ଭାରତ ଗାନ୍ଧିଜୀଙ୍କ ଏହି ଅପ୍ରତ୍ୟାଶିତ ଲବଣ ସତ୍ୟାଗ୍ରହ ଅଭିଯାନ ଆରମ୍ଭ ଶୁଣି ମନ୍ତ୍ରମୁଗଧ ହୋଇଗଲା । ଏପ୍ରକାର ଅଭିନବ ଅଭିଯାନପାଇଁ ଏପରି ଆଶାତୀତ ବ୍ୟାପକ ସମର୍ଥନ ଭାରତବ୍ୟାପୀ ମିଳିଲା ଯେ, ଶାସକଗୋଷ୍ଠୀ ପ୍ରଥମେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଆବାଳ-ବୃଦ୍ଧ-ବନିତା ସବୁଶ୍ରେଣୀର ଭାରତବାସୀ ଉଦ୍‌ବେଳିତ ସମୁଦ୍ର ଉଚ୍ଛ୍ୱାସପରି ସତ୍ୟାଗ୍ରହରେ ଝାସଦେବାକୁ ମାଡ଼ିଆସିଲେ । ସମସ୍ତଙ୍କର ବିଶ୍ୱାସ ହେଲା ଯେ ଗାନ୍ଧିଜୀଙ୍କ ଏ ଉଦ୍ଭାବନ ସର୍ବତୋଭାବେ ଐଶିଶକ୍ତିସମ୍ପନ୍ନ ବୋଲି । ବୋଧହୁଏ ଯେଉଁ ଆଲୋକକୁ ସେ ଏପର୍ଯ୍ୟନ୍ତ ଅପେକ୍ଷା କରି ରହିଥିଲେ ତାହାହିଁ ଲବଣ ସତ୍ୟାଗ୍ରହଭାବେ ମୂର୍ତ୍ତ ହୋଇଉଠିଲା ।

ଉତ୍କଳରେ ବାଲେଶ୍ୱର ଜିଲାର ଇଞ୍ଚୁଡ଼ି ପ୍ରାନ୍ତର ସମରାଙ୍ଗଣଭାବେ ବଛାଗଲା । ମହତାବଙ୍କ ସମେତ ବାଲେଶ୍ୱରର କର୍ମୀ ଓ ନେତୃବୃନ୍ଦ ସଜହୋଇ ରହିଲେ । ନେତୃତ୍ୱ ଦେବାକୁ କଟକରୁ ଘନଘୋର ଉତ୍ସାହମଧରେ ପ୍ରଥମ ସତ୍ୟାଗ୍ରହ ସେନା ଦଳ ଚାଲିଲେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ । ମୋର ଠିକ୍ ମନେଅଛି ସେଦିନ ମୁଁ କଟକରେ ଥାଏ ଏବଂ ଭାବବତୀଙ୍କ କର୍କଟ (Cancer) ରୋଗର ଆଶୁପ୍ରତିକାର ନକରିବାଯାଏ ମୋର ତ୍ରୁଟି ରହିଯିବ, ମୁଁ ସତ୍ୟାଗ୍ରହରେ ପୂର୍ଣ୍ଣପ୍ରାଣରେ ଯୋଗଦେଇପାରିବିନାହିଁ ବୋଲି କଟକର ତତ୍‌କାଳୀନ ପ୍ରବୀଣ ଚିକିତ୍ସକ ସିଭିଲସର୍ଜନ୍ ପାଲିତ ସାହେବଙ୍କ ପରାମର୍ଶରେ ରୋଗିଣୀଙ୍କର କେତୋଟି ଦାନ୍ତ ଉପାଡ଼ିଦେବାପାଇଁ ସେଦିନ ବ୍ୟବସ୍ଥା କରାଯାଇଥାଏ । ଦାନ୍ତ ଉପାଡ଼ିବା ପରେ ରୋଗ କିଞ୍ଚିତ ଉପଶମ ବୋଧହେଲା ଏବଂ ଦାନ୍ତମୂଳ କ୍ଷତ ଶୁଖିବା ମାତ୍ରେ ତାଙ୍କୁ ପାରାଦ୍ୱୀପରେ ପହଞ୍ଚାଇଦେଇ ମୁଁ ଆପାତତଃ ତାତ୍‌କାଳିକ ଦାୟିତ୍ୱରୁ ମୁକ୍ତ ମନେକଲି । ଯଦିଓ ଉତ୍ପାଟନଜନିତ ଦାନ୍ତମୂଳ କ୍ଷତ ଶୁଖିଗଲା, କିନ୍ତୁ କର୍କଟ ରୋଗାକ୍ରାନ୍ତ ସ୍ଥାନରେ ଉପସର୍ଗ କମିବାର କୌଣସି ଲକ୍ଷଣ ଦେଖାଗଲାନାହିଁ । ମୁଁ ଅଧୈର୍ଯ୍ୟ ହୋଇଉଠିଲି । ମୋ ଅଧୀରତା ଦେଖି ପାଲିତସାହେବଙ୍କ ପ୍ରେସ୍‌କ୍ରିପ୍‌ସନ୍ ମୁତାବକ ଆବଶ୍ୟକ ଔଷଧପତ୍ର ଯୋଗାଇଦେଇ ସ୍ୱାଧୀନତା ଯୁଦ୍ଧ ଆୟୋଜନରେ ଲାଗିଯିବାକୁ ରାଣୀ ଭାବବତୀ ମୋତେ ଓଲଟି ଅନୁରୋଧକଲେ । ରୋଗଗ୍ରସ୍ତ ହୋଇ

ମଧ ତେତେବେଳକୁ ସେ ଖୁବ୍ ସବଳ ଓ ଅନ୍ୟାନ୍ୟ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଖୁବ୍ ସୁସ୍ଥ ଥିଲେ ଏବଂ ସୁବିଧା ହେଲେ ଏ ଅଭିଯାନରେ ନିଜେ ଯୋଗଦେବାକୁ ଇଚ୍ଛାପ୍ରକାଶ କରିଥିଲେ ।

ଚୈତ୍ର ପୂନେଇ ଦୁଇ ଚାରିଦିନ ଥାଏ । ଶ୍ରୀଯୁକ୍ତା ରମାଦେବୀ (ଗୋପବାବୁଙ୍କ ସହଧର୍ମିଣୀ) ସାମାନ୍ୟ କେତେଜଣ କର୍ମୀ ଘେନି ସପରିବାରରେ ଅଳକାଶ୍ରମରେ (ଜଗତସିଂହପୁର) ଅବସ୍ଥାନ କରୁଥାନ୍ତି । ସେତେବେଳକୁ ଇଞ୍ଚୁଡ଼ି ସତ୍ୟାଗ୍ରହ ମାସାବଧି ଆରମ୍ଭ ହୋଇଗଲାଣି । ଗୋପବାବୁଙ୍କ ସମେତ ପ୍ରଥମଦଳଟି ଧରାହୋଇଗଲେଣି । ମହତାବବାବୁ ବାହାରେ ରହି ଆୟୋଜନରେ ଲାଗିଥାନ୍ତି । ପରେ ପରେ ବ୍ୟାପକ ଆକାରରେ ସେଠାରେ ଧରପଗଡ଼ ହୋଇ ସେଠାରେ କାମ ଶିଥିଳ ହୋଇଯାଇଥାଏ । ଓଡ଼ିଶାରେ ଅନ୍ୟକୁ ମାପି କାମ ହେବାର ଲକ୍ଷଣ ନଦେଖି ରମାଦେବୀ ଶେଷରେ ମୋତେ ଡକାଇପଠାଇଲେ । ମୁଁ ଅଳକାଶ୍ରମକୁ ଯାଇ ଦେଖାକଲି । ସେପର୍ଯ୍ୟନ୍ତ ରମାଦେବୀ ପଦାକୁ ବାହାରିନଥିଲେ, ପଦାକୁ ଅର୍ଥାତ୍ ସଭାସମିତିକୁ ବାହାରିନଥିଲେ । କିନ୍ତୁ କଟକର ସୁବିଶାଳ ହର୍ମ୍ୟ ଛାଡ଼ି ଅଳକାଶ୍ରମର ଆଣ୍ଠିଏ ଧୂଳିକୁ ଓହ୍ଲାଇଆସି-ସାରିଥିଲେ । ତାଙ୍କ ପୂର୍ବ ବିଳାସବ୍ୟସନ ପ୍ରତ୍ୟକ୍ଷ କରିଥିବା ମୋ ପକ୍ଷରେ ସେତିକି ମଧ ବିସ୍ମୟକର ବୋଧହେଲା । ଯଥା ସମୟରେ ସାକ୍ଷାତ୍ ହେବାରୁ କହିଲେ, ''ଗୋପବାବୁ ଜେଲରେ ରହିଲେ, ଆପଣମାନେ ପଦାରେ ନିଶ୍ଚିନ୍ତ ରହିବେ ନା କଣ ?'' ମୁଁ କହିଲି, ''ଆପଣ ନେତୃତ୍ୱ ଦବାକୁ ବାହାରିପଡ଼ନ୍ତୁ– ଅନ୍ୟ ସବୁ ଦାୟିତ୍ୱ ମୁଁ ମୁଣ୍ଡାଇବି । କୁଜଙ୍ଗ ଅଞ୍ଚଳରେ କ୍ଷେତ୍ର ପ୍ରସ୍ତୁତକରିରଖିଛି– କେବଳ ଆପଣଙ୍କ ଆଦେଶସାପେକ୍ଷ ।'' ସେ ଯତ୍ପରୋନାସ୍ତି ସନ୍ତୋଷ ଅନୁଭବ କଲେ ଏବଂ ବୈଶାଖୀ ଝଞ୍ଜାବିକ୍ଷୁବ୍ଧ ସେହି ଏକ ଶୁଭ ମଧ୍ୟାହ୍ନରେ, ସାନ୍ଦ୍ର ଆମ୍ରକାନନର ଘନଛାୟାମଣ୍ଡିତ ସେହି ଅଳକାଶ୍ରମସ୍ଥ ଐତିହାସିକ ପୀଠରେ ସିଦ୍ଧାନ୍ତ ହୋଇଗଲା– ଆଗାମୀ ଅକ୍ଷୟତୃତୀୟା ଦିନ ଜଣେ ନାରୀନେତ୍ରୀଙ୍କ ନେତୃତ୍ୱରେ କଟକ ଜିଲ୍ଲାର ଲବଣସତ୍ୟାଗ୍ରହ ଅଭିଯାନ କୁଜଙ୍ଗରେ ଚାଲିବ । ଆନୁଷଙ୍ଗିକ ଉଦ୍ୟୋଗପାଇଁ ଶ୍ରୀଯୁକ୍ତା ରମାଦେବୀ ସେହିଦିନ କଟକ ଅଭିମୁଖରେ ଏବଂ ବିଦାୟଘେନି ମୁଁ କୁଜଙ୍ଗ ଅଭିମୁଖରେ ଧାବିତହେଲୁ ।

—

# ସତ୍ୟାଗ୍ରହ ଅଭିଯାନ

ଶ୍ରୀଯୁକ୍ତା ରମାଦେବୀ କୁଜଙ୍ଗ ଲବଣ ସତ୍ୟାଗ୍ରହର ନେତୃତ୍ୱ ଗ୍ରହଣ କରିବାପାଇଁ ପ୍ରତିଶ୍ରୁତି ପ୍ରଦାନ କରି ଆୟୋଜନପାଇଁ କଟକ ଅଭିମୁଖରେ ବାହାରିଗଲେ । ମୁଁ କୁଜଙ୍ଗ ଫେରିଯାଇ ଆମ ସ୍ଥାନୀୟ କର୍ମୀମାନଙ୍କୁ ପାରାଦ୍ୱୀପରେ ଏକତ୍ରିତ କରି ଆସନ୍ନ କର୍ତ୍ତବ୍ୟ ବିଷୟରେ ସେମାନଙ୍କ ପରାମର୍ଶ ଲୋଡ଼ିଲି । ପାରାଦ୍ୱୀପ ପ୍ରାଥମିକ ସ୍କୁଲର ଶିକ୍ଷକ ଶ୍ରୀ ଦୁର୍ଯ୍ୟୋଧନ ପଟ୍ଟନାୟକ ଆଗରୁ ଆମ୍ଭମାନଙ୍କ ଚିନ୍ତା ଓ ବିଚାରଧାରା ସହିତ ସମ୍ୟକ୍ ପରିଚିତ ଥିଲେ ସତ କିନ୍ତୁ ଘୁଣାକ୍ଷରରେ ସତ୍ୟାଗ୍ରହ ପ୍ରତି ତାଙ୍କର ଉତ୍ସାହ ଉଦ୍ଦୀପନା କଥା ଜଣାଇନଥିଲେ । ସେଦିନ ପାରାଦ୍ୱୀପରେ ଯେଉଁ କତିପୟ କର୍ମୀଙ୍କର ସମାଗମ ଘଟିଲା ତହିଁରେ ଦେଖାଗଲା ମୂଳରୁ ଶେଷପର୍ଯ୍ୟନ୍ତ ଦୁର୍ଯ୍ୟୋଧନବାବୁ ପରୋକ୍ଷଭାବେ ସବୁ ପରିଚାଳନା କରୁଛନ୍ତି । କର୍ମୀମାନଙ୍କ ଖାଦ୍ୟପେୟ, ରହିବା, ଏକାନ୍ତରେ ବସି ସଭାକାମ ଚଳାଇବା ଇତ୍ୟାଦି ସବୁ ଟିକିନିଖି କାମ ସେ ସ୍ୱତଃପ୍ରବୃତ୍ତଭାବେ ବୁଝାସୁଝା କରୁଛନ୍ତି । ସେ ଜିଲାବୋର୍ଡ଼ ଅଧୀନସ୍ଥ ଚାକିରିଆ, କ୍ଷୁଦ୍ର ପ୍ରାଇମେରୀ ସ୍କୁଲ ଶିକ୍ଷକ; ତାଙ୍କ ପକ୍ଷରେ ଏସବୁ ରାଜ-ବିଦ୍ରୋହ କାରବାରରେ ଏତେଟା ଲିପ୍ତ ହେବା ଠିକ୍ ନୁହେଁ ବୋଲି ଯଦିଓ ମୁଁ ଭାବୁଥାଏ ତାଙ୍କ ନିରାପଦତା ଦୃଷ୍ଟିରୁ, ତଥାପି ଆଶା ହେଉଥାଏ ଏହିପରି କେତେଜଣ କର୍ମୀ ମିଳିଲେ ମୋ ଦାୟିତ୍ୱ ଅନେକଟା ଲାଘବ ହୁଅନ୍ତା; କିନ୍ତୁ ତାଙ୍କୁ କହିବାକୁ ସାହସ ହେଉନଥାଏ । ସେଦିନ ସଭାରେ ସ୍ଥିର ହେଲା ଆସନ୍ତା ଅକ୍ଷୟତୃତୀୟା ଦିନ ପ୍ରଥମ ସତ୍ୟାଗ୍ରହୀ ବାହିନୀ ପାରାଦ୍ୱୀପସ୍ଥ ବ୍ୟାସଦେବଙ୍କ ମନ୍ଦିରରୁ ସକାଳେ ସକାଳେ ବାହାରି ବିଭିନ୍ନ ଗ୍ରାମ ପ୍ରଦକ୍ଷିଣ ଓ ପ୍ରଚାର କରି କରି ଦଶ ମାଇଲ ଦୂରସ୍ଥ ଗଡ଼କୁଜଙ୍ଗରେ ପହଞ୍ଚିବେ । ସେହିଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରାଯିବ । ସତ୍ୟାଗ୍ରହ ନିୟମାନୁସାରେ ଏ ପ୍ରସ୍ତାବ ସ୍ଥାନୀୟ ପୁଲିସ ଅଫିସରଙ୍କୁ ଜଣାଇଦିଆଗଲା । କିନ୍ତୁ ଏସବୁ ଅନୁନ୍ନତ ଅଞ୍ଚଳରେ କିଛି ଗୋଟାଏ ହେବ ବୋଲି ଧାରଣା ନହେବାରୁ ପୁଲିସ ଅଫିସର ସ୍ଥାନୀୟ ଦଫାଦାରଙ୍କୁ ରିପୋର୍ଟ କରିବାକୁ ନିର୍ଦ୍ଦେଶ ଦେଇ ଉପରକୁ ରିପୋର୍ଟ ପଠାଇଦେଲେ ଏବଂ ନିଜେ ଯଥାସମ୍ଭବ ଉଦାସୀନ ରହିଲେ ।

ଅକ୍ଷୟତୃତୀୟା ଦିନଟି ବଛାଯିବାର କାରଣ ଥିଲା— ସେହି ଦିନଟି ବ୍ୟାସଦେବଙ୍କ ଜନ୍ମତିଥି । ପାରାଦ୍ୱୀପରେ ସ୍ମରଣାତୀତ କାଳର ବ୍ୟାସପୀଠ ଅଛିବୋଲି ଏହି ଦିନଟି ଯଥା ସମ୍ଭବ ପାଳିତ ହୁଏ । ସ୍ଥାନୀୟ ପ୍ରବାଦ ଅଛି ବ୍ୟାସଦେବଙ୍କ ଜନ୍ମ ଏହି

ପାରାଦ୍ୱୀପରେ ସଂଘଟିତ ହୋଇଥିଲା । ଯେତେବେଳେ ନୂଆ ନୂଆ ଉପନିବେଶ ସ୍ଥାପନ ଆର୍ଯ୍ୟମାନଙ୍କର ମୁଖ୍ୟ ଉଦ୍ୟମ ଥିଲା ଏବଂ ଭୋଜ ଓ ଯାଦବମାନେ ଜରାସନ୍ଧଙ୍କ ପ୍ରତିପତ୍ତିରେ ସମ୍ୟକ୍ ପୀଡ଼ିତ ହୋଇ ମଥୁରା ଛାଡ଼ି ପଶ୍ଚିମସାଗର ତୀରବର୍ତ୍ତୀ ଦ୍ୱାରକା ଇତ୍ୟାଦି ସ୍ଥାନମାନଙ୍କରେ ବସତି ସ୍ଥାପନ କରିବାକୁ ପ୍ରଧାବିତ ହୋଇଥିଲେ ଓ ସାଗରବେଷ୍ଟିତ ଦୁର୍ଗମ ଦ୍ୱାରକା ଦ୍ୱୀପକୁ ଅପେକ୍ଷାକୃତ ନିରାପଦ ମନେକରି ବଳରାମ ଓ ଶ୍ରୀକୃଷ୍ଣଙ୍କ ନେତୃତ୍ୱରେ ଏକ ସମୃଦ୍ଧିବନ୍ତ ରାଜ୍ୟ ସ୍ଥାପନାରେ ପ୍ରବୃତ୍ତ ହୋଇଥିଲେ, ସେତେବେଳେ ମହାମନା ତ୍ରିକାଳଜ୍ଞ ମହର୍ଷୀ ପରାଶର ସର୍ବଶ୍ରେଷ୍ଠ ଆର୍ଯ୍ୟକେନ୍ଦ୍ର ହସ୍ତୀନାରୁ ପୂର୍ବ ସମୁଦ୍ର ଅଭିମୁଖରେ ଉପନିବେଶ ସ୍ଥାପନ କରିବାକୁ ପ୍ରେରିତ ହୋଇଥିବା ମଧ୍ୟ ଅନୁମାନ କରାଯାଇପାରେ । ଆଉ ମଧ୍ୟ ଅନୁମାନ କରାଯାଇପାରେ ଯେ ଘନ ବନ ପର୍ବତମୟ ପଥହୀନ ଦୁର୍ଗମ ସ୍ଥଳଭାଗ ପରିତ୍ୟାଗ କରି ଜଳପଥ ସାହାଯ୍ୟରେ ସେ ହସ୍ତୀନାରୁ ଯମୁନା, ଗଙ୍ଗା ଓ ପୂର୍ବୋପକୂଳବର୍ତ୍ତୀ କୁଆରିଆ ନଦୀମାନଙ୍କୁ ଅତିକ୍ରମ କରି ମହାନଦୀ ମୁହାଣର ପ୍ରଶସ୍ତ, ଅତ୍ୟୁର୍ବର ଓ ସୁନିର୍ମଳ ଜଳସେବିତ ଦେଶକୁ ଉପନିବେଶ ସ୍ଥାପନପାଇଁ ନିର୍ବାଚନ କରିଥିଲେ ଏବଂ ଏହି ମନୋମୁଗ୍ଧକର ଦେଶକୁ ଆର୍ଯ୍ୟସଭ୍ୟତା ବିସ୍ତାରପାଇଁ ଏକ ଉପଯୁକ୍ତ କ୍ଷେତ୍ର ପାଇ ଅଭିଯାନ ସାର୍ଥକ ହେବବୋଲି ମନେକରିଥିଲେ । ମହାନଦୀ ମୁହାଣସ୍ଥିତ ଯେଉଁ ପ୍ରଥମ ଦ୍ୱୀପରେ ସେ ପଦାର୍ପଣ କରିଥିଲେ, ତାହାର ନୈସର୍ଗିକ ଶୋଭା ସଂଦର୍ଶନରେ ସେ ଆତ୍ମହରା ହୋଇ ସେହି ଦ୍ୱୀପରେ ବସତି ସ୍ଥାପନ କରିବାକୁ ଆଗ୍ରହୀ ହେବାରୁ ଦ୍ୱୀପବାସୀ କୈବର୍ତ୍ତମାନେ, ତାଙ୍କ ଆର୍ଯ୍ୟପ୍ରତିମ ଉଜ୍ଜ୍ୱଳବର୍ଣ୍ଣ, ଉଦାରବ୍ୟକ୍ତିତ୍ୱ ଇତ୍ୟାଦି ଦେଖି ଅଭିଭୂତ ହୋଇଯାଇଥିଲେ ଏବଂ ତାଙ୍କ ଆବିର୍ଭାବକୁ ଯେ ସ୍ୱାଗତ କରିଥିଲେ, ବୋଲିବା ବାହୁଲ୍ୟ । ପରାଶରଙ୍କ ନାମାନୁସାରେ ସେହି ଦ୍ୱୀପକୁ 'ପରାଦ୍ୱୀପ' ବା ପାରାଦ୍ୱୀପ ରଖାଯାଇଥିଲା । ଅବିବାହିତ ଯୁବକ ପରାଶର ଏହି ପାରାଦ୍ୱୀପର ମତ୍ସ୍ୟଗନ୍ଧା, ପରେ ଯୋଜନଗନ୍ଧା ନାମ୍ନୀ ଏକ କୈବର୍ତ୍ତ କନ୍ୟାଙ୍କ ରୂପଲାବଣ୍ୟରେ ଆକୃଷ୍ଟ ହୋଇଥିଲେ । ସେମାନଙ୍କ ମିଳନରୁ ଯେଉଁ ଅଲୌକିକ ପ୍ରତିଭାସମ୍ପନ୍ନ ପୁତ୍ରସନ୍ତାନ ଜନ୍ମଲାଭ କଲେ, ଦ୍ୱୀପରେ ଜନ୍ମଲାଭ କରିଥିବାରୁ ତାଙ୍କ ନାମ ଦ୍ୱୈପାୟନ ରଖାଗଲା । ଭାରତୀୟ ଆର୍ଯ୍ୟ ସଭ୍ୟତାର ଭାସ୍କର ମହାଭାରତ, ଭଗବଦ୍‌ଗୀତା, ଶ୍ରୀମଦ୍‌ଭାଗବତ ପ୍ରଣେତା ବ୍ୟାସ ଏହି ଦ୍ୱୈପାୟନ ଥିବାରୁ ତାଙ୍କ ନାମ ବ୍ୟାସ ଦ୍ୱୈପାୟନ ହେଲା ।

ଆର୍ଯ୍ୟୋପନିବେଶ ସ୍ଥାପନ ଓ ପ୍ରତିଷ୍ଠାରେ ଏହି ମହାପ୍ରତିଭାବନ୍ତ ପରିବାରଟି ଆର୍ଯ୍ୟ କୃଷ୍ଟି-କେନ୍ଦ୍ର ହସ୍ତୀନାକୁ ସମୟାନ୍ତରେ ଅବଶ୍ୟ ଫେରିଯାଇଥିଲେ ଏବଂ ଜଳପଥରେ ଉଜାଣି ଯିବା ବହୁ କ୍ଲେଶ ଓ ଶ୍ରମସାପେକ୍ଷ ବିବେଚନା କରି ସ୍ଥଳପଥ

ନିଶ୍ଚିତଭାବେ ଗ୍ରହଣ କରିଥିଲେ । ଆଜି ଆମ୍ଭେମାନେ ଆମ ଉତ୍କଳ ଦେଶରେ 'ବ୍ୟାସ ସରୋବର' (ଯାଜପୁର ରୋଡ଼ ଷ୍ଟେସନ) କିମ୍ବା 'ବ୍ୟାସମେଳା' (ପାନପୋଷ ଷ୍ଟେସନ ନିକଟବର୍ତ୍ତୀ) ଇତ୍ୟାଦି ଯେଉଁ ନାମସବୁ ଶୁଣିଥାଉ, ତାହା ପାରାଦ୍ୱୀପରୁ ହସ୍ତିନାକୁ ପରାଶର କିମ୍ବା ବ୍ୟାସ ପରିବାରମାନଙ୍କର ହସ୍ତିନା ପ୍ରତ୍ୟାବର୍ତ୍ତନ କାଳୀନ ସରଳ ସ୍ଥଳ ମାର୍ଗସ୍ଥିତ ବ୍ୟାସସ୍ମୃତି ବିଜଡ଼ିତ ସ୍ଥାନ ବା ପୀଠମାନ ଅଟନ୍ତି ।

ସେ ଯାହାହେଉ, ଏହି ପାରାଦ୍ୱୀପରେ ପରାଶର ଓ ବ୍ୟାସ ଆଶ୍ରମମାନ ସ୍ମରଣାତୀତ କାଳରୁ ବିଦ୍ୟମାନ ଅଛି ଏବଂ ଏ ଅଞ୍ଚଳରେ ବାସକରୁଥିବା ବହୁ କୈବର୍ତ୍ତ ବା କଳିଙ୍ଗର ବହୁ କର୍ଣ୍ଣଧାର ଓ ନାବିକ ବଂଶଧରମାନେ ସେମାନଙ୍କ ଇଷ୍ଟ ବୋଲି ପ୍ରତିଷ୍ଠିତ ବ୍ୟାସ ମନ୍ଦିରରେ ପୂଜା ଓ ଅର୍ଚ୍ଚନାପାଇଁ ଯୁଗ ଯୁଗ ଧରି ଏକତ୍ରିତ ହୋଇ ଆସୁଛନ୍ତି । ବୈଶାଖ ଶୁକ୍ଳପକ୍ଷ ତୃତୀୟା ଦିନଟି ବ୍ୟାସଙ୍କର ଜୟନ୍ତୀ ବା ଜନ୍ମଦିନ ବୋଲି ଦ୍ୱୀପବାସୀମାନଙ୍କ ପକ୍ଷରେ ତାହା ଗୋଟିଏ ମହାପବିତ୍ର ଦିନ ଏବଂ ଏହି ଅକ୍ଷୟତୃତୀୟା ଦିନ ପ୍ରଭାତରୁ ଲବଣ ସତ୍ୟାଗ୍ରହପାଇଁ ପ୍ରଥମ ବାହିନୀ ଏହି ପୁଣ୍ୟ ପୀଠରୁ ଅନୁକୂଳ କରି ଯାତ୍ରା ଆରମ୍ଭ କରିଦେଲେ । ଯାତ୍ରା ପୂର୍ବରୁ ମନ୍ଦିର ଚୂଡ଼ାରେ ଗୋଟିଏ ତ୍ରିରଙ୍ଗ ଜାତୀୟ ପତାକା ଉଡ଼ାଇଦିଆଗଲା ଏବଂ ପ୍ରତ୍ୟେକଙ୍କ ଗଳାରେ ଗୋଟିଏ ଗୋଟିଏ ଫୁଲମାଳ ଲମ୍ବାଇ ଦିଆଗଲା । ଏହି ମାଳଗୁଡ଼ିକ ଅବଶ୍ୟ ବ୍ୟାସ ମୂର୍ତ୍ତିଙ୍କ ଶ୍ରୀଅଙ୍ଗଲାଗି ଫୁଲମାଳ ଥିଲା । ସତ୍ୟାଗ୍ରହୀମାନେ ମାତ୍ର କତିପୟ ପଦ ଅଗ୍ରସର ହେଉ ହେଉ ହଠାତ୍ ଦେଖାଗଲା ପ୍ରାଇମେରୀ ସ୍କୁଲ ଶିକ୍ଷକ ପୂର୍ବୋକ୍ତ ଦୁର୍ଯ୍ୟୋଧନ ପଟ୍ଟନାୟକ; ତାଙ୍କ ସମସ୍ତ ଭବିଷ୍ୟତ୍‌ରେ ଜଳାଞ୍ଜଳି ଦେଇ ବାହିନୀରେ ଧାଇଁଆସି ଯୋଗଦେଲେ । ଉତ୍ସାହର ତରଙ୍ଗ ଖେଳିଗଲା ଏବଂ ବାହିନୀର ନେତୃତ୍ୱ ତାଙ୍କଠାରେ ସର୍ବତୋଭାବେ ନ୍ୟସ୍ତ କରାଗଲା, ବୋଲିବା ବାହୁଲ୍ୟ । ସତ୍ୟାଗ୍ରହ ବାହିନୀ ଭବାନୀପୁର, ଲୁଣକୁଆ, ନାଉଡ଼ିଆ ବାଟେ ହଳଦିପାଣି ଘାଟ ପାରିହୋଇ ଗଣ୍ଡକିପୁର, କାଳିଆପାଟ ଇତ୍ୟାଦି କୈବର୍ତ୍ତ ବହୁଳ ଗ୍ରାମମାନଙ୍କୁ ପ୍ରଦକ୍ଷିଣକରି ପାନପଲ୍ଲି ଗ୍ରାମରେ ବିଶ୍ରାମକଲେ । ସତ୍ୟାଗ୍ରହୀମାନଙ୍କ ଶୃଙ୍ଖଳାବଦ୍ଧ ଶ୍ରେଣୀ ଦେଖି ଏବଂ ଜାତୀୟ ସଙ୍ଗୀତ ଓ ସ୍ଲୋଗାନ ସବୁ ଶୁଣି ଆବାଳବୃଦ୍ଧବନିତା ଗ୍ରାମବାସୀମାନଙ୍କ ମନରେ ଅଭୂତପୂର୍ବ ଉନ୍ମାଦନା ଖେଳିଯାଇଥିଲା । ପାନପଲ୍ଲିରେ ସତ୍ୟାଗ୍ରହୀମାନଙ୍କ ମଧ୍ୟାହ୍ନଭୋଜନପାଇଁ ଗ୍ରାମବାସୀମାନେ ଆଗରୁ ଖବର ପାଇ ପ୍ରସ୍ତୁତ ଥିଲେ । ମଧ୍ୟାହ୍ନଭୋଜନ ପରେ ସତ୍ୟାଗ୍ରହୀମାନଙ୍କୁ ଅପରାହ୍ନ ପର୍ଯ୍ୟନ୍ତ ପାନପଲ୍ଲିଠାରେ ବିଶ୍ରାମ ଓ ଅପେକ୍ଷା କରିବାକୁ ପଡ଼ିଲା ।

ଅପେକ୍ଷା କରିବାର କାରଣ ସେଦିନ ଗୁରୁବାର ଏବଂ ସେ ଅଞ୍ଚଳର ପାଟପୁର ହାଟ ହେବାର ପାଳି । ବୈଶାଖୀ ଖରାର ପ୍ରଚଣ୍ଡତାବଶତଃ ଅପରାହ୍ନ ଆଗରୁ କେହି

ହାଟକୁ ପ୍ରାୟ ଆସନ୍ତିନାହିଁ । ହାଟ ଲାଗିବା ସମୟରେ ସତ୍ୟାଗ୍ରହୀମାନେ ସେହି ବାଟ ଦେଇ କୁଜଙ୍ଗ ବାଲିତୁଠ ରାସ୍ତାରେ ଗଡ଼କୁଜଙ୍ଗ ଯାତ୍ରା କରିବେ ଅଥଚ ବିଭିନ୍ନ ଗ୍ରାମାଗତ ହାଟୁଆମାନଙ୍କୁ ଘେନି ଗୋଟିଏ ସଭା ଓ ପ୍ରଚାର କରିଦେଲେ, ସମଗ୍ର ଅଞ୍ଚଳଟି ନିଜ ନିଜ କର୍ତ୍ତବ୍ୟ ବିଷୟରେ ଜାଗ୍ରତ ହୋଇଯିବେ । ଏହି ଦୃଷ୍ଟିରୁ ଯାତ୍ରାନିର୍ଘଣ୍ଟ ସ୍ଥିର ହୋଇଥିଲା । ମୁଁ ବାହିନୀ ସହିତ ନଆସି ଦୁର୍ଯ୍ୟୋଧନବାବୁଙ୍କ ନେତୃତ୍ୱରେ ସେ ଦାୟିତ୍ୱ ଛାଡ଼ିଦେଇ ସାଇକେଲ ଯୋଗେ ରାସ୍ତାବାଟରେ ବୁଲିଯାଇ ଆଗରୁ ହାଟରେ ସଭାଉଦ୍‌ଯୋଗ କରିବା, ସତ୍ୟାଗ୍ରହୀମାନଙ୍କ ଆଗମନକୁ ଅପେକ୍ଷା ରଖିବା ଦାୟିତ୍ୱ ମୋ ଉପରେ ଥିଲା । ମୁଁ ହାଟରେ ପହଞ୍ଚିବା ବେଳକୁ ଛୋଟ ହାଟଟି ଲୋକାରଣ୍ୟ । ଏହି ହାଟଟିକୁ ମୁଁ ବହୁବାର ଆଗରୁ ଦେଖିଥିଲି, କିନ୍ତୁ ଏ ଅପ୍ରତ୍ୟାଶିତ ଲୋକାରଣ୍ୟ ଦେଖି ହଠାତ୍ କାରଣ ବୁଝିପାରିଲିନାହିଁ, ବିଶେଷତଃ ସେଦିନ ଅକ୍ଷୟତୃତୀୟା । କୃଷି କର୍ମରତ କୃଷକ ପକ୍ଷରେ ସେଦିନ ଗୋଟିଏ ସ୍ୱତନ୍ତ୍ର ଦିନ । ପ୍ରତି କୃଷକ ପରିବାର, ସେଦିନ ପ୍ରଭାତରୁ ଉଠି ଅକ୍ଷିମୁଠି (ଅକ୍ଷୟମୁଠି) ବା ପ୍ରଥମ ଧାନବୀଜ ଅତି ପବିତ୍ର ଭାବେ ନେଇ ନିଜ କିଆରିରେ ସର୍ବପ୍ରଥମେ ବପନ କରନ୍ତି । ଅର୍ଥାତ୍ ସେହି ଦିନଟିରେ ଧାନଚାଷ କାମ ଆନୁଷ୍ଠାନିକଭାବେ ପୁରପଲ୍ଲିରେ ଆରମ୍ଭ କରିଦିଆଯାଏ । ତେଣୁ ସେଦିନ ଅଧିକାଂଶ ପରିବାରର ଲୋକେ ହାଟବାଟକୁ ନଆସିବା କଥା । ମୋତେ ଏକୁଟିଆ ଦେଖି ପରିଚିତ ଲୋକମାନଙ୍କର ମୁହଁ ଶୁଖିଗଲା ପରି ଜଣାଗଲା । କାରଣ ମାତ୍ର କେତେଘଣ୍ଟା ମଧ୍ୟରେ ସତ୍ୟାଗ୍ରହୀମାନଙ୍କ ଅଭିନବ ଅଭିଯାନବାର୍ତ୍ତା ସମଗ୍ର ପୁରପଲ୍ଲି ଅଞ୍ଚଳରେ ବିଦ୍ୟୁତ୍‌ବେଗରେ ସଞ୍ଚରି ଯାଇଥିଲା ଏବଂ ଲୋକେ କିମ୍ଭୂତକିମାକାର କଳ୍ପନା କରି ବସିଥିବାବେଳେ ହାଟର ଗୋଟିଏ କୋଣରୁ ଖଣ୍ଡିଏ ସାଇକେଲରେ ମୁଁ ଏକୁଟିଆ ଆସି ପ୍ରବେଶ କରିବାଦ୍ୱାରା ଜନତା ମଧ୍ୟରେ ଯେଉଁ ହତାଶା ଖେଳିଗଲା, ତାହାହିଁ ମୋ ପରିଚିତ ଲୋକଙ୍କ ଶୁଖିଲା ଅପ୍ରତିଭ ମୁହଁରୁ ମୁଁ ସମ୍ପୂର୍ଣ୍ଣ ବୁଝିପାରି ନଥିଲେ ମଧ୍ୟ ଟିକିଏ ଆଭାସ ପାଇଲି । ସେମାନେ ଶୁଣିଥିଲେ ଧାଡ଼ିବାନ୍ଧି, ପତାକାଧରି, ଫୁଲମାଳ ପକାଇ, ଗର୍ଜନ (ସ୍ଲୋଗାନ) କରି ସାଆନ୍ତ (ମୋତେ ଏହି ନାମରେ ସମସ୍ତେ ଜାଣନ୍ତି)ଙ୍କ ପଛରେ କେତେ କେଜାଣି ଲୋକେ ଆଇନ ଭାଙ୍ଗିବାପାଇଁ ମାଡ଼ିଆସୁଛନ୍ତି । ଅଥଚ ଦକ୍ଷିଣା ବୈଶାଖୀ ଝଞ୍ଜାକୁ ଆଠ ମାଇଲ ବାଟ ଠେଲି ଠେଲି ଗଳଦ୍‌ଘର୍ମ ଓ ଶୁଷ୍କକଣ୍ଠତାଲୁ ହୋଇ ମୁଁ ଯେତେବେଳେ କାତରଭାବେ ଏକୁଟିଆ ହାଟରେ ଆବିର୍ଭୂତ ହେଲି, ତେତେବେଳେ କଳ୍ପନାଜଳ୍ପନାରେ ଭିନ୍ନ ପ୍ରତିକ୍ରିୟା ସୃଷ୍ଟିହେବା ଯେ ସ୍ୱାଭାବିକ, ବୋଲିବା ବାହୁଲ୍ୟ ।

ଏଠାରେ ମୋ ବିଚାର ଓ ସିଦ୍ଧାନ୍ତ ଧାରାର ସମ୍ୟକ୍ ପରିଚୟ ନଦେଲେ ମୁଁ ପାଠକମାନଙ୍କ ପ୍ରତି କର୍ତ୍ତବ୍ୟରେ ତ୍ରୁଟି କରିବି । ଯଦିଓ ସ୍ଥାନୀୟ ପୋଲିସ ଜରିଆରେ

କର୍ତ୍ତୃପକ୍ଷଙ୍କୁ ଲବଣ ସତ୍ୟାଗ୍ରହର ସିଦ୍ଧାନ୍ତ ବିଷୟରେ ସମ୍ବାଦ ଦିଆହୋଇଥାଏ, ତାହା ମୋ ନାମରେ ଦିଆନଯାଇ ଅନ୍ୟଜଣେ କର୍ମୀଙ୍କ ନାମରେ ଦିଆଯାଇଥିଲା । କାରଣ ରମା ଦେବୀଙ୍କର କ୍ଷେତ୍ର ଉପରେ ଆବିର୍ଭାବ ଓ ପ୍ରତ୍ୟକ୍ଷ ଦାୟିତ୍ୱ ଗ୍ରହଣ ନକରିବା ଯାଏ, ସମସ୍ତ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥିଲା । ହଠାତ୍ ମୋତେ ଗିରଫଦାରୀଦ୍ୱାରା କାବୁ କରିଦେଲେ ଅବାଞ୍ଛିତ ପ୍ରତିକ୍ରିୟା ସୃଷ୍ଟିହୋଇଯିବା ଆଶଙ୍କାରେ ମୁଁ ଟିକିଏ ଅଲଗା ରହି ସାବଧାନତାର ସହିତ, ସତର୍କତାର ସହିତ ସତ୍ୟାଗ୍ରହ ପରିଚାଳନା କରିବା ବିଚାର ଓ ସିଦ୍ଧାନ୍ତ କରି ବସିଥାଏ । ସେହି ଦୃଷ୍ଟିରୁ ସେଦିନ ସତ୍ୟାଗ୍ରହୀବାହିନୀ ସହିତ 'ଜୟଯାତ୍ରା' (ସେଦିନ ଯାତ୍ରାର ଏହିପରି ନାମକରଣ ଥିଲା)ରେ ଯୋଗନଦେଇ ଅନ୍ୟ ପଥରେ ଆସି ପାଟପୁର ହାଟରେ ପହଞ୍ଚିଲି । କିନ୍ତୁ ସେ ବିରାଟ, ଉଚ୍ଛ୍ୱସିତ, ଆକାଂକ୍ଷିତ ଜନତାର ସମାଗମ ଦେଖି ମୋ ପ୍ରକଳ୍ପିତ ଆଶଙ୍କା କୁଆଡ଼େ ମିଳେଇଗଲା । ଯେତେବେଳେ ଜନତା ମୋତେ ଶତ ସହସ୍ର ବେଢ଼ରେ ବେଢ଼ିଗଲେ, ତେତେବେଳେ ଶ୍ରୀରାମଚନ୍ଦ୍ରଙ୍କୁ ହନୁମାନ ପ୍ରଥମଥର ସାକ୍ଷାତ୍ କଲା ପରେ ଯେପରି ତାଙ୍କ ବିକ୍ରମ ସହସ୍ରକୋଟି ଗୁଣରେ ବଢ଼ିଯାଇଥିଲା, ସେହିପରି ମୋର ସମସ୍ତ ଗ୍ଲାନି କୁଆଡ଼େ ଉଭେଇଗଲା, ପରନ୍ତୁ ଏକ ଅଚିନ୍ତନୀୟ ପ୍ରେରଣାରେ ମୋର ସମସ୍ତ ଅସ୍ତିତ୍ୱ ଅନୁପ୍ରାଣିତ, ଉନ୍ମାଦିତ ଓ ଉଦ୍‌ବେଳିତ ହୋଇଉଠିଲା । ମନେପଡ଼ିଲା ଗାନ୍ଧିଜୀଙ୍କ ସତ୍ୟାଗ୍ରହ ସମ୍ବନ୍ଧୀୟ ଉପଦେଶ– ''ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିବା ଖୁବ୍ ସହଜ, କାରଣ ସ୍ୱଳ୍ପ ଆୟୋଜନରେ ଜନତା ପକ୍ଷରୁ ଅକଳନ୍ତା ଅପ୍ରତ୍ୟାଶିତ ଉତ୍ସାହ ଉଦ୍ଦୀପନା, ଉନ୍ମାଦନା ଆଗେଇ ଆସେ । କିନ୍ତୁ ଏହାକୁ ଠିକ୍‌ଠିକ୍‌ଭାବେ ନିୟନ୍ତ୍ରଣ କରାଯାଇନପାରିଲେ, ତାହା ହିଂସାତ୍ମକ ପରିଣାମର ସମ୍ମୁଖୀନ ହେବା ନିଶ୍ଚିତ ଅଟେ ।'' ତେଣୁ ସତ୍ୟ, ଅହିଂସାର କବଚଦ୍ୱାରା ଏହି ବିପ୍ଳବର ବିଶେଷତ୍ୱ ସୁରକ୍ଷିତ ଓ ସୁନିୟନ୍ତ୍ରିତ କରାଯାଇ ନପାରିଲେ ଆମ ଆନ୍ଦୋଳନର ଲକ୍ଷ୍ୟ ସର୍ବଥା ବ୍ୟର୍ଥ ହୋଇଯିବ । ସେହି ବିରାଟ ସଭାରେ ସତ୍ୟ, ଅହିଂସାର ସୂକ୍ଷ୍ମ ଓ ସ୍ଥୂଳ ମର୍ମ ଯଥାସମ୍ଭବ ବୁଝାଇ ତହିଁରେ ସଂକଳ୍ପନିଷ୍ଠ ହେବାକୁ ଓ ଶପଥ ଗ୍ରହଣ କରିବାକୁ ଜନତାକୁ ଅନୁନୟ କଲି । ଠିକ୍ ଏହି ସମୟରେ ପୂର୍ବ ଦିଗ୍‌ବଳୟ ଧ୍ୱନିତ ଓ ପ୍ରତିଧ୍ୱନିତ କରି ସତ୍ୟାଗ୍ରହୀବାହିନୀଙ୍କ ସ୍ଲୋଗାନର ହୁଙ୍କାର ଶୁଣାଗଲା । ସଭାର ସମସ୍ତ ଶୃଙ୍ଖଳା ଭାଙ୍ଗି ସମସ୍ତ ଜନତା ସ୍ୱାଗତ କରିବାକୁ ବାହିନୀ ଦିଗରେ ଧାବିତହେଲେ । ହାଟରେ ବାହିନୀ ପ୍ରବେଶ କରିବା ପରେ ଗୋଧୂଳି ଲଗ୍ନ ପର୍ଯ୍ୟନ୍ତ ପୁନର୍ବାର ସଭା ଚାଲିଲା । ସେ ଅଞ୍ଚଳର ସଂଖ୍ୟାଗରିଷ୍ଠ, ଶୃଙ୍ଖଳାବଦ୍ଧ, ତେଜୀୟାନ କୈବର୍ତ୍ତଗୋଷ୍ଠୀ ସହିତ ନାନାକ୍ଷେତ୍ରରେ ମୋର ଅନୁରକ୍ତି ଓ ମୋପ୍ରତି ସେମାନଙ୍କର ଆଶାତୀତ ଆନୁଗତ୍ୟ ଥିବାରୁ ସେଠାରେ ଏ ଆନ୍ଦୋଳନ ଆରମ୍ଭ ହୋଇଥିଲେ ଅଧିକ ଫଳପ୍ରଦ ହେବାର ଯଥେଷ୍ଟ ସମ୍ଭାବନା ଥିବାରୁ ସେଠାରେ ଆଗେ

କାହିଁକି ଆରମ୍ଭନହେଲା ବୋଲି ପ୍ରଶ୍ନ ଉଠିଲା । କିନ୍ତୁ ଏ ଅଭିନବ ଯୁଦ୍ଧରେ ଶକ୍ତି ଅପେକ୍ଷା ଭକ୍ତି, ଧୂର୍ତ୍ତତା ଅପେକ୍ଷା ସତ୍ୟ, ତେଜ ଅପେକ୍ଷା ଧୈର୍ଯ୍ୟ, ବିପ୍ଳବ ଅପେକ୍ଷା ଶାନ୍ତି ଓ ଭୋଗ ଅପେକ୍ଷା ତ୍ୟାଗ ଆୟୁଧମାନଙ୍କର ପ୍ରୟୋଗ ଲୋଡ଼ା । ସାଧାରଣ ଜନତା ସ୍ତରରେ ଏହାର ସୁଲଭତା ଅଧିକ ପ୍ରମାଣିତ ହୋଇଥିବାରୁ ଉନ୍ନତ କଟକ ଜିଲାର ସର୍ବାପେକ୍ଷା ଅନୁନ୍ନତ ଅଞ୍ଚଳରେ ଏହାପାଇଁ କୁରୁକ୍ଷେତ୍ର ବଛାଯାଇଛି ଏବଂ ଏହାର ସଫଳତା ନିର୍ଭର କରୁଛି ଜନତାର ସଦାଚାରରେ । ସତ୍ୟ, ଅହିଂସା ମନ୍ତ୍ରରେ ପ୍ରତ୍ୟେକେ ଦୀକ୍ଷିତ ହେବାକୁ ଏ ସଭାରେ ସଂକଳ୍ପ କରନ୍ତୁ, କାୟମନୋବାକ୍ୟରେ ତାହା ପାଳନ କରିବାକୁ ଶପଥ କରନ୍ତୁ, ତାହା ହେଲେ ଦେଖିବେ ଏହି ଅନୁନ୍ନତ ତଳମାଳରୁ ବିରାଟ ବ୍ରିଟିଶ ଶକ୍ତି ଉଚ୍ଛେଦର ସୂତ୍ରପାତ ଆରମ୍ଭ ହୋଇଯିବ । ଜନତା ଘନଘୋର ଘୋଷରେ ସଂକଳ୍ପ ଘୋଷଣା କଲେ ଏବଂ ସଭା ଭଙ୍ଗକାରି ବାହିନୀ ଗଡକୁଜଙ୍ଗ ଅଭିମୁଖରେ ଯାତ୍ରାକଲେ । ରାତ୍ରି ଅର୍ଦ୍ଧପ୍ରହର ଅତୀତ ହେବା ପୂର୍ବରୁ, 'ଜୟଯାତ୍ରା' ଗଡ଼କୁଜଙ୍ଗର ବିଖ୍ୟାତ ଶ୍ରୀ ଶ୍ରୀ କୁଞ୍ଜବିହାରୀ ମନ୍ଦିରରେ ପ୍ରବେଶକରି ସେଦିନପାଇଁ ଉଦ୍‌ଯାପିତ୍ ହେଲା ।

ରାତ୍ରି ଦ୍ୱିପ୍ରହର ପୂର୍ବରୁ ମନ୍ତ୍ରଣା-ସଭା ବସି ସ୍ଥିର ହେଲା— ପରଦିନ ପ୍ରଚାରକାର୍ଯ୍ୟ ନିବିଡ଼ଭାବେ ଚଳାଇ, ତହିଁ ପରଦିନ ଅପରାହ୍ଣରେ ଲୁଣମାରି ଆଇନଭଙ୍ଗ କରାଯିବ ।

—

# ଆକ୍ରମଣ ଓ ପ୍ରତ୍ୟାକ୍ରମଣର କାହାଣୀ-୧

ଗଡ଼କୁଜଙ୍ଗ ଗ୍ରାମର ଶ୍ରୀ କୁଞ୍ଜବିହାରୀ ମନ୍ଦିରରେ ସତ୍ୟାଗ୍ରହୀ ସେନାଶିବିର ସ୍ଥାପିତ ହୋଇଥିଲା ଓ ଶୃଙ୍ଖଳାବଦ୍ଧଭାବେ କ୍ଷୁଦ୍ର ସୈନିକ ଶ୍ରେଣୀଟି ଯେଉଁ ଯେଉଁ ଗ୍ରାମ ପ୍ରଦକ୍ଷିଣ କରି ଜୟଯାତ୍ରା କରିଥିଲେ, ସବୁଠାରେ ଆଶାତୀତ ପ୍ରଭାବ ପକାଇବାକୁ ସମର୍ଥ ହୋଇଥିଲେ । ପରଦିନ ପ୍ରତ୍ୟକ୍ଷ ଲବଣ ସତ୍ୟାଗ୍ରହ ସଂଗ୍ରାମରେ ଓହ୍ଲାଇବାକୁ ସେହି ଐତିହାସିକ ଅକ୍ଷୟପୂର୍ଣ୍ଣିମା ରାତ୍ରିରେ ସତ୍ୟାଗ୍ରହ ସମର-ସଭାରେ ସିଦ୍ଧାନ୍ତ ହୋଇଗଲା ।

ଏହି ଗଡ଼କୁଜଙ୍ଗ ଯଦିଓ ଆଜି ଗୋଟିଏ ସାଧାରଣ ଗ୍ରାମରେ ପରିଣତ ହୋଇଗଲାଣି, କିନ୍ତୁ କୁଜଙ୍ଗ ଇତିହାସରେ ଏହାର ଗୁରୁତ୍ୱ ଯେ କେତେ ଅଧିକ, ତାହା ଊଣାଅଧିକ ପ୍ରତ୍ୟେକ କୁଜଙ୍ଗ ଅଧିବାସୀ ଅନୁଭବ କରିପାରନ୍ତି । ଅନ୍ତତଃ ଭବିଷ୍ୟତ୍ ବଂଶଧରମାନଙ୍କ ଧାରଣାପାଇଁ ସେ ବିଷୟରେ ଯତ୍କିଞ୍ଚିତ ଆଲୋଚନା କଲେ ଅପ୍ରାସଙ୍ଗିକ ହେବନାହିଁ ।

ଯେଉଁ ସମୟର କଥା ଲେଖାଯାଉଛି, ସେତେବେଳେ ଯଦିଓ ଏ ରାଜ୍ୟଟିର ରାଜନୈତିକ କ୍ଷେତ୍ରଫଳ ୩୬୯ ବର୍ଗମାଇଲ ଥିଲା, କିନ୍ତୁ ଭାରତର ପରାଧୀନତା ପୂର୍ବରୁ ମୋଗଲ ଓ ମରହଟ୍ଟାମାନଙ୍କ ଓଡ଼ିଶା ଶାସନ କାଳରେ ଏହାର କ୍ଷେତ୍ରଫଳ ଏକହଜାର ବର୍ଗମାଇଲରୁ ଊଣା ନଥିଲା । ଯେଉଁ ଗଡ଼କୁଜଙ୍ଗ ଗ୍ରାମଟି ଆମ ଆଲୋଚନାର ବିଷୟବସ୍ତୁ, ତାହା ଗୋଟିଏ ସୁରକ୍ଷିତ ଦୁର୍ଗ ଥିଲା ଏବଂ ସେହି ଐତିହାସିକ ନାମଟିରେ ସମଗ୍ର ରାଜ୍ୟଟି ନାମିତ ହୋଇଥିଲା । ଏହି ଗଡ଼କୁଜଙ୍ଗ ଦୁର୍ଗ ମଧ୍ୟରୁ ଦୁର୍ଦ୍ଧାନ୍ତ ଷଣ୍ଢ ରାଜାମାନେ ସମଗ୍ର ରାଜ୍ୟଟି ଶାସନ ବା ପାଳନ କରୁଥିଲେ । ମୋଗଲମାନେ କଟକରୁ କାଠଯୋଡ଼ି ବା ଦେବୀନଦୀ ସାହାଯ୍ୟରେ ଏକାଧିକ ବାର ଅଭିଯାନ ଚଳାଇ ତତ୍କାଳୀନ ଷଣ୍ଢରାଜାଙ୍କଦ୍ୱାରା ଜଳଯୁଦ୍ଧରେ ସର୍ବତୋଭାବେ ପରାଭୂତ ହୋଇ ପଳାଇଯାଇଥିଲେ ଏବଂ ଜଟାଧର ମୁହାଣସ୍ଥିତ 'ପଠାଣଡ଼ିଆ' ଜଳଯୁଦ୍ଧରେ ଦୁର୍ଦ୍ଧର୍ଷ ଷଣ୍ଢରାଜାଙ୍କର ଓ କୁଜଙ୍ଗ ନାବିକମାନଙ୍କର ବିକ୍ରମ ସମ୍ଭାଳିନପାରି ଚିରକାଳପାଇଁ କୁଜଙ୍ଗ ଜୟ ଆଶାରୁ ନିବର୍ତ୍ତି ରହିଥିଲେ । ସେ ବିଜୟ ସ୍ମୃତି 'ପଠାଣଡ଼ିଆ'ର ଭୌଗୋଳିକ ଅବସ୍ଥିତି ଥିବାଯାଏ କୁଜଙ୍ଗ ଲୋକେ ଭୁଲିପାରିବେନାହିଁ । ରାଜପୁତ୍ କୁଳତିଳକ ମହାବୀର ମହାରାଣା ପ୍ରତାପଙ୍କ ହଳଦିଘାଟ ସମରାଙ୍ଗନ ଦାବାଗ୍ନି ହେଲେ, ତାହା ତୁଳନାରେ ପଠାଣଡ଼ିଆ ସ୍ଫୁଲିଙ୍ଗ ହୋଇପାରେ, କିନ୍ତୁ ହଳଦିଘାଟରେ ମହାରାଣାଙ୍କ ପରାଭବ ଲାଞ୍ଛିତ ଥିବାସ୍ଥଳେ ପଠାଣଡ଼ିଆ ମୋଗଲମାନଙ୍କ ପରାଭବ ବିଷୟରେ ଇତିହାସ ନୀରବ । ଏହାର

ଏକମାତ୍ର କାରଣ, ସବୁସମୟରେ ଇତିହାସ ରାଜନୀତିଦ୍ୱାରା ନିୟନ୍ତ୍ରିତ ହେଉଥିଲା ଏବଂ ବର୍ତ୍ତମାନ ହେଉଛି ମଧ୍ୟ । ମୋଗଲ ବାଦସାହି ଅମଳରେ କିପରି ଇତିହାସ ଲେଖିବ ଯେ କୁଜଙ୍ଗ ଭଳି ଗୋଟିଏ ଛୋଟ ସାମନ୍ତରାଜ୍ୟ ନିକଟରେ ବିଶ୍ୱବିଜୟୀ ମୋଗଲବାହିନୀ ପରାଭବ ସ୍ୱୀକାର କରିଥିଲା ?

ଏହି 'କୁଜଙ୍ଗ' ନାମଟି କିପରି ହେଲା ବର୍ତ୍ତମାନ ଟିକିଏ ଆଲୋଚନା କରାଯାଉ । ଏହି ଅଞ୍ଚଳଟିର ନୈସର୍ଗିକ ଶୋଭା ନିରୀକ୍ଷଣ କଲେ ଜଣାଯାଏ, ଏକଦା ଏହା କୁଞ୍ଜକାନନ ସମୃଦ୍ଧ ଥିଲା । ସମୁଦ୍ର ଉପକୂଳର ଶତ ଶତ ଜୁଆରିଆ ନଦୀଦ୍ୱାରା ପ୍ରତ୍ୟହ ଦୁଇଥର ବିଧୌତ ହେବାଦ୍ୱାରା ମଞ୍ଜୁଳ କୁଞ୍ଜବନଦ୍ୱାରା ସମସ୍ତ ରାଜ୍ୟଟି ନିବିଡ଼ ଥିବାରୁ ଅତୀତ ଯୁଗରେ ଏହାର ନାମକରଣ ହେଲାବେଳେ କୁଞ୍ଜବନର ବିଶେଷତ୍ୱ ଲକ୍ଷଣ କରାଯାଇ ଏହାର ନାମ 'କୁଞ୍ଜଙ୍ଗ' ରଖାଯାଇଥିଲା । କ୍ରମଶଃ ଏହି ପ୍ରକୃତ 'କୁଞ୍ଜଙ୍ଗ' ନାମ ବିକୃତ ହୋଇ 'କୁଜଙ୍ଗ' ଉଚ୍ଚାରିତ ହୋଇଥିଲା । ଯେତେବେଳେ କଳାପାହାଡ଼ ଶ୍ରୀକ୍ଷେତ୍ରରୁ ଦାରୁବିଗ୍ରହମାନଙ୍କୁ ନେଇଯାଇ ଗଙ୍ଗାକୂଳର କୌଣସି ସ୍ଥାନରେ ଦାହ କରୁଥିଲା, ତେତେବେଳେ ଗଙ୍ଗାସ୍ନାନ ଯାତ୍ରୀ ବିଶର ମହାନ୍ତି ଜଣେ ଭକ୍ତ ଅର୍ଦ୍ଧଦଗ୍ଧ ବିଗ୍ରହମାନଙ୍କରୁ ନାଭିକମଳ ଚୋରାଇଆଣି ସମୁଦ୍ର କୂଳେ କୂଳେ ପୁରୀ ଅଭିମୁଖରେ ଧାବିତ ହେଉ ହେଉ ତାଙ୍କୁ ଏହି ଅଞ୍ଚଳରେ ସ୍ୱପ୍ନାଦେଶ ହେଲା ଯେ ମ୍ଳେଚ୍ଛମାନଙ୍କ ପ୍ରାଦୁର୍ଭାବ ନକମିବାଯାଏ ଶ୍ରୀକ୍ଷେତ୍ରକୁ ନଯାଇ ଏହି କୁଞ୍ଜଶୋଭିତ ଅଞ୍ଚଳଟିରେ ଶ୍ରୀକ୍ଷେତ୍ରର ସମସ୍ତ ଲୀଳା ପ୍ରକଟ କରାଯିବ ଏବଂ କୁଞ୍ଜବନର ବିଶେଷତ୍ୱ ଯୋଗୁଁ ବିଗ୍ରହମାନଙ୍କ ନାମ 'କୁଞ୍ଜବିହାରୀ' ରଖାଯିବ । ତେଣୁ ସ୍ୱପ୍ନାଦେଶ ଅନୁଯାୟୀ ସେଠାରେ ବିଗ୍ରହ ପ୍ରତିଷ୍ଠା କରାଗଲା ଓ 'କୁଞ୍ଜଙ୍ଗ' ନାମାନୁସାରେ 'କୁଞ୍ଜବିହାରୀ' ରଖାଯାଇ ଏହି ନୀରବ ଲୋକାଳୟହୀନ ସାନ୍ଦ୍ର କୁଞ୍ଜବନ ବେଷ୍ଟିତ ଅଞ୍ଚଳଟି ଶ୍ରୀକ୍ଷେତ୍ରର ବୃନ୍ଦାବନ ପରି ଲୀଳାରେ ମୁଖରିତ ହୋଇଉଠିଲା । ଅବଶ୍ୟ ଯଥାସମୟରେ ଏଠାରୁ ନାଭିକମଳ ପୁନଶ୍ଚ ଶ୍ରୀଧାମକୁ ବହୁକାଳ ପରେ ପ୍ରେରିତ ହେଲେ ସତ, କିନ୍ତୁ ଏହି ଅପୂର୍ବ ଘଟଣାରେ ସ୍ମୃତିସ୍ୱରୂପ ସେ ବିଗ୍ରହ ସେହିଠାରେ ରହିଗଲେ ଏବଂ କୁଜଙ୍ଗ ରାଜାମାନଙ୍କ ଦାୟିତ୍ୱରେ ଆରମ୍ଭ ହୋଇଥିବା ଲୀଳା ଓ ଯାନିଯାତ୍ରାଦି ଯଥାସମ୍ଭବ ରୀତିରେ ପରିଚାଳିତ ହେବାକୁ ଲାଗିଲା । କୁଜଙ୍ଗର ଖଣ୍ଡରାଜା ଓ ପ୍ରଜାମାନଙ୍କର ଅଧିଷ୍ଠିତ ଦେବତାଭାବେ ଶ୍ରୀ କୁଞ୍ଜବିହାରୀ ଅର୍ଚ୍ଚିତ ହେବାକୁ ଲାଗିଲେ ଏବଂ ବିଗ୍ରହମାନଙ୍କପାଇଁ ଗୋଟିଏ ପ୍ରକାଣ୍ଡ ପାଷାଣ ମନ୍ଦିର ମଧ୍ୟ ନିର୍ମାଣ କରାଗଲା । ମାତ୍ର କେତେ ବର୍ଷ ପୂର୍ବେ ଯଦିଓ ମନ୍ଦରଟି ଭାଙ୍ଗିପଡ଼ିଛି, ଯଦିଓ କୁଜଙ୍ଗ ରାଜ୍ୟ ଓ ରାଜା ନାନା ଘାତପ୍ରତିଘାତ ମଧ୍ୟରେ ନାମକୁ ମାତ୍ର ରହିଯାଇଛନ୍ତି, ତଥାପି ଲୋକମାନଙ୍କର ବିଗ୍ରହ ପ୍ରତି ଅଚଳା ଭକ୍ତି ଅଟଳ ଅଛି ଏବଂ ମନ୍ଦିର ସଂସ୍କାର ଉଦ୍ୟମରେ ଲୋକମାନଙ୍କ ପକ୍ଷରୁ ଆଭିମୁଖ୍ୟ ଗ୍ରହଣ କରାଯାଇଛି ।

ଲବଣ ସତ୍ୟାଗ୍ରହପାଇଁ ଏହି ଐତିହାସିକ ମନ୍ଦିର ପୀଠଟି ଶିବିର ବନିଯାଇଥିଲା ଓ ସତ୍ୟାଗ୍ରହୀମାନେ ମନ୍ଦିର ବେଢ଼ାରେ ରାତ୍ରିଯାପନ କରି ପରଦିନ ପ୍ରତ୍ୟୁଷରୁ ଗଭୀର ବନ ମଧ୍ୟରେ ଲୁଣମାଟି ଆହରଣପାଇଁ ପ୍ରବେଶ କଲେ । ମଧ୍ୟାହ୍ନ ପୂର୍ବରୁ ଲୁଣମାଟି ଘେନି ଶୃଙ୍ଖଳାବଦ୍ଧଭାବେ ସତ୍ୟାଗ୍ରହବାହିନୀ ଫେରିବାବେଳକୁ ଲୋକମାନଙ୍କ ମଧ୍ୟରେ ଯେଉଁ ଉତ୍ସାହ ଦେଖାଗଲା ତାହା ବର୍ଣ୍ଣନାନୀତ । ବୈଶାଖର ସେହି ପ୍ରଚଣ୍ଡ ଖରାରେ ଦାଣ୍ଡର ଉତ୍ତପ୍ତ ବାଲିରେ ଗୋଡ଼ଦେବାକୁ ଭୟଲାଗୁଥାଏ, ଅଥଚ ଗ୍ରାମର ଆବାଳ-ବୃଦ୍ଧ-ବନିତା ସତ୍ୟାଗ୍ରହୀମାନଙ୍କ ସହିତ ଚାଲିଥାନ୍ତି, ସ୍ଲୋଗାନ୍‌ର ଗୁରୁଗମ୍ଭୀର ନାଦରେ ଯୋଗଦେଉଥାନ୍ତି, ସତେ ଯେପରି ଯୁଦ୍ଧଜୟୀ ସେନାମାନଙ୍କୁ ପାଛୋଟି ନେବାର ଆଦର ଅଭ୍ୟର୍ଥନା ।

ଯଥାସମୟରେ ଲୁଣମାଟିରୁ ଝରା ବସାଇବା ପ୍ରକ୍ରିୟା ଅନଭିଜ୍ଞ ସତ୍ୟାଗ୍ରହୀମାନଙ୍କୁ ଗ୍ରାମବାସୀମାନେ ଶିଖାଇଦେଲେ ଏବଂ ସେହି ସ୍ୱଚ୍ଛ ଝରା ଜଳକୁ ସିଝାଇଲେ କିପରି ଶୁଭ୍ର ଲବଣ ଉତ୍ପାଦିତ ହୁଏ, ତାହା ମଧ୍ୟ ତାଲିମ ଦେବାକୁ ଅଧିକ ସମୟ ଲାଗିଲାନାହିଁ । ଲବଣ ଉତ୍ପାଦିତ ହେଲା ଏବଂ ସଙ୍ଗେ ସଙ୍ଗେ ଛୋଟ ଛୋଟ ପୁଡ଼ିଆ କରାଯାଇ ହାଟବାଟରେ ବେଆଇନୀ ଲବଣ ବିକ୍ରି ହେବାପାଇଁ ପ୍ରେରିତ ହେଲା । ପ୍ରଚାର ଉଦ୍ଦେଶ୍ୟରେ ଏ ପ୍ରଣାଳୀ ଅନୁସୃତ ହୋଇଥାଏ ଏବଂ ଲୋକେ ଅତ୍ୟନ୍ତ ଆଗ୍ରହରେ ଅଧିକ ମୂଲ୍ୟଦେଇ ପୁଡ଼ିଆ ଲୁଣ କିଣିନେଉଥାନ୍ତି । ଏହିପରି ପ୍ରାୟ ତିନିଦିନ ବିତିଗଲା ।

କିନ୍ତୁ କାହିଁ– ଆକ୍ରମଣ ତ ହେଲା, ପ୍ରତି ଆକ୍ରମଣ କାହିଁ ? ପ୍ରତ୍ୟାକ୍ରମଣ ନହେଲେ ଆକ୍ରମଣର ଯେ ଗୁରୁତ୍ୱ କମିଯାଉଛି । ତିନିଦିନ ପରେ ଶୁଣାଗଲା ସଦର ଏସ୍.ଡ଼ି.ଓ. ମାଧବଚନ୍ଦ୍ର ମିଶ୍ର, ପୁଲିସ ଫୌଜ ସମଭିବ୍ୟାହାରରେ କୁଜଙ୍ଗ ସଦର କଚେରୀରେ ପହଞ୍ଚିଲେଣି । ଆମ୍ଭମାନଙ୍କ ଉଦ୍ଦେଶ୍ୟ ସଫଳ ହେଲା ବୋଲି ଆମ୍ଭମାନଙ୍କ ମନରେ ନିରତିଶୟ ଆନନ୍ଦ ହେବାର କଥା, କାରଣ ଆମ୍ଭମାନଙ୍କର ଘୋର ଆଶଙ୍କା ଥିଲା, ଯଦି ସରକାରୀ ପକ୍ଷ କୌଣସି ବାଧା ନଦିଅନ୍ତି, ଆମ୍ଭେମାନେ ଗୋଟିଏ ପକ୍ଷ ଲମ୍ଫଝମ୍ଫ କରିବାର ଅର୍ଥ କ'ଣ ହେବ ? ଲୋକଙ୍କ ମନରେ କି ପ୍ରଭାବ ପଡ଼ିବ ? ସେହି ଯେଉଁ ଗଳ୍ପଟି ଅଛି– ମଶା, ଷଣ୍ଢ ପିଠିରେ ବସି ରକ୍ତ ଶୋଷି ଶୋଷି ଯେତେବେଳେ ହାଲିଆ ହେଲା, ଷଣ୍ଢକୁ ପଚାରିଲା– ତୁ କାହିଁକି ବିରକ୍ତ ହେଲୁନାହିଁ ବୋଲି । ଷଣ୍ଢ ଉତ୍ତରଦେଲା– ତୁ ସେତେବେଳୁ ବସି କଣ କରୁଛୁ ମୋତେ ଜଣାନାହିଁ । ମଶା ଅତ୍ୟନ୍ତ ଅପଦସ୍ଥ ହେଲା । ଆମ୍ଭମାନଙ୍କ ଦଶା ଠିକ୍ ସେହିପରି ହେବ ନା କଣ ? ଯାହାହେଉ 'ମାଧିଆନା' (ଲୋକେ ସେହିପରି ଡାକୁଥିଲେ)ଙ୍କ ଆବିର୍ଭାବ ଆମ୍ଭମାନଙ୍କ ପକ୍ଷେ ଯଥେଷ୍ଟ ସାନ୍ତ୍ୱନାର କାରଣ ହେଲା ।

କୁଜଙ୍ଗ କଚେରୀରେ ବସି ସେମାନଙ୍କର ପ୍ରତିଆକ୍ରମଣର ସବୁ ବ୍ୟବସ୍ଥା ଠିକ୍ ହୋଇଗଲା– ଅବଶ୍ୟ ଖୁବ୍ ଗୁପ୍ତରେ । କାରଣ ଯଦିଓ ଆମ ପକ୍ଷରୁ ଗୁପ୍ତଚର

ସ୍ୱେଚ୍ଛାସେବକ ସେଠାରେ ଥିଲେ କିନ୍ତୁ କୌଣସି ଖବର ପାଇପାରିଲେନାହିଁ । ରାତାରାତି ଚନ୍ଦ୍ର ଅସ୍ତମାତ୍ରେ ସେମାନଙ୍କ ଅଭିଯାନ ଚାଲିଲା ଏବଂ ରାତି ପାହିବାବେଳକୁ ଗଡ଼କୁଜଙ୍ଗ ଗ୍ରାମଟି ବେଶ ମୁଖରିତ ହୋଇଉଠିଛି । ଦୁଇଟି ବଡ଼ ଘୋଡ଼ା ସମେତ ତିରିଶ ଚାଳିଶ ଜଣ ଚୌକିଦାର, କୋଡ଼ିଏ ଚବିଶଜଣ ପୁଲିସ, ଦଶ ପନ୍ଦରଜଣ ଜମିଦାରଙ୍କ ଚପରାସୀ, କେତେଜଣ ଅଧସ୍ତନ କର୍ମଚାରୀ, ସର୍ବୋପରି ସଦର ଏସ.ଡି.ଓ. ରାୟସାହେବ ମାଧବ ଚନ୍ଦ୍ର ମିଶ୍ର (ଲୁଣମରା ପରେ ରାୟବାହାଦୁର ହେଲେ) ଓ ରାୟବାହାଦୁର ରାଜେନ୍ଦ୍ର କୁମାର ସେନ ଯିଏକି ମହାରାଜାଧିରାଜ ବାହାଦୁର ବର୍ଦ୍ଧମାନଙ୍କର କୁଜଙ୍ଗ ସବ୍-ମେନେଜର, ଉପସ୍ଥିତ ଥିଲେ । ଗଡ଼କୁଜଙ୍ଗରେ ଗୋଟିଏ ମଠ ଅଛି ଏବଂ ମଠର ମହନ୍ତ ଭାଗବତ ଦାସ ଅତ୍ୟନ୍ତ ରାଜଭକ୍ତ । ଏହି ରାଜଭକ୍ତି ବଳରେ ସେ ଅନେକ ବିଷୟବାସନା କରିଯାଇଥିଲେ । ଗାଈ, ମଇଁଷି, ପାନବରଜ, ଚାଷବାସ ଇତ୍ୟାଦିରୁ ମଠର ପ୍ରଭୂତ ଆୟ ହେଉଥିଲା । କିନ୍ତୁ ସରକାରୀ କୃପାଦୃଷ୍ଟି ଅଭାବରୁ ସେ କୌଣସି ସରକାରୀ ଦାୟିତ୍ୱରେ ନଥିଲେ । ନିକଟବର୍ତ୍ତୀ ଏକ ବଡ଼ଗ୍ରାମ ନୂଆଗାଁର ବଡ଼ଲୋକ ରାମଚନ୍ଦ୍ର ସାମନ୍ତରା ସେ ଇଉନିୟନର ପ୍ରେସିଡେଣ୍ଟ ଥିଲେ ଏବଂ ଘଟଣାକ୍ରମେ ମୋ ସହିତ ତାଙ୍କର ନିବିଡ଼ ଘନିଷ୍ଠତା ଥିଲା । ଏହି ରାମଚନ୍ଦ୍ର ସାମନ୍ତରାଙ୍କ ପ୍ରେସିଡେଣ୍ଟ ପଦପାଇଁ ଗଡ଼କୁଜଙ୍ଗ ମହନ୍ତ ମହାରାଜା ଭାଗବତ ଦାସଙ୍କର ଅନୁପମ ଲାଳସା ଥିଲା ଏବଂ ସେଥିପାଇଁ ସେ କୁଜଙ୍ଗ କର୍ତ୍ତୃପକ୍ଷଙ୍କ ନିକଟରେ ବରାବର ପ୍ରାର୍ଥୀ ଥିଲେ । ଏତେଦିନେ ସୁବର୍ଣ୍ଣସୁଯୋଗ ଘଟିଲା । ସ୍ୱୟଂ ଏସ.ଡି.ଓ. ଆଜି ତାଙ୍କର ଅତିଥି ହେଲେ । ଦରିଦ୍ର ନାରାୟଣଙ୍କ ସଙ୍ଗତ ମଠରେ ହେବାର କ୍ୱଚିତ୍ ଦେଖାଯାଏ । ଆଜି କିନ୍ତୁ ଅର୍ଗଳ ଖୋଲା । ସବୁ ଅନର୍ଗଳ ଆକାରରେ ବିତରଣ ଚାଲିଛି । ଏପରିକି ମହୋତ୍ସବର ଛିଟିକା ସତ୍ୟାଗ୍ରହୀ ଶିବିର ପର୍ଯ୍ୟନ୍ତ ଅବାଧରେ ପହଞ୍ଚିଗଲା । ଖବର ପାଇ ମୁଁ ବୁଝିଲାବେଳକୁ ଜାଣିପାରିଲି ସତ୍ୟାଗ୍ରହୀମାନଙ୍କପାଇଁ ଘାଟ, ବାଟ ସବୁ ବନ୍ଦ କରାଯିବାରୁ ନଦୀର ଅପର ପାର୍ଶ୍ୱରୁ ଯୋଗାଯୋଗ ବିଚ୍ଛିନ୍ନ ହୋଇଯାଇଛି । ଗ୍ରାମବାସୀମାନେ ତାହା ଜାଣିପାରି ସରକାରୀ ବିଭାଗପାଇଁ ଅବାରିତଭାବେ ବ୍ୟୟ ହେଉଥିବା ଖାଦ୍ୟସାମଗ୍ରୀମାନଙ୍କ ମଧ୍ୟରୁ କିୟଦଂଶ କୌଶଳକ୍ରମେ ଆଣି ସତ୍ୟାଗ୍ରହ ଶିବିରରେ ପହଞ୍ଚାଇ ଦେଇସାରିଛନ୍ତି । ଏହା କେତେଦୂର ଭଲ ହେଲା କି ଭୁଲ ହେଲା ବିଚାରିବା ଆଗରୁ ସମସ୍ତ ସାମଗ୍ରୀ ସତ୍ୟାଗ୍ରହୀମାନଙ୍କ ଉଦରସ୍ଥ ହୋଇସାରିଥିଲା । ଅବଶ୍ୟ ସରକାର ଓ ଜମିଦାରଙ୍କ ମିଳିତ ଶକ୍ତି ଘାଟବାଟ ବନ୍ଦକରିବାଦ୍ୱାରା ଆମର କିଛି କରିପାରିବେନାହିଁ, ତାହା ଆମ୍ଭମାନଙ୍କୁ ଜଣାଥିଲା । କାରଣ ଗ୍ରାମବାସୀମାନଙ୍କର ଶ୍ରଦ୍ଧା ସହାନୁଭୂତି ଆମ ପକ୍ଷରେ ଆଶାତୀତ ଥିଲା । ଆଜି ଲୋକଙ୍କ ମନରେ ସହାନୁଭୂତି ଉଦ୍ରେକ କରିବାପାଇଁ କର୍ମୀମାନେ କିମ୍ବିରିଆ ନଦୀ ପହଁରି ପାରହେବା,

ଶ୍ମଶାନରୁ ହାଣ୍ଡିଗୋଟାଇ ଭାତ ରାନ୍ଧିବା ଇତ୍ୟାଦିଭଳି କର୍ତ୍ତବ୍ୟ ତୁଳାଉଥିଲେ । ତାହା ଦେଖି ସରକାରୀ ପକ୍ଷକୁ ଲୋକେ ଏତେ ଛି-ଛାକର କଲେ ଯେ ସରକାରୀ ଲୋକେ ରାଗିଯାଇ ସତ୍ୟାଗ୍ରହୀଙ୍କ ସହିତ ସାଧାରଣ ଲୋକଙ୍କୁ ମଧ୍ୟ ନଦୀପାରି କରିବାରେ କଟକଣା ଆରମ୍ଭ କରିଦେଲେ । ଫଳରେ ଲୋକେ ଅଯଥା ହଇରାଣ ହେଉଥିବା ଆମ୍ଭମାନଙ୍କ କାନକୁ ଗଲା ଓ କଣ କଲେ ଲୋକଙ୍କୁ ଅସୁବିଧାରୁ ତ୍ରାହି ମିଳିବ ସେ ଉପାୟ ଉଦ୍ଭାବନପାଇଁ ସତ୍ୟାଗ୍ରହୀମାନଙ୍କର ସଭା ବସିଲା । ସଭାରେ ସ୍ଥିରହେଲା ନଦୀପାରି ଆବଶ୍ୟକ ହେଉନଥିବା ଅନ୍ୟ ଗୋଟିଏ ଅଞ୍ଚଳକୁ ଶିବିର ଘୁଞ୍ଚାଇ ଦିଆଯିବ । ଗ୍ରାମର ଲୋକେ ନେତାମାନଙ୍କୁ ଏ ଖବର ଜଣାଇଦେବାରୁ ସେମାନେ ନିରତିଶୟ ଦୁଃଖିତ ହେଲେ, କାରଣ ଏ ଗୌରବରେ ସେମାନଙ୍କ ଗ୍ରାମର କିଛି ଭାଗ ରହିବନାହିଁ । ଯାହାହେଉ ଏ ବ୍ୟବସ୍ଥାରୁ ସେମାନେ ସରକାରଙ୍କଠାରୁ କିଛି ଲାଭ ଉଠାଇବାପାଇଁ ଏସ.ଡି.ଓ.ଙ୍କୁ ଜଣାଇଲେ ଯେ "ସତ୍ୟାଗ୍ରହୀମାନଙ୍କୁ ଆମେ ଗ୍ରାମରେ ରଖିଦେବୁନାହିଁ । ଘାଟ ପାରିର ସୁବିଧା କରିଦେଲେ ସେମାନଙ୍କୁ ଘାଟ ପାରି କରିଦେବୁ ।" ଏସ.ଡି.ଓ. ଅତି ଆନନ୍ଦରେ ଘାଟପାରିର ଆଦେଶ ଦେଇ ଏସବୁ କୃତିତ୍ୱ ମହନ୍ତଙ୍କ ଉଦ୍ୟମରେ ହେଲା ବୋଲି ଧରିନେଲେ ଏବଂ ସଙ୍ଗେ ସଙ୍ଗେ ସତ୍ୟାଗ୍ରହୀଦଳନ କାର୍ଯ୍ୟରେ ଉଦାସୀନ ଥିବା ସ୍ଥାନୀୟ ପ୍ରେସିଡେଣ୍ଟ ନୂଆଗାଁର ରାମଚନ୍ଦ୍ର ସାମନ୍ତରାଙ୍କୁ ବରଖାସ୍ତ କରି ମହନ୍ତମହାରାଜଙ୍କୁ ପ୍ରେସିଡେଣ୍ଟ କାମରେ ବାହେଲ କରିଦେଲେ ।

ଯଥାସମୟରେ ସତ୍ୟାଗ୍ରହୀମାନେ ଶ୍ରେଣୀବଦ୍ଧ ହୋଇ ଗଡ଼କୁଜଙ୍ଗ ଗ୍ରାମରୁ ବାହାରିଲେ ଏବଂ ସେହି ଘାଟରେ ପାରିହୋଇ ପଶ୍ଚିମାଭିମୁଖରେ ଯାତ୍ରାକଲେ । ସତ୍ୟାଗ୍ରହୀମାନେ ଏଠାରେ କିଛି କରିନପାରି ନିରାଶାରେ ଫେରିଗଲେ ଭାବି କ୍ଷଣିକ ଜୟୋଲ୍ଲାସରେ ଉନ୍ମତ୍ତ ହୋଇ ସରକାରୀଦଳ ସେଦିନ ଗଡ଼କୁଜଙ୍ଗ ଗ୍ରାମରେ ନବନିଯୁକ୍ତ ପ୍ରେସିଡ଼େଣ୍ଟ ମହନ୍ତମହାରାଜ ଭାଗବତ ଦାସଙ୍କ ପ୍ରାସାଦରେ ଏକ ବଡ଼ ଭୋଜିର ଆୟୋଜନରେ ଲାଗିଲେ ଏବଂ ସତ୍ୟାଗ୍ରହୀମାନେ ନିଜ ଗନ୍ତବ୍ୟପଥରେ କୁଞ୍ଜକୋଠି ମୌଜାର ବିସ୍ତୃତ ଅରଣ୍ୟାନୀ ମଧ୍ୟରେ ପ୍ରବେଶକଲେ । ସେଠାରେ ମୋର ଗୋଟିଏ ଚାଷଘର ଥିଲା ଏବଂ ଚାଳିଶ ପଚାଶଜଣ ଲୋକ ଚଳିବାପାଇଁ ଯଥେଷ୍ଟ ସ୍ଥାନ ଥିଲା । ପାନୀୟଜଳର ଟିକିଏ ଅସୁବିଧା ଥିଲେ ମଧ୍ୟ ଅଳ୍ପ ଦୂରରେ ଭଲପାଣି ପଡୁଥିବାରୁ ସତ୍ୟାଗ୍ରହୀମାନେ ହାତେ ହାତେ ଖୋଳି ଚଳନୀୟଭାବେ ବ୍ୟବସ୍ଥା କରିନେଲେ । ଏ ସ୍ଥାନଟି ଗୁଳ୍ମବେଷ୍ଟିତ ନିବିଡ଼ କଣ୍ଟା ଜଙ୍ଗଲ ଥିଲା । ନିକଟରେ କୌଣସି ବଡ଼ ଗଛ ବା ଛାୟାଶ୍ରୟ ନଥିଲା । ନିକଟତମ କନାଗୁଳି ଗ୍ରାମ ଏକମାଇଲରୁ ଅଧିକ ଦୂର ଥିଲା । ସତ୍ୟାଗ୍ରହୀମାନଙ୍କର ଏ ସ୍ଥାନ ଖୁବ୍ ପସନ୍ଦ ହେଲା ଏହିଦୃଷ୍ଟିରୁ ଯେ, ଗଡ଼କୁଜଙ୍ଗପରି ଏଠାରେ ସରକାରୀ ଲୋକେ ମଉଜମଜଲିସିରେ ଲିପ୍ତ ରହିବାର କୌଣସି ସୁବିଧାନାହିଁ ।

ପରଦିନ ସକାଳେ ଜଣେ ବାର୍ତ୍ତାବହ ସେନାପତି ଦୁର୍ଯ୍ୟୋଧନ ମାଷ୍ଟରଙ୍କଠାରୁ ଖଣ୍ଡେ ପତ୍ର ନେଇ ଏସ୍.ଡ଼ି.ଓ.ଙ୍କ ନିକଟରେ ପହଞ୍ଚାଇଦେବାରୁ ସଙ୍ଗେ ସଙ୍ଗେ ସେମାନଙ୍କ ସୁଖସ୍ୱପ୍ନ ଭାଙ୍ଗିଗଲା ଓ ଶିବିର ଉଠାଇ ସରକାରୀପକ୍ଷ ସମସ୍ତେ କୁଞ୍ଜକୋଠି ଦିଗରେ ଧାବିତ ହେଲେ । ସେଠାରେ ପହଞ୍ଚି ଯେତେବେଳେ ଦେଖିଲେ ଘର ନାହିଁ, ଗ୍ରାମ ନାହିଁ, ଜଳ ନାହିଁ କିମ୍ବା ଛାୟା ନାହିଁ, ସେତେବେଳେ ଅନୁଭବ କଲେ ସତ୍ୟାଗ୍ରହୀମାନଙ୍କ ସ୍ଥାନ ପରିବର୍ତ୍ତନ କରିବାରେ କି କୌଶଳ ନିହିତ ଅଛି । ବାଧ୍ୟହୋଇ ମାଇଲିଏ ଦୂରବର୍ତ୍ତୀ କନାଗୁଳି ଗ୍ରାମରେ ଆଶ୍ରୟ ଗ୍ରହଣ କଲେ । କନାଗୁଳି ଗ୍ରାମଟି ଦରିଦ୍ରତମ ଗ୍ରାମମାନଙ୍କ ମଧ୍ୟରୁ ଅନ୍ୟତମ । ସେଠାରେ ଗୋଟିଏ ଘନଶୀଳ ଛାୟାମଣ୍ଡିତ ମଠ ଅଛି ଏବଂ ପାନୀୟଜଳ ମଧ୍ୟ ସୁଲଭ ଥିଲା । ସେହି ମଠରେ ସରକାରୀ ପକ୍ଷର ଶିବିର ସ୍ଥାପିତ ଥିଲା । ହେଲେହେଁ ସତ୍ୟାଗ୍ରହୀମାନଙ୍କ ଗତିବିଧି ଲକ୍ଷ୍ୟକରିବାକୁ ଅନ୍ତତଃ ମାଇଲିଏ ବାଲୁକାମୟ ପଥ ଅତିକ୍ରମ କରିବାକୁ ପଡୁଥିଲା ଏବଂ ବୈଶାଖ ମାସର ଉତ୍ତପ୍ତ ଖରାରେ ଦିନତମାମ ଶୁଷ୍କକଣ୍ଠ ତୃଷାତୁରଭାବେ ଅପେକ୍ଷା କରିବାକୁ ପଡୁଥିଲା, କିମ୍ବା ସତ୍ୟାଗ୍ରହୀ ଶିବିର ଉପରେ ଗ୍ଲାସେ ପାଣିପାଇଁ ନିର୍ଭରକରିବା ବ୍ୟତୀତ ଉପାୟାନ୍ତର ନଥିଲା । ଏପରି କେତେଦିନ ଚାଲିବ ! ଦୁଇଦିନ ପରେ ଜଗୁଆଳଦଳଙ୍କଆଡୁ ଅନୁରୋଧ ଆସିଲା କୌଣସି ଗ୍ରାମଗହଳରେ ରହି କାମ ନକଲେ ସେମାନେ ରୋଗଗ୍ରସ୍ତ ହୋଇଯିବେ । ଆମ୍ଭେମାନେ ତାହା ମଧ୍ୟ ଇଚ୍ଛାକରୁ । ସେମାନେ କଠୋର କଟକଣା କୋହଳ କରିଦେବାକୁ ସେମାନଙ୍କ ନିଜଆଡୁ ପ୍ରସ୍ତାବ ଦେଲେ । ସତ୍ୟାଗ୍ରହୀମାନେ ଏପରି ଇଚ୍ଛା ମଧ୍ୟ କରୁଥିଲେ । ଫଳରେ ଦୁଇଦଳ ମଧ୍ୟରେ ସ୍ଥିରହେଲା ହାଟବାଟଥିବା ଚଟୁଆ ଅଞ୍ଚଳକୁ ଫେରିଯିବାକୁ, ତାହାହେଲେ ଉଭୟ ଦଳର କାହାରି କିଛି ଅସୁବିଧା ଘଟିବନାହିଁ । କୁଞ୍ଜକୋଠି ଗ୍ରାମର ସେହି ଜଙ୍ଗଲ ଅଞ୍ଚଳରେ ଯେଉଁ ତିନିଦିନ ଅବସ୍ଥାନ କରାଗଲା, ତାହା ଅନ୍ୟାନ୍ୟଦୃଷ୍ଟିରୁ ଅସୁବିଧାଜନକ ହୋଇଥିଲେ ମଧ୍ୟ, ଲୁଣମରା ଖୁବ୍ ଭଲଭାବରେ ଚାଲିଥିଲା । କାରଣ ଗୋଟିଏ କୁଆରିଆ ନଦୀରେ ସମୁଦ୍ର ପାଣି ମାଡିଆସି ଏକ ବିସ୍ତୃତ ଅଞ୍ଚଳକୁ ବୁଡ଼ାଇ ଛାଡ଼ିଗଲାବେଳେ ନିମ୍ନଭୂମିରେ କେତେକାଂଶ ସମୁଦ୍ରପାଣି ରହିଯାଉଥିଲା ଓ ତାହା ଗ୍ରୀଷ୍ମଋତୁର ପ୍ରଚଣ୍ଡ ଖରାରେ ଏପରି ପାଚିଉଠୁଥିଲା ଯେ, ସେହି ପାଣିକୁ ଅଳ୍ପସମୟ ସିଦ୍ଧ କରିଦେବାମାତ୍ରେ ଲୁଣ ଫଳିଯାଉଥିଲା । ଲୁଣମାଟିକୁ ଆଣି ଝରା ବସାଇ ପୁଣି ସେହି ପାଣିକୁ ସିଝାଇବା ଦୁଇଟି ପ୍ରଣାଳୀର ଆବଶ୍ୟକ ହେଉନଥିଲା । କିନ୍ତୁ ଆମ୍ଭମାନଙ୍କ ଲକ୍ଷ୍ୟଥିଲା ଲୁଣମାରିବା ଉପରେ । ଲୁଣ ଆଇନଭାଙ୍ଗିବା ଥିଲା ଆମର ଲକ୍ଷ୍ୟ । ତେଣୁ ଲୁଣପାଣିକୁ ସିଝାଇବା ମାତ୍ରେ, ତାହା ଆଇନଭଙ୍ଗ ବୋଲି ଧରାଯାଉଥିଲା ଏବଂ ସରକାର ତାହା କରାଇ ନଦବାକୁ ଯଦୃଚ୍ଛା ଉଦ୍ୟମ କରୁଥିଲେ ।

ପ୍ରଥମଦିନ ସିପାହୀମାନଙ୍କ ସହିତ ସତ୍ୟାଗ୍ରହୀମାନଙ୍କର ଖୁବ୍ ଛଡ଼ାଛଡ଼ି, ଧସ୍ତାଧସ୍ତି ଚାଲିଥିଲା; କିନ୍ତୁ ଯେତେବେଳେ ଟିକିଏ ଛାୟା ଓ ପାନୀୟଜଳ ଗ୍ଲାସେ ପାଇବାକୁ ସତ୍ୟାଗ୍ରହୀମାନଙ୍କ ଦୟା ଉପରେ ନିର୍ଭର କରିବାକୁ ପଡ଼ିଲା, ସେତେବେଳେ କାୟିକ ସଂଘର୍ଷ ଛାଡ଼ିବାକୁ ପୁଲିସମାନେ ବାଧହୋଇଥିଲେ । ଏସବୁର ସୁବିଧାଘଟିଲା ସତ, କିନ୍ତୁ ଜନମାନବଶୂନ୍ୟ ସେ ଅଞ୍ଚଳରେ ଆମ କୃତିତ୍ୱ ଦେଖିବ କିଏ ? ଅଧିକ ମେଞ୍ଚାଏ ଲୁଣ ମାରିବା ନମାରିବା ତ କଥା ନଥିଲା । ବିଶେଷତଃ ଏହି କାରଣରୁ ଗ୍ରାମଗହଳ ଚଟୁଆଅଞ୍ଚଳକୁ ଶିବିର ଉଠାଇବା ସ୍ଥିର କରିଦେଲୁ । ଆମପକ୍ଷ ବିଜୟ ଉନ୍ମାଦନା ଓ ସରକାରପକ୍ଷ ପରାଭବ ମନୋବୃତ୍ତି ଘେନି ଗ୍ରାମଗହଳ ଚଟୁଆ ଅଞ୍ଚଳକୁ ଫେରିଆସିଲୁ । ସାମାନ୍ୟ କେତେଜଣ ଯୁବକ ବିରାଟ ସରକାର ଓ ଜିମଦାରପକ୍ଷଙ୍କୁ ନାକେଦମ କରିସାରିଲେଣି ବୋଲି ଲୋକମୁଖରେ, ବିଶେଷତଃ ବେଆଇନୀ ଲୁଣପୁଡ଼ିଆ ବିକ୍ରି ହେଉଥିବା ଅଞ୍ଚଳରେ, ଚାରିଆଡ଼େ ପ୍ରଚାର ହୋଇଯାଇଥିଲା ।

ଚଟୁଆ, ପୋଖରୀଆସଡ଼ା ଓ ସାନ୍ତରାପୁର ଶାସନ ମଧଭାଗରେ ବେଢ଼ିମଠ ନାମରେ ଗୋଟିଏ ରମଣୀୟ ସ୍ଥାନ ସ୍ମରଣାତୀତ କାଳରୁ ବିଦ୍ୟମାନ ଅଛି । ବର ଓ ଆମ୍ରବୃକ୍ଷର ଘନଚ୍ଛାୟା ତଳେ ଗୋଟିଏ କ୍ଷୁଦ୍ରକାୟ ମନ୍ଦିର, ଗୋଟିଏ ଉତ୍କୃଷ୍ଟ ପାନୀୟ ଜଳର୍ କୂପ ଏହି ସମ୍ବଳ ଘେନି ବେଢ଼ିମଠ ଅବସ୍ଥିତ । ଚଟୁଆ ଗ୍ରାମବାସୀମାନଙ୍କର ଗ୍ରାମ୍ୟସମ୍ପତ୍ତିଭାବେ ଗ୍ରାମର ମେଳା ମହୋତ୍ସବ ଅନୁଷ୍ଠିତ ହେବାପାଇଁ ଏ ସ୍ଥାନଟି ଗ୍ରାମ ବାହାରେ ରଖାହୋଇଛି; କିନ୍ତୁ କେନ୍ଦ୍ରସ୍ଥାନରେ ଥିବାରୁ ଅଞ୍ଚଳର ସଭାସମିତି ଆବଶ୍ୟକ ହେଲେ ଏଠାରେ ଅନୁଷ୍ଠିତ ହୁଏ । ସମଗ୍ର ଅଞ୍ଚଳର ସମର୍ଥନ ଆଗ ପଛରେ ଅନୁଭବକରି ସତ୍ୟାଗ୍ରହୀମାନେ କାହା ଅନୁମତିକୁ ଅପେକ୍ଷା ନକରି ସିଧା ଆସି ବେଢ଼ିମଠରେ ଶିବିର ସ୍ଥାପନ କରିବସିଲେ । ଜମିଦାରପକ୍ଷ ଲୋକେ ଗ୍ରାମବାସୀମାନଙ୍କୁ ଡକାଇ ସ୍ଥାନ ନଦେବାକୁ ଓ ସତ୍ୟାଗ୍ରହୀମାନଙ୍କ ଅନଧିକାର ପ୍ରବେଶପାଇଁ ଏସ୍.ଡି.ଓ.ଙ୍କ ପାଖରେ ଦରଖାସ୍ତ କରିବାକୁ ପ୍ରବର୍ତ୍ତାଇଲେ ସତ; କିନ୍ତୁ ଭିତରେ ଗ୍ରାମବାସୀମାନଙ୍କ ନୀରବ ସମର୍ଥନ ଥିବା ବୁଝିପାରି ବିଶେଷତଃ ଅର୍ଜୁନକୂଳ ଗ୍ରାମର ଛାତ୍ର ଓ ଯୁବକ-ନେତା ବୃନ୍ଦାବନ ପାତ୍ରଙ୍କ ନେତୃତ୍ୱରେ ଅଞ୍ଚଳଟି ଆଗରୁ ସଂଗଠିତ ହୋଇସାରିଥିବା ସମ୍ବାଦ ପାଇ ଜମିଦାରପକ୍ଷ ନିବୃତ ହୋଇଗଲେ । ଉଭୟପକ୍ଷରୁ ଚାରିଆଡ଼େ ସଭାସମିତିଦ୍ୱାରା ଘୋରତର ପ୍ରଚାର ଚାଲିଲା । ସରକାର ଓ ଜମିଦାର ପକ୍ଷର ସମବେତ ଚେଷ୍ଟାରେ ସଭା ଆୟୋଜିତ ହୁଏ ସତ; କିନ୍ତୁ ସତ୍ୟାଗ୍ରହୀମାନେ ଛକିଥାଆନ୍ତି ଓ ଉଦ୍ୟୋକ୍ତାମାନେ ସଭାଛାଡ଼ି ଚାଲିଯିବା ମାତ୍ରେ "ମହାତ୍ମାଗାନ୍ଧି କି ଜୟ" ରବରେ ଗଗନ ପବନ କମ୍ପାଇ ସଭାରେ ପ୍ରବେଶକରନ୍ତି । ସତ୍ୟାଗ୍ରହୀମାନଙ୍କ ତେଜୀୟାନ ଭାଷଣକୁ ଲୋକେ ଚିତ୍ରପୁତ୍ତଳିକାପରି ଘଣ୍ଟା ଘଣ୍ଟା

ବସି ଶୁଣନ୍ତି ଏବଂ ଶେଷରେ ସମସ୍ତେ ''ମହାତ୍ମା ଗାନ୍ଧି କି ଜୟ'' ଏକସ୍ୱରରେ କହି ଘରକୁ ଫେରନ୍ତି । ଫେରିବାବେଳେ ବକ୍ତୃତା ଶୁଣିବାରେ ଅନଭ୍ୟସ୍ତ ଗ୍ରାମଲୋକେ ଆଲୋଚନା କରନ୍ତି– ଏମାନଙ୍କ କଣ୍ଠରେ ସରସ୍ୱତୀ ବିଜେ କରିଛନ୍ତି । ସରକାରପକ୍ଷ ଲୋକଙ୍କ ଆଖିଦେଖା, ଦିମାକିଆ କଥା ସେମାନଙ୍କ କାନକୁ ପିତା ଲାଗୁଛି ବୋଲି ସ୍ପଷ୍ଟ ମତ ବ୍ୟକ୍ତ କରିବାକୁ ଛାଡ଼ନ୍ତିନାହିଁ ।

ପ୍ରକୃତପକ୍ଷେ ଏସବୁ କାମର ପ୍ରତ୍ୟକ୍ଷ ଦାୟିତ୍ୱରେ ମୁଁ ନଥାଏ । ପରୋକ୍ଷରେ ରହି ପରିଚାଳନା କରିବା ଭାର ମୋଠାରେ ନ୍ୟସ୍ତ ଥାଏ । ମୁଁ କୌଣସି ସଭାରେ ବକ୍ତୃତା ନଦେଇ ଗ୍ରାମ ଗ୍ରାମ ବୁଲି ଲୋକଙ୍କ ସହିତ ନିରୋଳାରେ ଆଲୋଚନା କରୁଥାଏ ଏବଂ ସାହାଯ୍ୟ ବିଷୟରେ କାହାକୁ କିଛି ନକହି କେବଳ ସଂଗଠନ ବିଷୟରେ ଯାହାକିଛି କହୁଥାଏ । ଅବଶ୍ୟ ଲୋକେ ସ୍ୱତଃପ୍ରବୃତ୍ତ ହୋଇ ସାହାଯ୍ୟ ଯେ ଦେଉନଥାନ୍ତି ତାହା ନୁହେଁ; କିନ୍ତୁ ସବୁପ୍ରକାର ବ୍ୟୟ ନିର୍ବାହ କରିବାପାଇଁ ମୁଁ ପ୍ରସ୍ତୁତ ହୋଇସାରିଥାଏ । ତେତେବେଳକୁ ଜାତୀୟ କବି ବୀରକିଶୋର ଦାସଙ୍କ 'ମୋହନବଂଶୀ' ବହି ଛପା ସରିଲାଣି । ସେଥିରୁ ଗୋଟିଏପଦ ମୋର ସମସ୍ତ କର୍ମର ନିୟାମକ, ପଥପ୍ରଦର୍ଶକ ହୋଇଥାଏ । ସବୁକାର୍ଯ୍ୟ ଆରମ୍ଭରେ ସେହି ମନ୍ତ୍ରୋପମ ପଦଟି ମନେ ମନେ ସ୍ମରଣ କରିଦେବାମାତ୍ରେ ମୋର ପରାକ୍ରମ ଶତଗୁଣରେ ବଢ଼ିଉଠେ । ତାହା ହେଉଛି–

''ହୋମାନଳ ପରି ମୋର ସବୁ ଜଳିଯାଉ
ହିମାଳୟଗିରି ମୋର ସ୍ୱାଧୀନତା ପାଉ ।''

—

# ଆକ୍ରମଣ ଓ ପ୍ରତ୍ୟାକ୍ରମଣର କାହାଣୀ-୨

ଚଟୁଆ ଗ୍ରାମର ବେଢ଼ିମଠ ଶିବିର ସବୁଦୃଷ୍ଟିରୁ ଯେପରି ସୁବିଧାଜନକ ବୋଧହେଲା ସେହିପରି ମଧ୍ୟ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା । ଦିନରାତି ଲୋକସମାଗମ ଲାଗିରହିଥାଏ । ଗ୍ରାମଗ୍ରାମରୁ ଯୁବକମାନେ ତ ନିଶ୍ଚୟ ଆସୁଥାନ୍ତି, ଦରବୁଢ଼ା, ବୁଢ଼ା ଲୋକେ ମଧ୍ୟ କୌତୂହଳ ସମ୍ଭାଳି ନପାରି କ୍ୟାମ୍ପ୍ ଦେଖିବାକୁ ଦଶମାଇଲ ଦୂରରୁ ଧାଇଁଆସୁଥିଲେ । ବିଶେଷତଃ ପାଟପୁର ହାଟଟି ନିକଟରେ ଥିବାରୁ ହାଟକୁଯିବା ବାହାନାରେ ମଧ୍ୟ ଆସି କ୍ୟାମ୍ପ୍‌ରେ ଘଣ୍ଟା ଘଣ୍ଟା ଧରି ବସନ୍ତି ଏବଂ କିଛି କିଣାକିଣି ନକରି ଘରକୁ ଖାଲି ହାତରେ ଫେରନ୍ତି । ତେଣୁ ସଭାକାମ ପ୍ରାୟ ଲାଗିରହିଥାଏ । ସ୍ୱେଚ୍ଛାସେବକମାନେ ଗଳଦ୍‌ଘର୍ମ ହୋଇ ଏଣୁ ତେଣୁ ବହୁ ଅବାନ୍ତର କଥାସମ୍ବଳିତ ବିଷୟମାନ ଗୁରୁଗମ୍ଭୀର ସ୍ୱରରେ ବୁଝାଇ, ତଥାପି ଜନତାଙ୍କୁ ସନ୍ତୋଷ କରିପାରନ୍ତିନାହିଁ । ଘଣ୍ଟା ଘଣ୍ଟା ଧରି, ପ୍ରହର ପ୍ରହର ଧରି, ଓଳି ଓଳି ଧରି କେବଳ ଭାଷଣହିଁ ଚାଲିଥାଏ । ବୁଝିବା ଉଚିତ ଯେ ଯେଉଁ କେତୋଟି ସ୍ଥାନୀୟ କର୍ମୀ ବା ସ୍ୱେଚ୍ଛାସେବକ ଜୁଟିଥାନ୍ତି, ସେମାନଙ୍କ ମଧ୍ୟରୁ କେହି ବକ୍ତୃତାଦେବା ତ ଦୂରର କଥା ଅଧିକାଂଶସଂଖ୍ୟକ ଜୀବନରେ କେବେ ବକ୍ତୃତା ମଧ୍ୟ ଶୁଣିନଥାନ୍ତି । ବରଂ କହିଲେ ଅଧିକ ଠିକ୍ ହେବ ଯେ, ଜନତା ଯେଉଁ କାରଣରୁ ବକ୍ତୃତା ଶୁଣିବାକୁ ସବୁବେଳେ ରୁଣ୍ଡ ହେଉଥାନ୍ତି ଆମ ସ୍ୱେଚ୍ଛାସେବକ ବା କର୍ମୀମଣ୍ଡଳୀ ପ୍ରାୟ ସେହି କାରଣରୁ ଆକୃଷ୍ଟ ହୋଇ ଅର୍ଥାତ୍ ବକ୍ତୃତା ଶୁଣି ସତ୍ୟାଗ୍ରହୀ ହୋଇଥାନ୍ତି । ତେଣୁ ସହଜରେ ଅନୁମାନ କରିହେବ ସେହି ଯୁଗାନ୍ତକାରୀ ଉତ୍ତେଜନାରେ ବକ୍ତୃତାର ମାନ ଓ ସ୍ଥାନ କେଡ଼େ ନିକୃଷ୍ଟ ଧରଣର ହେଉଥିବ ବୋଲି । ଅଥଚ ତାହାହିଁ ମୂକ ଜନତା ପକ୍ଷରେ ଯଥେଷ୍ଟ ହେଉଥିଲା ଏବଂ ସତ୍ୟାଗ୍ରହୀମାନେ କେଡ଼େ ନିର୍ଭୀକ ବୀର ଓ କିପରି ସରକାରୀ ଲୋକଙ୍କ ସାମନାରେ ଉତ୍ତେଜିତ ସ୍ୱରରେ ସରକାରକୁ ଗାଳିଦେଉଛନ୍ତି ବୋଲି ଚାରିଆଡ଼େ ଲୋକମୁଖରେ ପ୍ରଚାରଲାଭ କରୁଥିଲା । ଏକେ ତ ଗ୍ରୀଷ୍ମକାଳୀନ ଆଳସ୍ୟ ଅବସରର ସମୟ । ଲୋକଙ୍କର କାମଦାମ କିଛି ନଥାଏ । ଫଳରେ କ୍ୟାମ୍ପ୍‌କୁ ଯିବା, ସତ୍ୟାଗ୍ରହୀଙ୍କ ଚାଲିଚଳଣ ଦେଖିବା ଓ ବକ୍ତୃତା ଶୁଣିବା ସେହି କେତେଦିନ ଜନତା ସ୍ତରରେ ଗୋଟିଏ ବିଳାସ ହୋଇଉଠିଥିଲା । ସରକାରୀ ଲୋକେ ଅଳ୍ପ ଦୂରରେ ଚଟୁଆ ସର୍କଲ ଅଫିସରେ କ୍ୟାମ୍ପ୍ ପକାଇ ସତ୍ୟାଗ୍ରହୀମାନଙ୍କ ଗତିବିଧି ଲକ୍ଷ୍ୟକରୁଥାନ୍ତି ଏବଂ ମାଧବବାବୁ ଓ ସବ୍‌ମେନେଜର୍ ସ୍ଥାନୀୟ ସରକାରୀ ଓ ଜମିଦାର କର୍ମଚାରୀମାନଙ୍କ ସମଭିବ୍ୟାହାରରେ ଗ୍ରାମ ଗ୍ରାମ ବୁଲି ଲୋକମାନଙ୍କୁ ରାଜଦ୍ରୋହ

ଅପରାଧର ବିଭୀଷିକା ସବୁ ବୁଝାଉଥାନ୍ତି । ସତ୍ୟାଗ୍ରହୀମାନଙ୍କ ମଧ୍ୟରୁ ଆଗୁଆମାନେ ସରକାରୀ ପକ୍ଷ ଆୟୋଜିତ ସଭାମାନଙ୍କର ସୁବିଧା ଗ୍ରହଣ କରିବାକୁ ଛକି ଛକି ବୁଲୁଥାନ୍ତି ।

ଏହିପରି ଗୋଟିଏ ସପ୍ତାହ ଅତିବାହିତ ନହେଉଣୁ ସମ୍ବାଦ ପହଞ୍ଚିଲା ଯେ, ଗୋଟିଏ ସତ୍ୟାଗ୍ରହୀ ଦଳ କଟକରୁ ଅଭିଯାନ ଆରମ୍ଭ କରି ଜଗତସିଂହପୁର ବାଟେ ଚାଲିଚାଲି ଆସୁଛନ୍ତି ଏବଂ ସେମାନଙ୍କୁ ନେତୃତ୍ୱ ପ୍ରଦାନ କରୁଛନ୍ତି ଶ୍ରୀଯୁକ୍ତା ରମାଦେବୀ । ସତ୍ୟାଗ୍ରହ ଶିବିରରେ ଦ୍ୱିଗୁଣ ଉତ୍ସାହ ଖେଳିଗଲା ଏବଂ ସାରା ଅଞ୍ଚଳର ଦୃଷ୍ଟି ଅପେକ୍ଷାକରି ରହିଲା ଏହି ବାହିନୀର ଆଗମନକୁ, ବିଶେଷତଃ ଶ୍ରୀଯୁକ୍ତା ରମାଦେବୀଙ୍କ ଆବିର୍ଭାବକୁ, ଯାହାଙ୍କ ନେତୃତ୍ୱରେ ସାରା ଦେଶରୁ ବଛା ବଛା ସତ୍ୟାଗ୍ରହୀମାନେ ଯୋଗଦେଇ କୁଜଙ୍ଗ ଲବଣ ସତ୍ୟାଗ୍ରହ ପ୍ରାଙ୍ଗଣକୁ ବାହିଆସୁଛନ୍ତି । ଯଥାସମୟରେ ସତ୍ୟାଗ୍ରହୀମାନେ ପୂର୍ବପରି ପାଟପୁର ହାଟ ଦିନ ହାଟବେଳେ ହାଟକୁ ଅତିକ୍ରମ କରି ବେଢ଼ିମଠ କ୍ୟାମ୍ପରେ ପହଞ୍ଚିଲେ । ପ୍ରଚାରିତ ହେଲା ଆଗାମୀ କାଲି ସଂଧ୍ୟାବେଳେ ଶ୍ରୀଯୁକ୍ତା ରମାଦେବୀ ସଭାରେ ଭାଷଣ ଦେବେ । ତେତେବେଳକୁ ଶ୍ରୀଯୁକ୍ତା ରମାଦେବୀ ସେହି ଅଞ୍ଚଳରେ ପହଞ୍ଚି ଆଗ ବଣିକୁନ୍ଦ ଖମାରରେ ଅବସ୍ଥାନ କରୁଥାନ୍ତି । ପ୍ରତୀକ୍ଷା ରଖିଥାନ୍ତି ଶ୍ରୀଯୁକ୍ତ ନବବାବୁ ଓ ଶ୍ରୀଯୁକ୍ତା ମାଳତୀ ଦେବୀଙ୍କ ଆଗମନକୁ । ସମସ୍ତେ ମିଳିମିଶି ପରଦିନ ସଭାରେ ଯୋଗଦେବା ଥିଲା ପ୍ରସ୍ତାବ ।

ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଧାରିତ ସମୟ ଆଗରୁ ବେଢ଼ିମଠ କ୍ୟାମ୍ପର ସୁପ୍ରଶସ୍ତ ସ୍ଥାନଟି ଲୋକାରଣ୍ୟ ହୋଇସାରିଥିଲା । ଶ୍ରୀଯୁକ୍ତା ରମାଦେବୀ, ଶ୍ରୀଯୁକ୍ତା ମାଳତୀ ଦେବୀ, ଶ୍ରୀଯୁକ୍ତ ନବବାବୁ ବଣିକୁନ୍ଦଠାରେ ମିଳିତ ହୋଇ ସମର ସଭାର ପ୍ରସ୍ତାବ, ଗତ କେତେଦିନର କାର୍ଯ୍ୟକଳାପ, ବର୍ତ୍ତମାନର ପରିସ୍ଥିତି, ଆର୍ଥିକ ଆୟୋଜନ, ଲୋକମାନଙ୍କ ସମର୍ଥନ, ଭବିଷ୍ୟତ୍ କାର୍ଯ୍ୟପନ୍ଥା, ସରକାରୀ ଦମନ ଓ ଉଦ୍ୟମ, ଲୋକଙ୍କ ମନରେ ପ୍ରତିକ୍ରିୟା ଇତ୍ୟାଦି ସମସ୍ତ ବିଷୟର ପୁଙ୍ଖାନୁପୁଙ୍ଖ ଆଲୋଚନା, ଅଞ୍ଚଳର ମାନଚିତ୍ର ସହିତ ସମ୍ୟକ୍‌ଭାବେ ପରିଚୟ ଲାଭ କରିବା ଇତ୍ୟାଦି ଅଭିଯାନର ତାବତୀୟ ଆବଶ୍ୟକୀୟ ଧାରଣା ମୋଠାରୁ ବୁଝିବାରେ ସମସ୍ତ ସକାଳବେଳାଟି ଅତିବାହିତ କରି ମଧ୍ୟାହ୍ନର ଠିକ୍ ପରେ ପରେ ଓ ଅପରାହ୍ନର ଠିକ୍ ପୂର୍ବରୁ ବଣିକୁନ୍ଦ ଖମାରରୁ ଯାତ୍ରା ଆରମ୍ଭ କରିଦେଲେ ଶିବିର ଅଭିମୁଖରେ । ବଣିକୁନ୍ଦ ଖମାରରେ ମୁଁ ଘୋର ଅନିଚ୍ଛାସତ୍ତ୍ୱେ ପରିଚାଳନାର ଦାୟିତ୍ୱ ବହନ କରି ଅନ୍ତରାଳରେ ଅନେକଟା ଆତ୍ମଗୋପନକରି ରହିବାକୁ ବାଧ୍ୟ ହେଲି । ମୋର ଧାରଣା ଥିଲା ରମାଦେବୀ ପ୍ରମୁଖ ନେତ୍ରୀ ଓ ନବବାବୁଙ୍କ ଯୋଗଦେବା ପରେ ମୋ ଦାୟିତ୍ୱ ଅନେକ କମିଯିବ କିମ୍ବା ମୋଟେ ରହିବନାହିଁ ଏବଂ ସେପର୍ଯ୍ୟନ୍ତ ମୁଁ କୌଣସିମତେ ଦାୟିତ୍ୱ ତୁଲାଇଦେବା

ପରେ ପ୍ରତ୍ୟକ୍ଷ ସଂଘର୍ଷରେ ଯୋଗଦେଇ ଗିରଫଦାର ହେବାର ଗୌରବ ଲାଭ କରିବି । କିନ୍ତୁ ନେତ୍ରୀ ଓ ନେତାମାନଙ୍କ ନିର୍ଦ୍ଦେଶ ହେଲା ବିପରୀତ ଏବଂ କୌଣସି କାରଣରୁ ମୁଁ ଧରାନଦେଇ, ସେମାନଙ୍କ ମିଳିତ ବିଚାରରେ ସ୍ଥିରହେବା ସିଦ୍ଧାନ୍ତ ଓ ନିର୍ଦ୍ଦେଶସବୁକୁ କାର୍ଯ୍ୟକାରୀ କରିବି । ଏହିପରି ପ୍ରତ୍ୟକ୍ଷ ସତ୍ୟାଗ୍ରହରୁ ବଞ୍ଚିତ ହୋଇ ନେତ୍ରୀଙ୍କଦ୍ୱାରା ନ୍ୟସ୍ତ ହୋଇଥିବା ଅପେକ୍ଷାକୃତ କଠିନ ଦାୟିତ୍ୱ ତୁଲାଇବାକୁ ମୁଁ ବଣିକୁନ୍ଦ ଖମାରରେ ଏକପ୍ରକାର ବନ୍ଦୀହୋଇ ରହିଲି । ବନ୍ଦୀ ହେବାର ଅର୍ଥ ହେଉଚି, ସେପର୍ଯ୍ୟନ୍ତ ଯାହା କିଛି କରାଯାଉଥିଲା ସବୁ ମୋ ନେତୃତ୍ୱରେ ଏବଂ ଆମ ବଣିକୁନ୍ଦର ଲୋକେ ସେପର୍ଯ୍ୟନ୍ତ ବୁଝୁଥିଲେ ସାମନ୍ତ ଯାହା କହୁଛନ୍ତି ବା କରୁଛନ୍ତି, ତାହାଉପରେ କିଛି କୁହା ବା କରାଯାଇ ନପାରେ ଏବଂ ଯେକୌଣସି ସମୟରେ ଗିରଫଦାରୀ ହେବା ତାଙ୍କ କର୍ତ୍ତବ୍ୟର ଅଂଶବିଶେଷ ବୋଲି । ଯଦିଓ ସେମାନଙ୍କର ଇଚ୍ଛା ମୋଟେ ନୁହେଁ ମୋ ଗିରଫଦାରୀ ହେବା, ତଥାପି କର୍ତ୍ତବ୍ୟର ତାଡ଼ନାରେ ମୋତେ ଯଥାସମ୍ଭବ ଶୀଘ୍ର ଗିରଫଦାର ହେବାକୁଇ ହେବ ବୋଲି ସେମାନଙ୍କର ଧାରଣା ଥିଲା । କିନ୍ତୁ ଯେତେବେଳେ ସେମାନେ ବୁଝିପାରିଲେ ଯେ ମୋ ଉପରେ ବଡ଼ ନେତା ନେତ୍ରୀ ଅଛନ୍ତି ଓ ସେମାନଙ୍କ ଆଦେଶ ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଓ ଗୁଳି ଆଗରେ ଅବଶ୍ୟ ଛିଡ଼ାହେବାକୁ ମୁଁ ବାଧ ଏବଂ ବିଶେଷତଃ ସେମାନେ ନିର୍ଦ୍ଦେଶ ଦେଉଛନ୍ତି ଯେ ମୁଁ ସେମାନଙ୍କ ସ୍ପଷ୍ଟ ନିର୍ଦ୍ଦେଶ ନପାଇବା ପର୍ଯ୍ୟନ୍ତ ଗିରଫଦାର ହେବାକୁ ସୁଯୋଗ ଦେବିନାହିଁ ବୋଲି, ତେତେବେଳେ ବଣିକୁନ୍ଦ, ଡିହସାହି ଦୁଇଟି ଗ୍ରାମର ପ୍ରାୟ ଶହେଟି ଘରର ସମସ୍ତ ପ୍ରାପ୍ତବୟସ୍କ ଲୋକେ ପ୍ରହରୀ ହୋଇଗଲେ । ବାହାରର ଅପରିଚିତ ଲୋକ କାଳେ ଗୋୟେନ୍ଦା ବେଶରେ ଗ୍ରାମ ଭିତରେ ପ୍ରବେଶ କରି ମୋ ସମ୍ବାଦ ସଂଗ୍ରହ କରିନେବ ବା ମୁଁ ଅସାବଧାନ ଥିବା ସମୟରେ ପୁଲିସ ଆସି ମୋ ସହିତ ଅତର୍କିତଭାବେ ମୁକାବିଲା ହୋଇଯିବ, କିମ୍ବା କାହାକୁ ନଜଣାଇ ମୁଁ ପଦାକୁ ବାହାରିଯିବି ଓ କେଉଁଠି ଲୁଚିଥିବା ପୁଲିସ୍ ହଠାତ୍ ମୋତେ ଗିରଫ୍‌ଦାର କରିନେବ ଇତ୍ୟାଦି ବହୁତ କିମ୍ଭୂତ-କିମାକାର ଆଶଙ୍କାର ଆବିଷ୍କାର କରି ପ୍ରତିକାରର ବ୍ୟାପକ ବ୍ୟବସ୍ଥା ଗ୍ରାମବାସୀଙ୍କ ତରଫରୁ ଅବଲମ୍ବନ କରାଯାଇଥିଲା । ଗୋଟିଏ ଦୁଇଟି ଘଟଣାରେ ଦୂର ଗ୍ରାମରୁ ବଳଦ କିଣିବାକୁ ଆସିଥିବା କିମ୍ବା ସେଇ ବାଟଦେଇ ଅନ୍ୟଗ୍ରାମସ୍ଥିତ ବନ୍ଧୁ ଘରକୁ ଯାଉଥିବା ଅପରିଚିତ ଭଦ୍ରବେଶଧାରୀ ଲୋକଙ୍କୁ ଅଟକ କରାଯାଇ ନାନାପ୍ରଶ୍ନଦ୍ୱାରା ସେମାନଙ୍କୁ ଅତିଷ୍ଠ କରିଦିଆଯାଉଥିଲା ଏବଂ ଦୈବାତ୍ ସେମାନଙ୍କ ସହିତ ମୋର ସ୍ୱତନ୍ତ୍ର ପରିଚୟ ଥିବା ଜାଣି ଓ ମୋ ସହିତ ମୁକାବିଲା କରିବାକୁ ଅଣାଯିବା ଆଗରୁ ନାନା ପରୀକ୍ଷାରେ ସେମାନଙ୍କୁ ଅବତୀର୍ଣ୍ଣ ଓ ଉତ୍ତୀର୍ଣ୍ଣ ହେବାକୁ ପଡୁଥିଲା । ଫଳରେ ଅସମୟରେ ସେହି ବିଡ଼ମ୍ବିତ ଅତିଥିମାନଙ୍କ ଚର୍ଚ୍ଚାର

ଦାୟିତ୍ୱ ମୋତେ ଯେ ବହନ କରିବାକୁ ପଡୁଥିଲା, ବୋଲିବା ବାହୁଲ୍ୟ । ତେଣୁ ସଙ୍କୋଟ ଗିରଫଦାରୀ ପୂର୍ବରୁ ମୋତେ ଅଳ୍ପଦିନ ପାଇଁ ଗୋଟିଏ କୃତ୍ରିମ ବନ୍ଦୀଜୀବନ ସହିତ ଏହିପରି ଅଭ୍ୟସ୍ତ ହେବାକୁ ପଡ଼ିଥିଲା ଏବଂ ଗ୍ରାମବାସୀମାନଙ୍କର ଏ ବିଷୟରେ ଆନ୍ତରିକତା ଯେତେ ବଢୁଥିଲା, ମୋ ବିରକ୍ତି ମଧ୍ୟ ତେତେ ବଢ଼ିଉଠୁଥିଲା ।

ସେହି ମଧ୍ୟାହ୍ନରେ ଦୁଇଖଣ୍ଡ ବଳଦଗାଡ଼ି ନେତା ଓ ନେତ୍ରୀମାନଙ୍କୁ ଘେନି ଶିବିରାଭିମୁଖରେ ଗତି କଲାବେଳେ ଦେଖାଗଲା ପଥପାର୍ଶ୍ୱସ୍ଥ ସବୁ ଗ୍ରାମର ଲୋକେ ସେମାନଙ୍କ ପ୍ରତୀକ୍ଷାରେ ଥିଲେ ଏବଂ ଗାଡ଼ିଦ୍ୱୟର ଅଗ୍ରଗତି ସଙ୍ଗେ-ସଙ୍ଗେ ସମଭିବ୍ୟାହାରୀ ଦର୍ଶକ ବା ଶ୍ରୋତାମାନଙ୍କ ସଂଖ୍ୟା କ୍ରମଶଃ ବଢ଼ିବାକୁ ଲାଗିଲା ଓ ଗ୍ରାମମାନଙ୍କ ଆଦର ଅଭ୍ୟର୍ଥନାର ଯଥୋପଯୁକ୍ତ ସମ୍ମୁଖୀନ ହେଉ ହେଉ ମାତ୍ର ସାଢ଼େ ଚାରିମାଇଲ ପଥ ଅତିକ୍ରମ କରିବାକୁ ଗାଡ଼ିମାନଙ୍କୁ ଦୀର୍ଘ ଚାରିଘଣ୍ଟା ଲାଗିଲା । ପାଟପୁର ହାଟଠାରେ ପହଞ୍ଚିବା ବେଳକୁ ଅର୍ଦ୍ଧମାଇଲସ୍ଥିତ ଶିବିରରୁ ସ୍ୱେଚ୍ଛାସେବକ ଓ ଉପସ୍ଥିତ ଜନତା ବହୁ ଆଗରୁ ପାଛୋଟିନେବାକୁ ଅପେକ୍ଷା କରି ରହିଥିଲେ । ଦୁଇଟିଯାକ ଜନତା ସ୍ରୋତ ଏକତ୍ରିତ ହୋଇଯିବା ପରେ ଗାଡ଼ିରୁ ଓହ୍ଲାଇ ନେତା ନେତ୍ରୀଦ୍ୱୟ ଚାଲି ଚାଲି ସୂର୍ଯ୍ୟାସ୍ତବେଳକୁ ଶିବିର ପ୍ରାଙ୍ଗଣରେ ପ୍ରବେଶ କଲେ । ଜନସମୁଦ୍ରକୁ ଦେଖି ସରକାରୀ ଦଳ ତଟସ୍ଥ ହୋଇଗଲେ, ହେବାର କଥା ମଧ୍ୟ । କାରଣ ସବ୍‌ମେନେଜରଙ୍କ ଆଶ୍ୱାସନାରେ ଏସ.ଡି.ଓ. ଏତାବତ୍‌କାଳ ସୁଖସ୍ୱପ୍ନରେ ବିଭୋର ଥିଲେ । ଜନତାର ବିଶାଳ ସମାଗମ ପ୍ରତ୍ୟକ୍ଷୀଭୂତ କଲା ପରେ ତାଙ୍କର ସେ ସୁଖସ୍ୱପ୍ନ ଭାଙ୍ଗିଗଲା ଓ ସେ କଠୋରଭାବେ ଆନ୍ଦୋଳନକୁ ଦମନ କରିବାପାଇଁ ସଂକଳ୍ପ କରିବସିଲେ ।

ଲୋକମାନଙ୍କର ସାଧାରଣତଃ ଡରୁଆ ଡରୁଆ ସ୍ୱଭାବ ଦେଖି ତାଙ୍କର ସ୍ଥିର ବିଶ୍ୱାସ ଥିଲେ ଏଠାରେ ଆନ୍ଦୋଳନ ସାଫଲ୍ୟର ବହୁ ଦୂରରେ ରହିଯିବ ବୋଲି । ଜମିଦାର ଦଳ ତାଙ୍କର ଏ ଧାରଣାକୁ ଅଧିକ ଦୃଢ଼ୀଭୂତ କରିଥିଲେ ବୃଥା ଆସ୍ଫାଳନ ଓ ଆସ୍ଫୋଟ ଦ୍ୱାରା; କିନ୍ତୁ ନେତା ବିଶେଷତଃ ନେତ୍ରୀମାନଙ୍କ ସଂସ୍ପର୍ଶରେ ଆସିବା ପରେ ଲୋକମାନଙ୍କ ମତିଗତି ଏପରି ଅଦ୍ଭୁତଭାବେ ପରିବର୍ତ୍ତିତ ହୋଇଥିଲା ଯେ, ଘଣ୍ଟାଏ ଦୁଇଘଣ୍ଟା ଆଗରୁ ଯେଉଁମାନେ ସଭାକୁ ଆସିବା ଆଗରୁ ସରକାରୀ କୃପା ଟିକିଏପାଇଁ ଏସ୍.ଡି.ଓ.ଙ୍କ ନିକଟରେ ଅଗ୍ରିମ କୃତଜ୍ଞତା ଜଣାଉଥିଲେ ଓ ଆନ୍ଦୋଳନକୁ ବିପର୍ଯ୍ୟସ୍ତ କରିଦେବା ପାଇଁ ଏସ୍.ଡି.ଓ. ଓ ସବ୍‌ମେନେଜରଙ୍କ ନିକଟରେ ପ୍ରତିଶ୍ରୁତ ହୋଇଥିଲେ, ସେହିମାନଙ୍କୁ ଲୋକ ପଠାଇ ଡକାଇବା ବେଳକୁ ସେମାନେ ସରକାରୀ ଲୋକଙ୍କ ପାଖରେ ଆମର କିଛି କାମ ନାହିଁ ବୋଲି ଦେଖାଦେବାକୁ ମନାକରିଦେଲେ । ସଭାରେ ପ୍ରଦତ୍ତ ହୋଇଥିବା ଭାଷଣମାନ ଅତ୍ୟନ୍ତ ମର୍ମସ୍ପର୍ଶୀ, ଅତ୍ୟନ୍ତ ଜ୍ୱାଳାମୟୀ ଓ ଉନ୍ମାଦନାପୂର୍ଣ୍ଣ ହୋଇଥିଲା । ଶ୍ରୀଯୁକ୍ତା ମାଳତୀ ଦେବୀଙ୍କ ସୁଲଳିତ କଣ୍ଠନିଃସୃତ

ବଙ୍ଗଳାମିଶା ବକ୍ତୃତା ବିକୃତ ହେଲେହେଁ ଏଡ଼େ ଅଗ୍ନିମୟୀ, ଏଡ଼େ ସୁଶ୍ରାବ୍ୟ ହୋଇଥିଲା ଯେ ଉପସ୍ଥିତ ଅଗଣିତ ଜନତାଙ୍କର ଉଚ୍ଛ୍ୱସିତ ପ୍ରତିଧ୍ୱନି ବକ୍ତୃତାର ତାଳେ ତାଳେ ଝଙ୍କୃତ ହୋଇ ଶତ୍ରୁଦଳ ହୃଦୟରେ ଯୁଗପତ୍ ଈର୍ଷ୍ୟା ଓ ଶିହରଣ ଉପୁଜାଇ ଦେଉଥିଲା । ନେତାମାନେ କର୍ମୀମାନଙ୍କ ସହିତ ଏକତ୍ର ରହିବା, ଏକପ୍ରକାର ଖାଦ୍ୟ ଖାଇବା ଇତ୍ୟାଦି ଧରାବନ୍ଧା ନିୟମ ଥିଲେ ମଧ୍ୟ ଏଠାରେ ଟିକିଏ ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା । ସ୍ଥାନୀୟ ଲୋକମାନେ ଆଗନ୍ତୁକ ନେତାମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖିବା ନିତାନ୍ତ ଆବଶ୍ୟକ; କିନ୍ତୁ କ୍ୟାମ୍ପ୍ କୋଳାହଳ ଭିତରେ ବିଚାର ପରାମର୍ଶ ଇତ୍ୟାଦିର ଅସୁବିଧା ଘଟିବ ବୋଲି ସେମାନଙ୍କ ରହିବାପାଇଁ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଦିଷ୍ଟ ଥିଲା । ଏହି ସ୍ଥାନଟିକୁ ସମସ୍ତେ ଗୁମ୍ଫା କୁହନ୍ତି ।

ବଇଦି ମହାନ୍ତି ନାମରେ ଜଣେ ସନ୍ନ୍ୟାସୀଙ୍କର ଏହି ମନୋହର ନିରୋଳା ଉଦ୍ୟାନଟିକୁ ସମସ୍ତେ ବଇଦି ମହାନ୍ତି ଗୁମ୍ଫା ବୋଲି ଜାଣନ୍ତି । ବୁଢ଼ା ସନ୍ନ୍ୟାସୀଟି ପରେ ଘଟଣାଚକ୍ରରେ ସରକାରୀ କୋପ ଦୃଷ୍ଟିରେ ପଡ଼ି ସତ୍ୟାଗ୍ରହୀ ଓ ବନ୍ଦୀହେବାକୁ ବାଧ୍ୟ ହୋଇଥିଲେ । ସେହି ସନ୍ନ୍ୟାସୀ ଆଗନ୍ତୁକ ନେତା, ନେତ୍ରୀମାନଙ୍କ ପରିଚର୍ଯ୍ୟାର ସମସ୍ତ ଦାୟିତ୍ୱ ବହନ କରିଥିଲେ । ବେଢ଼ିମଠ ଶିବିରରେ ବିରାଟ ସଭା ପରେ ନେତା ନେତ୍ରୀମାନେ ଅଧମାଇଲିଏ ଦୂରସ୍ଥ ଗୁମ୍ଫାକୁ ଫେରିଗଲେ ସତ, କିନ୍ତୁ ସେମାନଙ୍କ ପହଞ୍ଚିବା ଆଗରୁ ପ୍ରାୟ ପ୍ରତି ଗ୍ରାମର ପ୍ରତିନିଧିଶ୍ରେଣୀୟ ଲୋକେ ସେଠାରେ ଏକତ୍ରିତ ହୋଇସାରିଥିଲେ । ନାରୀ ଜାଗରଣର ଅପରିହାର୍ଯ୍ୟ ଆବଶ୍ୟକତା ବିଷୟରେ ନେତ୍ରୀମାନଙ୍କୁ ବୁଝାଇ ସ୍ୱୀୟ ସ୍ୱୀୟ ଗ୍ରାମକୁ ଆମନ୍ତ୍ରଣ କରିବାକୁ । ନେତ୍ରୀମାନଙ୍କର ଯେ ସେହି ଉଦ୍ଦେଶ୍ୟ ଥିଲା, ତାହା ସେମାନଙ୍କୁ ସମ୍ପୂର୍ଣ୍ଣ ଅଗୋଚର ଥିଲା । ଏପରିକି ସେମାନଙ୍କ ଆମନ୍ତ୍ରଣ ଗ୍ରହଣ କରିସାରିବା ପରେ ମଧ୍ୟ ପୁରାଣବର୍ଣ୍ଣିତ ସାବିତ୍ରୀ, ଦମୟନ୍ତୀ, ସୀତା ଓ ଦ୍ରୌପଦୀ ପ୍ରଭୃତିଙ୍କ ଆଦର୍ଶ ପଲ୍ଲୀସୁଲଭ ଭାଷାରେ ବୁଝାଇ ନେତ୍ରୀମାନଙ୍କୁ ବିଶ୍ରାମ ଗ୍ରହଣ କରିବାକୁ ଆଦୌ ସୁବିଧା ଦେଲେନାହିଁ । ଯେତେବେଳେ ଦେଖାଗଲା ସେମାନଙ୍କ ପୌରାଣିକ ନାରୀ ଆଦର୍ଶ ବିଷୟକ ତଥ୍ୟମାନ ବାରମ୍ବାର ଶୁଣି ଶୁଣି ନେତ୍ରୀମାନଙ୍କ ଧୈର୍ଯ୍ୟ ଶେଷ ସୀମାରେ ପହଞ୍ଚିଲାଣି, ତଥାପି ନାରୀ ଆଦର୍ଶର ସେହି ଏକା କଥା ଚକ ବୁଲିଲା ପରି ଦୁହାଇ ଦୁହାଇ ବୁଝାଯାଉଛି, ସେତେବେଳେ ସ୍ୱେଚ୍ଛାସେବକମାନେ ବାଧ୍ୟହୋଇ ହସ୍ତକ୍ଷେପ କରିବାରୁ ନେତ୍ରୀମାନେ ଆଶ୍ୱସ୍ତ ହେଲେ । ନଚେତ୍ ବିଶ୍ରାମ ବ୍ୟତୀତ ଖରାଦିନ ରାତି ପାହିଯିବାକୁ ମାତ୍ର ତିନିଚାରି ଘଣ୍ଟା ବାକିଥିଲା ।

ଗ୍ରାମଗହଳରେ ନାରୀନେତ୍ରୀଦ୍ୱୟ ବିଭିନ୍ନ ଦିଗଧରି ବୁଲିବାର ଗୋଟିଏ ଗସ୍ତନିର୍ଘଣ୍ଟ ସ୍ଥିରହେଲା । ଶିବିରର ପଶ୍ଚିମାଞ୍ଚଳକୁ ଶ୍ରୀଯୁକ୍ତା ମାଳତୀ ଦେବୀ ଓ

ପୂର୍ବାଞ୍ଚଳକୁ ଶ୍ରୀଯୁକ୍ତା ରମାଦେବୀଙ୍କ ଗସ୍ତକ୍ରମ ଧାର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଶିବିରରେ ଲୁଣମାରିବା କାର୍ଯ୍ୟ ଦ୍ୱିଗଣ ଉତ୍ସାହରେ ଚଳାଇବାକୁ ସେଦିନ ସଭାରେ ଯାହା ପ୍ରସ୍ତାବ କରାଯାଇଥିଲା, ତାହାପାଇଁ ମଧ୍ୟ ଉପଯୁକ୍ତ ଆୟୋଜନ ଚାଲିଲା । ସରକାରୀ ପକ୍ଷଙ୍କ ତତ୍ପରତାର ମଧ୍ୟ ସୀମା ନଥିଲା । ସେଦିନ ସାବିତ୍ରୀ ଅମାବାସ୍ୟାର ପବିତ୍ର ଦିବସ । ଲୋକମାନଙ୍କର ପୂର୍ଣ୍ଣ ଅବସର ଦିନ । ସଭାରେ ନିର୍ଦ୍ଦିଷ୍ଟ ସମୟ ନିର୍ଦ୍ଧାରିତ କରାଯାଇ କେବଳ ଯେ ଘୋଷାଣା କରାଯାଇଥିଲା ତାହା ନୁହେଁ, ସରକାରୀ ପକ୍ଷଙ୍କୁ ମଧ୍ୟ ଆହ୍ୱାନ କରାଯାଇଥିଲା, ବନ୍ଦୀଶାଳାର ସମସ୍ତ ସ୍ଥାନ ଏକା କୁଜଙ୍ଗ ସନ୍ତାନମାନେ କେବଳ ଲବଣ ସତ୍ୟାଗ୍ରହ ଜରିଆରେ ଅଧିକାର କରିନେବେ ବୋଲି ସଭାସ୍ଥିତ ଜନତା ପକ୍ଷରୁ ଶ୍ରୀଯୁକ୍ତା ରମାଦେବୀ ଆହ୍ୱାନ ଘୋଷଣା କରିଥିଲେ ଏବଂ ସେହି ଆହ୍ୱାନକୁ ହରିବୋଲ ଧ୍ୱନିଦ୍ୱାରା ସମର୍ଥନ ଜଣାଇଥିଲେ ।

ସରକାରୀ ପକ୍ଷ ମଧ୍ୟ ନୀରବ ନଥିଲେ । କିନ୍ତୁ ସେମାନଙ୍କ ପ୍ରତିଆକ୍ରମଣ ପ୍ରଣାଳୀ ସ୍ୱତନ୍ତ୍ର । ଆମେ ଯେପରି ବହୁସଂଖ୍ୟକ ସତ୍ୟାଗ୍ରହୀ ସଂଗ୍ରହରେ ଲଗିପଡ଼ିଥିଲୁଁ, ସେମାନେ ସେହିପରି ଯେଉଁମାନଙ୍କ ଦାୟିତ୍ୱରେ ପ୍ରତ୍ୟକ୍ଷ ସତ୍ୟାଗ୍ରହ ପରିଚାଳିତ ହେଉଥିଲା ସେମାନଙ୍କୁ କାବୁ କରିବାକୁ କି କି ଅସ୍ତ୍ର ଆବଶ୍ୟକ ତାହାର ବିଶଦ ବିବରଣୀ ସଂଗ୍ରହରେ ଲାଗିପଡ଼ିଥିଲେ । ବ୍ୟାପକ ଧରପଗଡ଼ପାଇଁ ଆମେ ପ୍ରସ୍ତୁତ ହେଉଥିଲାବେଳେ ସେମାନେ ଦାୟିତ୍ୱଶୀଳ ଆଭିମୁଖ୍ୟ ନେଉଥିବା ଉତ୍ସାହୀ କର୍ମୀମାନଙ୍କୁ ସେମାନଙ୍କ କାର୍ଯ୍ୟକଳାପ ପ୍ରତି ତୀକ୍ଷଣ୍ ଲକ୍ଷ୍ୟରଖି ଗିରଫଦାରୀର ତାଲିକାଭୁକ୍ତ କରିରଖୁଥିଲେ । କଟକ ସତ୍ୟାଗ୍ରହୀ ଦଳଙ୍କର ସମାଗମ ମାତ୍ରେ କୁଜଙ୍ଗ ସ୍ୱେଚ୍ଛାସେବକମାନଙ୍କର ଦାୟିତ୍ୱ ଦ୍ୱିଗୁଣିତ ଭାବେ ବଢ଼ାଇଦିଆଯାଇ, କର୍ତ୍ତୃତ୍ୱ କମାଇଦିଆଗଲା । ଫଳରେ ସତ୍ୟାଗ୍ରହ ସଂପର୍କୀୟ ସମସ୍ତପ୍ରକାର ଦାୟିତ୍ୱ ନ୍ୟସ୍ତ ହେଲା ଗଞ୍ଜାମର ବିଶିଷ୍ଟ ଯୁବକକର୍ମୀ ଶ୍ରୀ ନାରାୟଣ ପାତ୍ରଙ୍କ ଉପରେ ଏବଂ ସେନାପତି ପଦରେ ତାଙ୍କୁଇ ବଛାଗଲା । ସେଦିନ ସତ୍ୟାଗ୍ରହ ଶ୍ରୀ ନାରାୟଣ ପାତ୍ରଙ୍କ ନେତୃତ୍ୱରେ ପରିଚାଳିତ ହୋଇଥିଲେ ମଧ୍ୟ ଗିରଫ ହେଲେ ମାତ୍ର ତିନିଜଣ । ଲୁଣି ନଅମଉଜା ନାମିତ ଅଞ୍ଚଳର ବିଶିଷ୍ଟକର୍ମୀ ସିଂହପୁରର ସେହି ପୂର୍ବବର୍ଣ୍ଣିତ ଶିକ୍ଷକ ଶ୍ରୀ ଦୁର୍ଯ୍ୟୋଧନ ପଟ୍ଟନାୟକ, ଶିବିର ସ୍ଥାପିତ ହୋଇଥିବା ଚଟୁଆ ଅଞ୍ଚଳର ଛାତ୍ରନେତା ଏବଂ ସଦ୍ୟ ହାଇସ୍କୁଲ ଛାଡ଼ି ସତ୍ୟାଗ୍ରହରେ ଯୋଗଦେଇଥିବା ସ୍ୱର୍ଗୀୟ ବୃନ୍ଦାବନ ପାତ୍ର; ଯାହାଙ୍କ ଆଭିମୁଖ୍ୟ ଓ ତ୍ୟାଗ ପ୍ରଭାବରେ ସମସ୍ତ ଚଟୁଆ ଅଞ୍ଚଳଟିରେ ଅନୁପମ ଜାଗରଣ ସୃଷ୍ଟି ହୋଇଥିଲା, କଟକ ଖାନନଗର ଯୁବକକର୍ମୀ କଟକ ଦଳରେ ଯାଇଥିଲେ ଶ୍ରୀ ନବକିଶୋର ପରିଡ଼ା, ଏହି ତିନିଜଣ ସେମାନଙ୍କ ତେଜ ଯୋଗୁଁ ସରକାରୀଦଳଙ୍କ ଚକ୍ଷୁଶୂଳ ହୋଇଉଠିଥିଲେ । ଗିରଫଦାର ହେବା ପରେ ବନ୍ଦୀ କର୍ମୀମାନଙ୍କ

ଅଭିଭାବକମାନଙ୍କୁ ଘର କୋରଖ ନିଲାମର ଭୟ ଦେଖାଇ, ସରକାରଙ୍କୁ ସାହାଯ୍ୟ କଲେ ଭବିଷ୍ୟତ୍‌ର ଉଜ୍ଜ୍ୱଳ ଆଶା ଦେଖାଇ ବନ୍ଦୀମାନଙ୍କୁ ନିବର୍ତ୍ତାଇବାପାଇଁ ନାନାବିଧ ଚେଷ୍ଟା କରାଗଲା; କିନ୍ତୁ ସବୁ ଉଦ୍ୟମ ବ୍ୟର୍ଥ ହେବାରୁ ବନ୍ଦୀମାନଙ୍କୁ କଟକ ଜେଲକୁ ପଠାଇଦିଆଗଲା । ଶିକ୍ଷକ ଦୁର୍ଯ୍ୟୋଧନ ପଟ୍ଟନାୟକଙ୍କର ଏକମାତ୍ର ଉତ୍କଣ୍ଠା ଥିଲା ତାଙ୍କ ସ୍ତ୍ରୀ ଆସନ୍ନପ୍ରସବା ଥିବାରୁ; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ସେହିଦିନ ଠିକ୍ ତାଙ୍କ ବନ୍ଦୀହେବା ଅବ୍ୟବହିତ ପରେ ଖବର ପହଞ୍ଚିଲା ତାଙ୍କର ଗୋଟିଏ କନ୍ୟା ଜାତହୋଇଛି ଓ ପ୍ରସୂତିଙ୍କ ଅବସ୍ଥା ନିରାପଦ ବୋଲି । ତାଙ୍କର ଏକମାତ୍ର ଦୁର୍ଭାବନା ବନ୍ଦୀ-ଜୀବନ ଆରମ୍ଭ ହେବା ଆଗରୁ ଖଣ୍ଡିଯାଇଥିଲା ଏବଂ ଭଗବାନଙ୍କ ନିକଟରେ କୃତଜ୍ଞତା ଅର୍ପଣ କରି ଐତିହାସିକ ଓ ପୌରାଣିକ ସାବିତ୍ରୀ ଅମାବାସ୍ୟା ଦିନରେ ଜନ୍ମବୋଲି କନ୍ୟା ନାମ ସାବିତ୍ରୀ ରଖିଥିଲେ ।

ବନ୍ଦୀମାନେ ଦଣ୍ଡାଦେଶ ପାଇ ଅଞ୍ଚଳବାସୀଙ୍କ ବିପୁଳ ସମ୍ବର୍ଦ୍ଧନା ମଧ୍ୟରେ କଟକ ଜେଲଖାନାକୁ ପ୍ରେରିତ ହେଲେ । ଚାରିଆଡ଼େ ଉତ୍ସାହ ଉଦ୍ଦୀପନାର ତରଙ୍ଗ ଖେଳି ଉଠିଲା । ନିର୍ଦ୍ଦିଷ୍ଟ ହୋଇଥିବା ଗସ୍ତକ୍ରମ ଅନୁସାରେ ନେତ୍ରୀମାନେ ଯେ ଯାହା ବାଟଧରି ଚାଲିଲେ । ଶ୍ରୀଯୁକ୍ତ ନବବାବୁ ତତ୍ରତ୍ୟ ସବୁକାମ ଠିକ୍ ଠିକ୍ ଚାଲିଥିବା ଅନୁଭବ କରି ଅନ୍ୟାନ୍ୟ ଆୟୋଜନପାଇଁ କଟକ ଫେରିଗଲେ । ମୁଁ ବଣିକୁନ୍ଦ ଖମାରରେ ରହି ପ୍ରତ୍ୟହ ରାତ୍ରିତମାମ ଗ୍ରାମ ଗ୍ରାମ ବୁଲି ଶ୍ରୀଯୁକ୍ତ ମାଳତୀ ଦେବୀଙ୍କ ଗସ୍ତକ୍ରମକୁ ସଫଳ କରିବାପାଇଁ ଲାଗିପଡ଼ିଲି । ସରକାରୀ ପକ୍ଷ ସେମାନଙ୍କ କୌଶଳକୁ ବଦଳାଇ ଆମ ପକ୍ଷରୁ ଯେପରି ସେମାନଙ୍କ ସଭା ପରେ ସଭାର ସୁଯୋଗ ନେଇ ବକ୍ତୃତା ଦେଉଥିଲେ, ସେମାନେ ମଧ୍ୟ ସେହିପରି ଆମ ସଭାର ସୁଯୋଗ ନେବାକୁ ସ୍ଥିରକଲେ । ସରକାରୀ ହାକିମମାନଙ୍କୁ ଲୋକେ ପାଟି ନଫିଟାଇ ଆଗେ ସେମାନଙ୍କ କଥା ମୂକପରି ଶୁଣିଯାଉଥିଲେ । ଆମ ସଭାସବୁ ହୋଇଯିବା ପରେ ଲୋକଙ୍କ ସୁପ୍ତ ପ୍ରତିରୋଧଶକ୍ତି ଜାଗ୍ରତ ହୋଇଉଠିଲା ଏବଂ ପ୍ରତି ସରକାରୀ ସଭାରେ ସେମାନେ କିଛିନା କିଛି ଜବାବ ଦେବାକୁ ଆରମ୍ଭ କଲେ । ଗରେଇ ଶାସନ ଗୋଟିଏ ବ୍ରାହ୍ମଣପ୍ରଧାନ ଅଞ୍ଚଳ । ଏଠାରେ ଗରେଇ, ଲଥାଙ୍ଗ, ଓକଲା, ତୋଟାସାହି ପ୍ରଭୃତି ଚାରୋଟି ବଡ଼ ବ୍ରାହ୍ମଣ ବସ୍ତି ଅଛି, ଯାହାକୁ ଶାସନ କୁହାଯାଏ । ସେଠାରେ ଶ୍ରୀଯୁକ୍ତା ମାଳତୀ ଦେବୀ ସଭା କରିବେ ବୋଲି ସେଦିନ ସ୍ଥିର ହୋଇଥାଏ । ଆଖପାଖ ଅଞ୍ଚଳ ବହୁ ଗ୍ରାମରୁ ଅନ୍ୟାନ୍ୟ ଲୋକମାନଙ୍କୁ ଘେନି ଶାସନସ୍ଥିତ ସବୁ ବ୍ରାହ୍ମଣମାନେ ସଭାରେ ଯୋଗଦେଇଥାନ୍ତି । ଜଣେ ନାରୀ ନେତ୍ରୀଙ୍କ ସମାଗମ ଯୋଗୁଁ ବହୁ ସ୍ଥାନୀୟ ମହିଳା ବୋଧହୁଏ ପ୍ରଥମଥରପାଇଁ ସଭାରେ ଯୋଗଦେଇଥାନ୍ତି । ମୋଟଉପରେ ସଭାଟି ସର୍ବତୋଭାବେ ସାଫଲ୍ୟମଣ୍ଡିତ ହୋଇଥାଏ ଏବଂ ଶ୍ରୀଯୁକ୍ତା ମାଳତୀ ଦେବୀ ତାଙ୍କ ସ୍ୱଭାବସୁଲଭ କୋମଳ କଣ୍ଠରେ ଘଣ୍ଟା ଘଣ୍ଟା

ଧରି କଂଗ୍ରେସ, ପଞ୍ଜାବ ଅତ୍ୟାଚାର, ଅସହଯୋଗ, ମହାତ୍ମା ଗାନ୍ଧିଜୀଙ୍କ ଅଭିନବ ଅହିଂସ ସତ୍ୟାଗ୍ରହ ଆନ୍ଦୋଳନ, ଲବଣ ସତ୍ୟାଗ୍ରହରେ ନିହିତ ଆଇନଭଙ୍ଗର ତଥ୍ୟ ଇତ୍ୟାଦି ବିଷୟରେ ବୁଝାଇ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିସାରି ସଭାଭଙ୍ଗ କଲେ ଏବଂ ସଭାସ୍ଥାନ ଛାଡ଼ି ଚାଲିଆସିବା ଅବ୍ୟବହିତ ପରେ ଲୋକେ ସଭାସ୍ଥାନରୁ ସମସ୍ତେ ଚାଲିଯାଇନାହାନ୍ତି ଏହି ଅବସରରେ ଘୋଡ଼ା ସବାର ଦୁଇଟି ସଭା ହେଉଥିବା ସ୍ଥାନରେ କେଉଁଠି ଛକି ରହିଥିଲେ, ହଠାତ୍ ପ୍ରବେଶକଲେ । ଲୋକେ କୌତୂହଳାକ୍ରାନ୍ତ ହୋଇ ସଭାସ୍ଥାନକୁ ଫେରିଆସିଲେ । ମାଜିଷ୍ଟ୍ରେଟ୍ ସାହେବ, ସବ୍‌ମେନେଜର୍‌ବାବୁ କଣ କହୁଛନ୍ତି ଶୁଣ ବୋଲି ସ୍ଥାନୀୟ ପ୍ରେସିଡେଣ୍ଟ କୁଳମଣି ରାଜଗୁରୁ ହାଙ୍କିଲେ । ସଭା ନୀରବ ହୋଇ ବସିଲା । ଏସ୍.ଡି.ଓ. ରାୟସାହେବ ମାଧବଚନ୍ଦ୍ର ମିଶ୍ର ବକ୍ତୃତା ଆରମ୍ଭ କରିଦେଲେ । ତର୍ଜନ ଗର୍ଜନ ଭାବଭଙ୍ଗୀ ଲୋକମାନଙ୍କର ବେଶ୍ ଉପଭୋଗ୍ୟ ହେଲା । ଶ୍ରୀଯୁକ୍ତା ମାଳତୀ ଦେବୀଙ୍କ ଭାଷଣ ଶ୍ରୋତାଙ୍କ କର୍ଣ୍ଣରେ ତଥାପି ରଣିତ ହୋଇରହିଥାଏ, ମାଜିଷ୍ଟ୍ରେଟ୍‌ଙ୍କ ଭାଷଣ ପରେ ସ୍ଥାନୀୟ ବୃଦ୍ଧବ୍ରାହ୍ମଣ ଗୋବିନ୍ଦ ମିଶ୍ର ଆଉ ଧୈର୍ଯ୍ୟ ଧରିନପାରି ଛିଡ଼ାହେଲେ ଏବଂ ପଚାରିଲେ ''ମାଜିଷ୍ଟ୍ରେଟ୍ ସାହେବଙ୍କୁ ସଭାପକ୍ଷରୁ ମୁଁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଗୋଟିଏ ପ୍ରଶ୍ନ ପଚାରିବି ଏବଂ ତାହା ସଭାର ସନ୍ଦେହମୋଚନ କରିବାରେ ଟିକିଏ ସାହାଯ୍ୟ କରିବ ।'' ମାଜିଷ୍ଟ୍ରେଟ୍ ଅତି ଆଗ୍ରହରେ, ''କଣ କହିବାହେଉ, କଣ କହିବାହେଉ'' ବୋଲି ଅତି ଆଗ୍ରହରେ, ଅତି ନମ୍ରତାର ସହିତ ପଚାରିଲେ । ଗୋବିନ୍ଦ ମିଶ୍ର ପଚାରିଲେ, ''ଆଜିକୁ ତିନିଚାରି ମାସ ହେବ ଏ ଆନ୍ଦୋଳନ ଆରମ୍ଭ ହେଲାଣି, କଟକ ପ୍ରଭୃତି କେନ୍ଦ୍ରସ୍ଥଳୀମାନଙ୍କରେ ଏହା ଆରମ୍ଭ କରାଯାଇ ସୁଦୂର ପଲ୍ଲୀ ଅଞ୍ଚଳକୁ ବ୍ୟାପି ଆସିଲାଣି । ଆପଣ ମାଜିଷ୍ଟ୍ରେଟ୍ ସାହେବ; ସବୁ କ୍ଷମତା ଆପଣଙ୍କ ହାତରେ, ଏହାକୁ ସେଠାରେ ଶେଷନକରି ଏପର୍ଯ୍ୟନ୍ତ ଆସିବାକୁ ଦେଲେ କାହିଁକି ? ଆମମାନଙ୍କୁ ଜଣାଯାଉଛି ସେଠାରେ କିଛି କରିନପାରି ଆମକୁ ମଫସଲିଆ ଠଉରାଇ, ଏଠାରେ ଭୟ ଦେଖାଇଲେ ।''

—

# ଆକ୍ରମଣ ଓ ପ୍ରତ୍ୟାକ୍ରମଣର କାହାଣୀ-୩

ଚଟୁଆ ଶିବିରରୁ ବନ୍ଦୀହୋଇଥିବା ତିନିଜଣ ସତ୍ୟାଗ୍ରହୀ କଟକ ଚାଲାଣ ହୋଇଯିବା ପରେ, ଲୋକସାଧାରଣଙ୍କର ଜେଲଯିବା ଭୟ ଆଦୌ ରହିଲାନାହିଁ। ବରଂ ବନ୍ଦୀମାନଙ୍କ ପ୍ରତି ଯେଉଁ ସମ୍ବର୍ଦ୍ଧନା ଓ 'ବୀରପୂଜା'ର ବ୍ୟବହାର ଦେଖାଗଲା, ତାହା ଲୋକମାନଙ୍କ ମନରେ ଅଭୂତପୂର୍ବ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟିକରିବାକୁ ସକ୍ଷମ ହୋଇପାରିଥିଲା। ଲୋକେ ଜେଲଦଣ୍ଡ ବରଣ କରିବାକୁ ଦଳ ଦଳ ହୋଇ ସ୍ୱତଃ-ପ୍ରବୃତ୍ତଭାବେ ବାହାରିପଡ଼ିଲେ। ତେଣୁ ଆମ ପକ୍ଷରେ ପ୍ରତ୍ୟକ୍ଷ ସଂଗ୍ରାମକୁ ସୀମାବଦ୍ଧ ରଖିବା ସମ୍ଭବ ହୋଇପାରିଲାନାହିଁ। ଚଟୁଆ ଶିବିରରେ ନବାଗତ ସତ୍ୟାଗ୍ରହୀମାନଙ୍କ ଭିଡ଼ ବେଳକୁବେଳ ଅଧିକରୁ ଅଧିକ ହେବାକୁ ଲାଗିଲା। ରୋଷେଇବାସ, ଖିଆପିଆର ଘନଘଟା ଏତେ ବଢ଼ିଗଲା ଯେ ତାହା ଆୟତ୍ତ କରିବା ଅସମ୍ଭବ ହୋଇପଡ଼ିଲା। ଖାଇବା ରସଦ୍ ଇତ୍ୟାଦିର ଅଭାବ ତ ମୋଟେ ନଥିଲା, ସମସ୍ୟା ଥିଲା ପାନୀୟଜଳ। ସେହି ନିର୍ଘାତ ଗ୍ରୀଷ୍ମଋତୁରେ ଉପକୂଳବର୍ତ୍ତୀ କୁଜଙ୍ଗ ଅଞ୍ଚଳରେ ସାଧାରଣ ପାନୀୟଜଳ ଦୁଷ୍ପ୍ରାପ୍ୟ। ଗ୍ରାମସବୁ ଏପରି ଅଛି ଯେଉଁଠି ଲୋକମାନେ ପଙ୍କିଳ ଜଳ ପାନକରନ୍ତି କହିବା ଠିକ୍ ହେବନାହିଁ ବରଂ ଅଧିକ ଠିକ୍‌ହେବ ଜଳୀୟପଙ୍କ ପାନକରନ୍ତି। ଗୋଟିଏ ଛୋଟ ଗଡ଼ିଆରେ ଗାଧୋଇବା, ଲୁଗାକାଚିବା, ଗୋରୁଧୋଇବା ଓ ଅନ୍ୟାନ୍ୟ ଯାବତୀୟ ଶୌଚବିଧି ରକ୍ଷାକରିବାପାଇଁ ଆବଶ୍ୟକ ବ୍ୟବହାରରେ ଲଗାଇବା ଛଡ଼ା ରନ୍ଧାବଢ଼ା ବାସନ ମାଜିବାପାଇଁ ମାଠିଆ ସାହାଯ୍ୟରେ ବହନ କରିନିଆଯାଏ। ଅଧମାଇଲ ମଧ୍ୟରେ ପାନୀୟଜଳ ଥିଲେ ପୁରୁଷମାନେ ଭାରଦ୍ୱାରା ବୋହିଆଣନ୍ତି, ନଚେତ୍ ଏହି ଗ୍ରାମ୍ୟ ଗଡ଼ିଆ ଜଳକୁ ନାମକୁମାତ୍ର ଛାଣି ପାନୋପଯୋଗୀ କରନ୍ତି। ଅଣୁବୀକ୍ଷଣ ଯନ୍ତ୍ରର ବିନା ସାହାଯ୍ୟରେ, ଖାଲିଚକ୍ଷୁରେ ମଧ୍ୟ ଏହି ପାଣିରେ ଥିବା ଅସଂଖ୍ୟ ଜୀବାଣୁ ଦେଖାଯାନ୍ତି। ଅଥଚ ଲୋକେ ନିର୍ବିକାରଭାବେ ତାହା ପାନକରନ୍ତି।

ସ୍ୱାସ୍ଥ୍ୟରକ୍ଷାର ସମସ୍ତ ନିୟମକୁ ଲଂଘନ କରିବା ଏମାନଙ୍କପକ୍ଷେ ବ୍ୟତିକ୍ରମ ନୁହେଁ, ବରଂ ନିୟମ ଅଟେ। ତଥାପି ଆଶ୍ଚର୍ଯ୍ୟର କଥା ସେମାନଙ୍କ ସାଧାରଣ ସ୍ୱାସ୍ଥ୍ୟ ସ୍ୱାସ୍ଥ୍ୟରକ୍ଷା ନିୟମ ପାଳନ କରୁଥିବା ଲୋକଙ୍କଠାରୁ ଖୁବ୍ ଭଲ। ସ୍ୱାଧୀନତାର ବାର ତେରବର୍ଷ ପରେ ମଧ୍ୟ ସେମାନଙ୍କର ଏ ଅବସ୍ଥାର ପ୍ରତିକାର ହୋଇନାହିଁ। କେତୋଟି ଗ୍ରାମରେ ଗଭୀର ନଳ କୂପର ଉଦ୍ୟମ ସରକାରୀସ୍ତରରୁ କରାଯାଇଛି; କିନ୍ତୁ ତାହା ସର୍ବଥା ବିଫଳ ହୋଇଛି। ବୋଧହୁଏ ବିଜ୍ଞାନ ଏଠାରେ ହାରମାନିବାର

ଯଥେଷ୍ଟ ଆଶଙ୍କା ଅଛି । ଯାହାହେଉ ଏହି ପାନୀୟ ଜଳ ଅଭାବଜନିତ ପରିସ୍ଥିତିକୁ ଅତିକ୍ରମ କରିନପାରି, ସତ୍ୟାଗ୍ରହ ସମର ସଭାରେ ସ୍ଥିରହେଲା, ଆନ୍ଦୋଳନକୁ ସୀମାବଦ୍ଧ ନରଖି ବ୍ୟାପକ ଆକାର ଦେବାକୁ ।

ଏହି ସିଦ୍ଧାନ୍ତ ଅନୁଯାୟୀ ଶହେ ବର୍ଗମାଇଲର ଗୋଟିଏ ଅଞ୍ଚଳକୁ ସଂଗଠିତ କରାଗଲା । ଏରସମା ଗ୍ରାମଠାରୁ ଆରମ୍ଭକରି ପାରାଦ୍ୱୀପ ଗ୍ରାମ ପର୍ଯ୍ୟନ୍ତ ପ୍ରାୟ ଦଶବାର ମାଇଲ ଦୈର୍ଘ୍ୟ ଓ ବଣିକୁନ୍ଦଠାରୁ ଆରମ୍ଭକରି ସମୁଦ୍ରକୂଳ ପର୍ଯ୍ୟନ୍ତ ଆଠଦଶ ମାଇଲ ପ୍ରସ୍ଥ ଏକ ବିସ୍ତୃତ ଅଞ୍ଚଳ ମଧ୍ୟରେ ଅନ୍ତତଃ ତିନିଶହ ଗ୍ରାମ ଅବସ୍ଥିତ । ଏ ଅଞ୍ଚଳଟି ନାନା କାରଣରୁ ଗୁରୁତ୍ୱପୂର୍ଣ୍ଣ, ବିଶେଷତଃ ମୋ ପକ୍ଷରେ । କାରଣ ବର୍ଦ୍ଧମାନ ମହାରାଜାଙ୍କ ସହିତ ମୋର ଯେଉଁସବୁ ବୈଧାନିକ ସଂଘର୍ଷ ଘଟିଥିବାର ଏଥିପୂର୍ବେ ଉଲ୍ଲିଖିତ ଅଛି, ତାହାସବୁ ଏହି ଅଞ୍ଚଳ ମଧ୍ୟରେ ସୀମାବଦ୍ଧ । କୁଜଙ୍ଗର ବହୁସଂଖ୍ୟକ ନାବିକବଂଶର ଲୋକେ, ଉଦୟବଟ ସଂକ୍ରାନ୍ତ ବହୁସଂଖ୍ୟକ ଶିଷ୍ୟ ସାଧକମାନେ, କଂଗ୍ରେସ ସଂଗଠନଦ୍ୱାରା ପ୍ରଭାବିତ ହୋଇଥିବା ବହୁଲୋକ ଏ ଅଞ୍ଚଳର ସ୍ଥାନେ ସ୍ଥାନେ ନୀବିଡ଼ଭାବେ ବାସକରୁଥିବାରୁ ଏ ଅଞ୍ଚଳଟି ସବୁଦୃଷ୍ଟିରୁ ଅନୁକୂଳ ହୋଇଥାଏ । ଯଦିଓ କୁଜଙ୍ଗ ସବ୍‌ମେନେଜରଙ୍କ ଆଶ୍ୱାସନା ଉପରେ ଯଥେଷ୍ଟ ପ୍ରତ୍ୟୟ ରଖି ଏସ୍.ଡି.ଓ. ବଦ୍ଧମୂଳ ଧାରଣା କରିଥାନ୍ତି ଲୋକଙ୍କୁ ଉତ୍ପୀଡନଦ୍ୱାରା ନିବର୍ତ୍ତାଇଦେବେ ବୋଲି, କିନ୍ତୁ ମୁଁ ସ୍ଥିରପ୍ରତିଜ୍ଞ ହୋଇ ବସିଥାଏ ଅନ୍ତତଃ ଏକହଜାର ଲୋକ ଅନାୟାସରେ ଜେଲକୁ ପଠାଇଦେଇପାରିବି ବୋଲି । ତେଣୁ ଏକକାଳୀନ ବିଭିନ୍ନ ସ୍ଥାନରେ ପାଞ୍ଚଗୋଟି ଶିବିର ଖୋଲିଦିଆଗଲା । ଯଥା– ଏରସମା, ଜାରଦିଆ, ଚଟୁଆ, କାଳିଆପାଟ, ପାରାଦ୍ୱୀପ ।

ଏହି କେନ୍ଦ୍ରମାନଙ୍କର ପରସ୍ପର ମଧ୍ୟରେ ପ୍ରତିଯୋଗିତାର ଅଭାବ ନଥିଲା, କିଏ କେତେ କୃତିତ୍ୱ ଦେଖାଇବ ବୋଲି । କିନ୍ତୁ ସବୁଠାରୁ ବଡ଼ରକମର ଆୟୋଜନ ଚାଲିଥିଲା ଜାରଦିଆ ଓ ଚଟୁଆ ଦୁଇଟି କେନ୍ଦ୍ରର ସମ୍ମିଳିତ ଉଦ୍ୟମରେ । ଏହି ଦୁଇ ଅଞ୍ଚଳର ମଧ୍ୟବର୍ତ୍ତୀ ସ୍ଥାନରେ 'ଗଉଡ଼ଗୁଆଳୀ' ନାମରେ ଏକ ବିସ୍ତୃତ ପ୍ରାନ୍ତର ଅଛି । ଅନ୍ୟୂନ ଶହେ ଏକରରୁ ଅଧିକ ହେବ ଏହି ଐତିହାସିକ ପୀଠଟିରେ ବ୍ୟାପକ ଲୁଣମାରି ଲୁଣ ଆଇନ ଭାଙ୍ଗିବାକୁ ସନ୍ନିକଟସ୍ଥ ଗ୍ରାମବାସୀମାନେ ବଦ୍ଧପରିକର ହେଲେ । ଯେଉଁ ଗ୍ରାମମାନେ ସଂଗଠିତଭାବେ ଯୋଗଦେବାକୁ ପ୍ରତିଶ୍ରୁତ ହୋଇଥିଲେ ସେମାନେ ହେଉଛନ୍ତି ବଣିକୁନ୍ଦ, ପଙ୍କପାଳ, ଜହ୍ନପାଳ, ପହଣା ପାଇକାସ୍ତା, ରେପୁର, ବୋରିଖି, କରମୁଠା, ପାଟପୁର, ଜଲିଲ, ଚଟୁଆ, ସାହାଡ଼ା, ବାଲିପା, ପୋଖରିଆପଡ଼ା, ନଛିପୁରା, ଗୁରୁଗୁରିଆ, ନଳକଣି, ସିଂହପୁର, ଜାରଦିଆ, ପୋତାନଈ, ଭଅଁର କୋଲା, ଓକଲା, କୋଠମୂଳ, ଗରେଇ, ଲଥାଙ୍ଗ, ବିରୋଳ, ବିବଛପୁର, ଭରାଳ, ନାଳିଆପାଳ ।

ଏମାନଙ୍କ ବ୍ୟତୀତ ଅନେକ ଛୋଟ ଗ୍ରାମମାନେ ମଧ୍ୟ ଯୋଗଦେଇଥିଲେ । ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ସମୟରେ ପୂର୍ବୋକ୍ତ ପାଞ୍ଚଟି ସ୍ଥାନରେ ସତ୍ୟାଗ୍ରହ ଆରମ୍ଭହେଲା । ସବୁଠାରେ ଲୋକାରଣ୍ୟ । ଗଉଡ଼ଗୁଆଳୀ ପ୍ରଧାନ କୁରୁକ୍ଷେତ୍ରରେ ଅନ୍ତତଃ ଦଶହଜାର ଲୋକ ଏକତ୍ରିତ ହୋଇଥିଲେ । କାଳିଆପାଟ କେନ୍ଦ୍ରର ବିଶେଷତ୍ୱ ହେଲା— ସେଠାରେ ପାରାଦ୍ୱୀପର ବିଧବାରାଣୀ ଭାବବତୀ ପାଟମହାଦେବୀଙ୍କ ନେତୃତ୍ୱରେ କେବଳ କୈବର୍ତ୍ତ ରମଣୀମାନେ ଶତସହସ୍ର ସଂଖ୍ୟାରେ ବାହାରିଆସିଲେ । ପାରାଦ୍ୱୀପ କେନ୍ଦ୍ରର ବିଶେଷତ୍ୱ ହେଉଛି— ସେଠାରେ ଭାବବତୀଙ୍କ କନିଷ୍ଠା କନ୍ୟା ମାତ୍ର ତେରବର୍ଷ ବୟସ୍କା ରତ୍ନମାଳୀ ଜେମା ନେତୃତ୍ୱ ପ୍ରଦାନ କରୁଥିଲେ ଓ ସେଠାରେ ଆବାଳ-ବୃଦ୍ଧ-ବନିତା ମଧ୍ୟରେ ଭେଦାଭେଦ ରହିଲାନାହିଁ । ସେଦିନ ସରକାରୀ ପକ୍ଷ ସବୁସ୍ଥାନରେ ଯେପରି ସଦଳବଳରେ ଉପସ୍ଥିତ ଥିଲେ, ଆମ୍ଭେମାନେ ଆଶାକରିଥିଲୁ ଅନ୍ତତଃ ଶହେଲୋକ ଗିରଫଦାର ହେବେବୋଲି । କିନ୍ତୁ ଏରସମା କେନ୍ଦ୍ରରୁ ସମ୍ବାଦ ମିଳିଲା ସେଠିକାର ବିଶିଷ୍ଟ ବ୍ୟକ୍ତି ରାଧାକୃଷ୍ଣ କାନୁନଗୋ ଓ ରାଧାଶ୍ୟାମ ତ୍ରିପାଠୀ ମାତ୍ର ଦୁଇଜଣ ଗିରଫଦାର ହେଲେ ଏବଂ ପାରାଦ୍ୱୀପ କେନ୍ଦ୍ରରୁ ଖବର ପହଞ୍ଚିଲା ସେଠାରୁ ଯୁବକ-ନେତା ଦୁଇଜଣ ମାଗୁଣି ରଥ ଓ ଦାମୋଦର ରାୟ ଗିରଫଦାର ହେଲେ । ବିପ୍ଳବର ମୂଳକେନ୍ଦ୍ର 'ଗଉଡ଼ଗୁଆଳୀ' ବା କାଳିଆପାଟ କେନ୍ଦ୍ରରୁ ଗୋଟିଏ ହେଲେ କେହି ବନ୍ଦୀ ହେଲେନାହିଁ । ବୋଧହୁଏ ସେଠାରେ ବିରାଟ ଲୋକସମାଗମ ଦେଖି କର୍ତ୍ତୃପକ୍ଷ ଟିକିଏ ବିଚଳିତ ହୋଇଯାଇଥିଲେ । ତେଣୁ ସରକାରୀ ପକ୍ଷରୁ ସଂଯତ ହେବା ଅନୁଭବ କରି ଆମ୍ଭେମାନେ ଟିକିଏ ନିରୁଦ୍ୟମ ହୋଇପଡ଼ିଲୁଁ ।

ସରକାରୀ ନୀତିର ପରିଷ୍କାର ପରିଚୟ ମିଳିଲା ଯେ ସେମାନେ ଅଚାନକ ଗିରଫଦାରୀ କରିବେନାହିଁ । ସମସ୍ତେ ସବୁଆଡ଼େ ହୁଗୁଳା ହୋଇଗଲେ । ବର୍ତ୍ତମାନ ସବ୍-ମେନେଜର ବୁଝାଇଲେ ଓ ସରକାରୀ ପକ୍ଷ ବୁଝିଲେ ଯେ ମୋତେ ଗିରଫଦାର ନକଲେ ଏ ଆନ୍ଦୋଳନ ଅବ୍ୟାହତ ଗତିରେ ଚାଲୁରହିବ । ତେଣୁ ଛଳେ-ବଳେ-କୌଶଳେ ମୋତେ ଗିରଫ କରିବାକୁ ସିଦ୍ଧାନ୍ତ ସ୍ଥିରହୋଇଗଲା । ତିର୍ତ୍ତୋଲ ପୁଲିସ୍ ସବ୍ଇନ୍ସପେକ୍ଟରଙ୍କୁ ଯଥୋଚିତ ପରାମର୍ଶ ଦିଆଗଲା । ସମ୍ବଲପୁରର ଦିବାକରବାବୁ ତିର୍ତ୍ତୋଲ ଥାନା ଅଫିସର ଥିଲେ । ସେ ଟିକିଏ ଧର୍ମବିଶ୍ୱାସୀ ବ୍ରାହ୍ମଣ । ମୋ ବିରୋଧରେ କିଛିମାତ୍ର ପ୍ରମାଣ ନଥିବାରୁ ସେ ମୋତେ ଗିରଫ କରିବାକୁ ଟିକିଏ ସଙ୍କୋଚ ବୋଧକଲେ ଏବଂ ବଣିକୁନ୍ଦ ଗ୍ରାମବାସୀମାନଙ୍କ ଗଠିତ ବ୍ୟୂହ ଭେଦକରି ମୋତେ ଧରିବା ମଧ୍ୟ ତାଙ୍କ ପକ୍ଷରେ ଅସମ୍ଭବ ଥିଲା । କିନ୍ତୁ ଯୋଗପଡ଼ିଲା ଜ୍ୟେଷ୍ଠପୂର୍ଣ୍ଣିମା ଦିନ । ଏହାକୁ ସାଧାରଣତଃ ଦେବସ୍ନାନ ପୂର୍ଣ୍ଣିମା କୁହାଯାଏ । ମୋ ଦାୟିତ୍ୱରେ ଥିବା ଗଡ଼କୁଜଙ୍ଗ ଗ୍ରାମର ଶ୍ରୀ କୁଞ୍ଜବିହରୀ ଦାରୁବିଗ୍ରହମାନେ ସ୍ନାନ ଯାତ୍ରାକୁ ବାହାରିବା

କଥା । ସେ ବିଷୟରେ କିଛି ପରାମର୍ଶ କରିବା ଆବଶ୍ୟକ ହେବାରୁ ଉକ୍ତ ମନ୍ଦିରର ପ୍ରଧାନ ପୂଜକ ଦଧିଚନ୍ଦ୍ର ବଡ଼ପଣ୍ଡା ମୋ ସହିତ ସାକ୍ଷାତ୍ କରିବାକୁ ବଣିକୁନ୍ଦ ପର୍ଯ୍ୟନ୍ତ ଆସିଲେ ! ତାଙ୍କୁ ନିଜଲୋକ ଭାବି ଗ୍ରାମବାସୀମାନେ ତାଙ୍କ ଗତିରୋଧ କରିପାରିଲେନାହିଁ କିମ୍ବା ମୋ ସହିତ ଦେଖାକରିବାରେ ଏପରି କଟକଣା ଥିବା ସେ ଘୁଣାକ୍ଷରେ ଜାଣିପାରିଲେନାହିଁ । କଥାଭାଷା ଓ ଜଳଯୋଗ ପରେ ତାଙ୍କୁ ବିଦାୟ ଦିଆଗଲା । ସମସ୍ତଙ୍କର ଧାରଣା ସେ ସିଧା ଗଡ଼କୁଜଙ୍ଗ ଚାଲିଯିବେ, କାରଣ ତତ୍‌ପରଦିନ ସ୍ନାନଯାତ୍ରାର ସମସ୍ତ ଉଦ୍ୟୋଗ ତାଙ୍କଦ୍ୱାରା ଶେଷ କରିବାକୁ ହେବ । ଗ୍ରାମରୁ ବାହାରିଯିବା ପରେ ତାଙ୍କର ମନେପଡ଼ିଲା ଅଫିମ ଦୋକାନ କଥା, କାରଣ ସେ ଜଣେ ଅଫିମସେବୀ । ତେଣୁ ବୃଦ୍ଧ ବଡ଼ପଣ୍ଡା କୁଜଙ୍ଗ ବଜାର ଦିଗରେ ମୁହାଁଇଲେ । କୁଜଙ୍ଗ (ଅନନ୍ତପୁର ବଜାର) ବଣିକୁନ୍ଦଠାରୁ ଛଅମାଇଲ ଦୂର ଏବଂ ସେଠାରେ ଗୋଟିଏ ଅଫିମ ଦୋକାନ ଥିଲା । ବୃଦ୍ଧ ବଡ଼ପଣ୍ଡା ସେକାଳର ଲୋକ । ଅଫିମ ଘେନି ଗଡ଼କୁଜଙ୍ଗ ଅଭିମୁଖେ ଯାଉ ଯାଉ ଅନ୍ୟପକ୍ଷ ହାବୁଡ଼ରେ ପଡ଼ିଲେ । ଫଳରେ ସରଳ ସତ୍ୟପରାୟଣ ବୁଢ଼ା ବଡ଼ପଣ୍ଡାଙ୍କ ମୁଖରୁ ମୋ ଅବସ୍ଥାନ ଇତ୍ୟାଦି ବିଷୟସବୁ ସବ୍-ମେନେଜରଙ୍କ ଲୋକେ ବାହାରକରିନେଲେ ଏବଂ ପୁଲିସ୍ ସବ୍‌ଇନ୍‌ସପେକ୍ଟରଙ୍କୁ ଡକାଇ ମୋ ଅବସ୍ଥାନ ବିଷୟରେ ମୁକାବିଲା କରିଦେଲେ । ପୁଲିସ୍ ଅଫିସର ବିଚରା ପ୍ରମାଣ ଅଭାବ, ସନ୍ଧାନ ଅଭାବ ଇତ୍ୟାଦି ନାନା ଆଳ ଦେଖାଇ ମୋତେ ଗିରଫ କରିବାକୁ ଯାହାଟିକିଏ ଏଡୁଥିଲେ, ମୋ ନିଜ ଲୋକ ବଡ଼ପଣ୍ଡାଙ୍କ ମୁକାବିଲା ପରେ ତାଙ୍କ କର୍ତ୍ତବ୍ୟ ପରିଷ୍କାର ହୋଇଗଲା । ପରଦିନ ଅର୍ଥାତ୍ ଜ୍ୟେଷ୍ଠପୂର୍ଣ୍ଣିମା ଉପରବେଳା ସେ ଛଦ୍ମବେଶରେ ବଣିକୁନ୍ଦ ଗ୍ରାମରେ ପ୍ରବେଶକଲେ । ଗ୍ରାମର ପ୍ରହରୀମାନେ ଘୁଣାକ୍ଷରେ ଜାଣିପାରିଲେନାହିଁ ସେ ପୁଲିସ ଅଫିସର ବୋଲି । ବରଂ କୌଣସି କ୍ୟାମ୍ପରୁ ଜରୁରୀ ଖବର ଆଣି କିଏ ଆସିଥିବ ଅନୁମାନ କରି ସିଧା ମୋ ସହିତ ଦେଖାକରାଇଦେଲେ ।

ଚାରିଆଡ଼େ ଯେପରି ଆର୍ମଡ଼ ଫୋର୍ସଙ୍କର କୁଚକବାଜ୍ ଓ ପାଗ ପୋଷାକର ଧୁମ୍ ଚାଲିଥାଏ, କିଏ କାହିଁକି ବିଶ୍ୱାସ କରିବ ଯେ, ଏହି ଅକିଞ୍ଚନ ବେଶଧାରୀ ଲୋକଟି ସ୍ୱୟଂ ତିର୍ତ୍ତୋଲ ଥାନାର ମୁନ୍‌ସୀ ବୋଲି । ଫଳରେ ମୁଁ ପାଞ୍ଚମିନିଟ ମଧ୍ୟରେ ଯାତ୍ରା କରିବାକୁ ପ୍ରସ୍ତୁତ ହୋଇଗଲି ଓ ମୋ ଗିରଫ ହେବା ସମ୍ବାଦ ବିଜୁଳିଠାରୁ ଦ୍ରୁତଗତିରେ ଚାରିଆଡ଼େ ଖେଳିଗଲା । ଆମ ବଣିକୁନ୍ଦ ଗ୍ରାମବାସୀ ଆମ ଖମାରରେ ଆସି ରୁଣ୍ଡ ହୋଇଗଲେ ଏବଂ ସେମାନଙ୍କ ମଧ୍ୟରେ ମହନୀ ରାଉତ ପ୍ରମୁଖ ଡିହସାହିର ଯେଉଁ ଉଗ୍ରପନ୍ଥି ଲୋକେ ଥିଲେ ସେମାନଙ୍କଠାରେ ବଳପ୍ରୟୋଗଦ୍ୱାରା ବାଧାଦେବାର ସମସ୍ତ ଲକ୍ଷଣ ପ୍ରକାଶ ପାଉଥିଲା । ମୁଁ ସତ୍ୟାଗ୍ରହର ବିଶେଷତ୍ୱ ଶାନ୍ତି ଶୃଙ୍ଖଳାର

ମର୍ଯ୍ୟାଦା ଇତ୍ୟାଦି ବିଷୟରେ କେତେକଥା ବୁଝାଇବା ପରେ ସେମାନେ କିଛି କରିପାରିଲେନାହିଁ ବୋଲି ଅନୁତାପର ବେଗ ସମ୍ଭାଳିନପାରି ଭୋଭୋ କାନ୍ଦିଉଠିଲେ । ମୋ ପୋଷ୍ୟମାତା ମଧ୍ୟ ସେଠାରେ ଅବସ୍ଥାନ କରୁଥିଲେ । ସେ ଆଗରୁ ରମାଦେବୀ ଓ ମାଳତୀ ଦେବୀ ଆଦିଙ୍କ ପ୍ରେରଣାରେ ଯଥେଷ୍ଟ ଦମ୍ଭ ଥିଲେ ମଧ୍ୟ କାନ୍ଦିପକାଇଲେ । ଚାରିଆଡ଼େ ଅଶ୍ରୁଳ ଦୃଶ୍ୟ ଓ କ୍ରନ୍ଦନର ଚାପାଧ୍ୱନି ସମଭିବ୍ୟାହାରରେ ମୋତେ ଦୁଇମାଇଲ ପଥ ଅତିକ୍ରମ କରିବାକୁ ପଡ଼ିଲା ଏବଂ ବହୁକଷ୍ଟରେ ଲୋକମାନଙ୍କୁ ନିବର୍ତ୍ତାଇ ଫେରାଉ ଫେରାଉ ପ୍ରାୟ ସଂଧ୍ୟା ହୋଇଗଲା । ମୁଁ ପଶ୍ଚିମ ଦିଗରୁ ପୂର୍ବଦିଗକୁ ଯାଉଥିଲି, ତେଣୁ ପୂର୍ଣ୍ଣିମାର ଚନ୍ଦ୍ରୋଦୟ ମୋତେ ସ୍ପଷ୍ଟ ଦେଖାଯାଉଥିଲା । ମୋର ଠିକ୍ ମନେଅଛି ତାଳଦଣ୍ଡା କେନାଲ ଲକ୍ ଉପରେ ମୁଁ ଏହି ଚନ୍ଦ୍ରୋଦୟର ଶୋଭାକୁ ଦେଖି ସମୁଦ୍ରକୂଳରେ ବସି ଦୂର ଦିଗ୍‌ବଳୟର ଶୋଭା ନିରୀକ୍ଷଣ କରି ଆନନ୍ଦ ଉପଭୋଗ କରେଁ । କିନ୍ତୁ ଏ ଦିନର ଚନ୍ଦ୍ରୋଦୟ କେଜାଣି କାହିଁକି ମୋତେ ସବୁଠାରୁ ଭଲଲାଗିଲା । ସେହିପରି ଭଲଲାଗିଥିଲା ବୋଲି ଆଜିପର୍ଯ୍ୟନ୍ତ ଦୀର୍ଘ ତିରିଶ ବର୍ଷ ଅତୀତ ହୋଇଥିଲେ ମଧ୍ୟ ସ୍ମୃତିପଟରେ ଲାଖିରହିଛି । ଏହାର ଅନ୍ୟତମ କାରଣ ଏପରି ହୋଇପାରେ ଯେ, ସେତେବେଳେ ମୋ ମନରେ ଗୌରବର ଅନୁଭୂତି ଖେଳିଉଠିଥିଲା ।

ଗତ ଦୁଇ ତିନିମାସର ଅକ୍ଳାନ୍ତ ପରିଶ୍ରମରେ ଏକେତ ଶ୍ରାନ୍ତ ହୋଇଉଠିଥିଲି ଏବଂ ବିଶ୍ରାମ ମୋପକ୍ଷରେ ନିତାନ୍ତ ଆବଶ୍ୟକ ହେଉଥିଲେ ମଧ୍ୟ କୌଣସି ଉପାୟ ନଥିଲା । ଦ୍ୱିତୀୟରେ ସରକାରୀପକ୍ଷ ସଂଯମର ସହିତ କର୍ମୀମାନଙ୍କୁ ଗିରଫ କରୁଥିବାରୁ ନିକଟ ଭବିଷ୍ୟତ୍‌ରେ ଅନ୍ତତଃ ମୋ ଗିରଫଦାରୀର ସମ୍ଭାବନା ସୁଦୂରପରାହତ ହୋଇଥିଲା । ମାସମାସଧରି ଦିନନ୍ଦିନନାହିଁ, ରାତିରାତିନାହିଁ, ଧାଁଧପଡ଼, ଆଲୋଚନା କରି କରି ଯେବେ ଜେଲକୁ ଯିବା ନୋହିଲା, ତେବେ ହେଲା କ'ଣ ? ଏହିପରି ଏକ ବ୍ୟର୍ଥତାର ସମ୍ମୁଖୀନ ହେଉଥିଲାବେଳେ, ମୋ ଗିରଫଦାରୀ ମୋତେ ଏକ ଅପୂର୍ବ ପୁରସ୍କାର ପରି ବୋଧହେଲା ଏବଂ ସେହି କୃତିତ୍ୱମୟ ସାଫଲ୍ୟର ଗୌରବରେ ଗୌରବାନ୍ୱିତ ହେବା ଉପଲବ୍ଧି କରି ଯେଉଁ ନିର୍ମଳ ତ୍ୟାଗପୂତ ଆନନ୍ଦ ଅନୁଭବ କଲି ତହିଁରେ ମୋତେ କେଉଁ ଏକ ଅନିର୍ବଚନୀୟ ସୁଖସମ୍ପଦ ଘାରିରଖିଲା । ମୋତେ ଜଣାଯାଉଥିଲା ଚାରିଆଡ଼େ ସତେଯେପରି ବିଜୟର ଏକ କକ୍ଷ ମୋତେ ଘେରିରଖିଚି ଓ ସେହି କକ୍ଷରେ ମୁଁ ଅଗ୍ରଗତି କରିଚାଲିଛି । ପରିଦୃଶ୍ୟମାନ ଜଗତର ସମସ୍ତ ବସ୍ତୁ ମୋ ପକ୍ଷରେ ଆନନ୍ଦଦାୟକ ବୋଧହେଉଥିବାବେଳେ ଜ୍ୟେଷ୍ଠପୂର୍ଣ୍ଣିମାର ସେହି ନବୋଦିତ ପୂର୍ଣ୍ଣଚନ୍ଦ୍ର ବୃକ୍ଷ ପତ୍ର ଫାଙ୍କରେ ରଶ୍ମିର ଯେଉଁ ତୀର୍ଯ୍ୟକ ଆଲୋକପାତ କରୁଥିଲେ, ତାହା ମୋ ପକ୍ଷରେ କିପରି ମନୋମୁଗ୍ଧକର ହେଉଥିବ, ତାହା ପାଠକେ, ପରାଧୀନ ଦେଶର ସ୍ୱାଧୀନତାପାଇଁ ଉତ୍ସର୍ଗୀକୃତପ୍ରାଣ ସୈନିକର ବିଜୟୋଲ୍ଲାସରେ ଉତ୍‌ଫୁଲ୍ଲ ହେବାର ସୁବିଧା ପାଇନଥିବା ବ୍ୟକ୍ତିକୁ କିପରି ବୁଝାଇବି ?

କର୍ତ୍ତୃପକ୍ଷଙ୍କ ଗଭୀର ସନ୍ତୋଷ, ଉତ୍ସାହପ୍ରଦ ବାତାବରଣ ମଧ୍ୟରେ ମୁଁ କୁଜଙ୍ଗର ସରକାରୀ କ୍ୟାମ୍ପରେ ପ୍ରବେଶକଲି । ଇଷ୍ଟେଟ୍ ଡାକ୍ତରଖାନା ସହିତ ରୋଗୀ ରହିବାପାଇଁ ଯେଉଁ ଛୋଟ ଘରଟିଏ ଅଛି, ତାହା ମୋ ରହିବାପାଇଁ ଉଦ୍ଦିଷ୍ଟ ହୋଇଥିଲା ଏବଂ କଡ଼ା ପ୍ରହରାଦ୍ୱାରା ତାହା ସର୍ବତୋଭାବେ ସୁରକ୍ଷିତ ହୋଇଥିଲା । ବନ୍ଦୀଘରେ ରହିଲି ସତ କିନ୍ତୁ ଯେଉଁ ସଶସ୍ତ୍ରପ୍ରହରୀ ଜଗୁଆଳଭାବେ ନିଯୁକ୍ତ ହୋଇଥିଲେ କେଜାଣି କାହିଁକି ମୋପ୍ରତି ଏପରି ଭଦ୍ରତା ଆଚରଣ କରୁଥିଲେ ଯେ, ବାହାର ଲୋକେ ମୋ ସହିତ ସ୍ୱଚ୍ଛନ୍ଦରେ କଥାଭାଷା କରିପାରୁଥିଲେ । ସେହି ସୁଯୋଗରେ ଶୁଣିବାକୁ ପାଇଲି, ଏସ୍.ଡି.ଓ., ସବ୍-ମେନେଜରଙ୍କ ସେଦିନର କୃତିତ୍ୱ । ଦୁଇଦିନ ଆଗରୁ କାଳିଆପାଟରେ ନାରୀମାନଙ୍କଦ୍ୱାରା ଯେଉଁ ଆଇନଭଙ୍ଗ କରାଯାଇଥିଲା, ତାହାର ପ୍ରତିକ୍ରିୟାସ୍ୱରୂପ ସେଦିନ ଉପରୋକ୍ତ ହାକିମମାନେ କାଳିଆପାଟ ଗସ୍ତରେ ଯାଇଥିଲେ । ସେମାନେ ଜାଣନ୍ତି ମୋର ସର୍ବାପେକ୍ଷା ସୁଦୃଢ଼ ବ୍ୟୂହ ହେଉଛି କାଳିଆପାଟ ଏବଂ ଲୋକମାନେ ସମସ୍ତେ ମୋପ୍ରତି ଅତ୍ୟନ୍ତ ଅନୁରକ୍ତ । ମହାନଦୀର ବିରାଟ ମୁହାଣ ଅଞ୍ଚଳରେ ମାଛ ଧରିବାପାଇଁ ଏମାନେ ସର୍ବଦା ସଂଗଠିତ ଓ ଶୃଙ୍ଖଳାବଦ୍ଧ ନହେଲେ ଜୀବିକାର୍ଜନ ହୋଇପାରିବନାହିଁ ବୋଲି ଏକତା ରକ୍ଷାକରିବା ସେମାନଙ୍କ ପକ୍ଷରେ ଏକ ସ୍ୱାଭାବିକ କର୍ତ୍ତବ୍ୟ, ଧର୍ମ କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ କି ଉପାୟରେ ଏମାନଙ୍କ ଏକତା ଭାଙ୍ଗିବ, ସେଥିପାଇଁ ସ୍ୱତନ୍ତ୍ର ଦାୟିତ୍ୱ ଗ୍ରହଣ କରିଥିଲେ ସ୍ୱୟଂ ରାଏସାହେବ ମାଧବଚନ୍ଦ୍ର ମିଶ୍ର ଏସ୍.ଡି.ଓ. । ଆଗରୁ ଏହି ନାବିକମାନଙ୍କ ସହିତ ଘମାଘୋଟ ବୈପ୍ଲବିକ ମାଲିମକଦମାରେ ବର୍ଷ ବର୍ଷ ଧରି ଲିପ୍ତରହି ଯଦିଓ ମିଳାମିଶା ହୋଇଥାଏ, ତଥାପି ସବ୍-ମେନେଜର୍ ପ୍ରତିହିଂସାପରାୟଣତାରୁ ମୁକ୍ତ ନଥିଲେ, କାରଣ ପ୍ରାୟ ସବୁଗୁଡ଼ିକ ମକଦମାରେ ସେ ଶୋଚନୀୟଭାବେ ହାରିଥିଲେ । ଯେଉଁ ଗୋଟିକ ମକଦମାରେ ଜିତିଥିଲେ ତାହା ହେଉଛି, ପିପଳ ଗ୍ରାମବାଟେ ସବ୍-ମେନେଜର ଘୋଡ଼ାଚଢ଼ି ଯାଉଥିବା ସମୟରେ ସ୍ଥାନୀୟ ନାବିକ-ନେତା ଦୀନେଇ ମାଝିଙ୍କ ପୁଅ ପୁତୁରାମାନେ ଦଳବଦ୍ଧ ହୋଇ ଅଶ୍ୱାରୋହୀ ସବ୍-ମେନେଜରଙ୍କୁ ଆକ୍ରମଣ ଓ ଅପମାନିତ କରିଥିଲେ ଓ ଏପରିକି ମୂଲ୍ୟବାନ୍ ଘୋଡ଼ାଟି ମଧ୍ୟ ଖବିରା (ଖଞ୍ଜ) ହୋଇଯାଇଥିଲା ବୋଲି ସେଥିରେ ମୁଦାଲାମାନଙ୍କୁ ପଚିଶ ଟଙ୍କା ଲେଖାଁ ଜୋରିମାନା ହୋଇଥିଲା । ସବ୍-ମେନେଜର ସାହେବ ସେ ଦୁର୍ଘଟଣାର ସ୍ମୃତିସବୁ ଭୁଲିନଥିଲେ ଓ ପ୍ରତିହିଂସାର ସୁଯୋଗ ଖୋଜୁଥିଲେ । ଏଥର ପଥ ପରିଷ୍କୃତ ଜାଣି ଏସ୍.ଡି.ଓ.ଙ୍କ ସମଭିବ୍ୟାହାରରେ କାଳିଆପାଟ ଯାଇଥିଲେ ଲୋକଙ୍କୁ ଦେଖାଇବାକୁ ଯେ, ଏତେବେଳେ ଇଚ୍ଛାକଲେ ସେ ସବୁ କରିପାରନ୍ତି ଏହା ଯେପରି ଲୋକେ ବୁଝି ଯଥେଷ୍ଟ ନମ୍ରତା ଆଚରଣ କରନ୍ତୁ ଏବଂ ପୂର୍ବଦୁଷ୍କୃତିମାନଙ୍କର ସଂଶୋଧନ ଲାଗି ଅନୁତାପ ଓ କ୍ଷମାଭିକ୍ଷା କରନ୍ତୁ । ଯଥା ସମୟରେ କାଳିଆପାଟ

ଦାଣ୍ଡ ଅଶ୍ୱାରୋହୀ ଦୁହିଁଙ୍କ ଅଶ୍ୱପାଦ ଶବ୍ଦରେ ମୁଖରିତ ହୋଇଉଠିଲା ଓ ପିଲାମାନେ କୌତୂହଳାକ୍ରାନ୍ତ ହୋଇ ଅଶ୍ୱାରୋହୀଙ୍କ ଅନୁସରଣ କଲେ ।

କାଳିଆପାଟ ମଧ୍ୟବର୍ତ୍ତୀ ସ୍ଥାନରେ କାବଲପୁର ମଠରେ ସତ୍ୟାଗ୍ରହୀମାନଙ୍କ ଶିବିର । ସବୁବେଳେ ଶହେ ଦେଢ଼ଶ ଲୋକ ରୁଣ୍ଡ । ସେଠାରେ ଅଶ୍ୱମାନେ ପହଞ୍ଚିବା ମାତ୍ରେ ଲୋକମାନେ ମଠହତା ବାହାରକୁ ଆସି ହାକିମମାନଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ହାକିମମାନଙ୍କର ଉଦ୍ଦେଶ୍ୟ କିନ୍ତୁ ସ୍ୱତନ୍ତ୍ର । ଅଶ୍ୱରୁ ଅବତରଣ କରିବା ଆଗରୁ ହାକିମଙ୍କର ଭାଷଣ ଆରମ୍ଭ ହୋଇଗଲା । ଲୋକେ ବିଶେଷତଃ ସ୍ତ୍ରୀଲୋକମାନେ ପୂର୍ବଦିନ ଯେପରି ପାରାଦ୍ୱୀପ ରାଣୀଙ୍କ ନେତୃତ୍ୱରେ ଆଚରଣ ଦେଖାଇଲେ ତାହା କ୍ଷମାର ଅଯୋଗ୍ୟ ହେଲେ ମଧ୍ୟ ହାକିମ ଦୟାକରି ସ୍ତ୍ରୀଲୋକମାନଙ୍କୁ ଛାଡ଼ିଦେଇଛନ୍ତି । ଇଚ୍ଛାକରିଥିଲେ ସମସ୍ତଙ୍କ ମାଇକିନାଙ୍କୁ ହଳି ହଳି ବାନ୍ଧି... ଠିକ୍ ଏହି ସମୟରେ ଜନତା ମଧ୍ୟରୁ ଶବ୍ଦ ଶୁଣାଗଲା, ''ଖଞ୍ଜମେ ଚାଲୁ ।'' ଜଣେ ପାଗଳ ପ୍ରାୟ ଏହିପରି କହିବୁଲେ । ତେତେବେଳେ ସତ୍ୟାଗ୍ରହୀଙ୍କ ଶିବିରରେ ଖାଦ୍ୟଲାଳସାରେ ସେ ମଧ୍ୟ ଜୁଟିଥିଲା । ଅଭ୍ୟାସ ଅନୁସାରେ ସେ ''ଖଞ୍ଜମେ ଚାଲୁ'' କହିଦେବାବେଳେ ହାକିମଦୁହିଙ୍କୁ ଶୁଭିଯିବାମାତ୍ରେ ଘୋଡ଼ାଙ୍କୁ ଫେରାଇ 'ବେଦଉଡ଼' । ହାକିମ ଦୁହିଙ୍କର ଧାରଣା ହେଲା ଯେ କୌଶଳରେ ମାଡ଼ ଚଢ଼ାଇବାପାଇଁ କିଏ ନିର୍ଦ୍ଦେଶ ଦେଲା । ଉପସ୍ଥିତ ଲୋକେ କେହି କିଛି ବୁଝିପାରିଲେନାହିଁ– କିନ୍ତୁ ପିଲାଏ ଛୁଡ଼ିବେ କେତେକେ ? କୌତୂହଳାକ୍ରାନ୍ତ ପିଲାଏ ତାଳିମାରି ଘୋଡ଼ା ପଛରେ କହି କହି ଦଉଡ଼ିଲେ ''ମାଧିଆନନା–ଘର ପୋଡ଼ିଗଲା ପଛକୁ ଅନା ।'' କିନ୍ତୁ ଅଶ୍ୱାରୋହୀମାନଙ୍କର ପଛକୁ ଅନାଇବାକୁ ସାହସ ନଥିଲା । ଏକାଦମକେ ଦୁଇମାଇଲ ପଥ ଅତିକ୍ରମ କରି ଆସି କୁଜଙ୍ଗ କ୍ୟାମ୍ପରେ ନିଶ୍ୱାସ ମାରିଲେ । କଥା ସ୍ଥିରହେଲା ଏପରି ଜଘନ୍ୟ ଆଚରଣର ପ୍ରତିଶୋଧ ଗ୍ରହଣ କରିବାକୁ ପରଦିନ ପ୍ରତ୍ୟୁଷରେ ଉପସ୍ଥିତ ଥିବା ପଚିଶଜଣ ଆର୍ମଡ଼ ପୁଲିସ କାଳିଆପାଟ ଦାଣ୍ଡରେ କୁଚକବାଜ କରିବେ ଏବଂ ଯଦି ଟିକିଏ କେହି ଉଁଚୁ ହେଲା ସାଥେ ସାଥେ ଗିରଫ କରିବେ । ତଥାପି ଯଦି କେହି ପ୍ରତିରୋଧ କଲା ଗୁଳିଚଳାଇଦେବେ । ସେଥିପାଇଁ ମାଜିଷ୍ଟ୍ରେଟ୍ ନିଜେ ଦାୟୀ । ଏ ପ୍ରସ୍ତାବ କାର୍ଯ୍ୟକାରୀ ହେବାକୁ ଯଥୋପଯୁକ୍ତ ଆଦେଶନାମା ଲେଖାହୋଇ ହାବିଲଦାରଙ୍କୁ ଦିଆହୋଇଗଲା । ସେହିଦିନ ସଂଧ୍ୟା ପରେ ମୋ ଗିରଫଦାରୀ ଖବର ପାଇ ହାକିମ ଅନେକଟା ଆଶ୍ୱସ୍ତ ହେଲେ । କାଳିଆପାଟ ଘଟଣା ବିଷୟରେ ମୁଁ କିଛି ଜାଣିବାର ସୁବିଧା ପାଇନଥିଲି । ବନ୍ଦୀଘରେ ରହିବା ପରେ ମୋଟାମୋଟି ଖବରପାଇଲି ହାକିମମାନେ କାଳିଆପାଟ ଯାଇଥିଲେ ଓ ସେଠାରେ କିଛି ବିଭ୍ରାଟ ଘଟିଥିବାରୁ କାଲି ସକାଳେ ସେଠାକୁ ଆର୍ମଡ଼ ଫୋର୍ସ ଯାଉଛନ୍ତି । ତେଣୁ ସାରା ରାତିଟାଯାକ ମୋତେ ଉଦ୍‌ବିଗ୍ନରେ କଟାଇବାକୁ ପଡ଼ିଲା । ପରଦିନ ପୂର୍ବାହ୍ନ ସାତଟା ସମୟରେ ବିଗୁଲ

ବାଜିଉଠିଲା ଓ କ୍ଷୁଦ୍ର ସଶସ୍ତ୍ରବାହିନୀଟି ରାଇଫଲ ବନ୍ଧୁକ କାନ୍ଧରେ ପକାଇ ସଙ୍ଗିନ୍‌ମୁନ ଆକାଶ ଦିଗରେ ଆସ୍ଫାଳନକରି କୁଜଙ୍ଗ ରାସ୍ତାରେ ଶୃଙ୍ଖଳାବଦ୍ଧଭାବରେ ଗତି ଆରମ୍ଭ କରିଦେଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ସେମାନଙ୍କ ଉଦ୍ଦେଶ୍ୟ ଓ ଅଭିସନ୍ଧି ବୁଝିନପାରି । କିନ୍ତୁ ମୁଁ ଜାଣିଲି ବାହିନୀର ଗତି କାଳିଆପାଟ ଅଭିମୁଖରେ ବୋଲି । ପନ୍ଦର କୋଡ଼ିଏ ମିନିଟି ଅତିବାହିତ ହୋଇଛି କି ନାହିଁ, ବାହିନୀଟି ସମାଗୋଳ ଓ କାଳିଆପାଟ ଗ୍ରାମ ଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନରେ ପହଞ୍ଚିଥିବେ । ଏହି ସମୟରେ ପଶ୍ଚିମଆଡୁ ଝଙ୍କାରିଆ ପବନସାରେ ବୋହିଆସିଲା । ସଙ୍ଗେ ସଙ୍ଗେ ବିଦ୍ୟୁତ, ଘଡ଼ଘଡ଼ି, ବର୍ଷା ଆରମ୍ଭ ହୋଇଗଲା । ସେପରି ବିଦ୍ୟୁଦ୍ଦାମ, ସେପରି ବଜ୍ରଧ୍ୱନି, ସେପରି ସାନ୍ଦ୍ର ବର୍ଷା, ସେପରି ନିବିଡ଼ ବର୍ଷଣ, ଅନ୍ତତଃ ମୋ ଜୀବନରେ ମୁଁ କେବେ ଦେଖିନାହିଁ । ଗୋଟିଏ ଗୋଟିଏ ବିଦ୍ୟୁତ୍ ରେଖା ଦିଗ୍‌ବଳୟର ଏପ୍ରାନ୍ତରୁ ସେପ୍ରାନ୍ତ ପର୍ଯ୍ୟନ୍ତ ଜଳିଉଠି ଆକାଶମଣ୍ଡଳକୁ ସତେଯେପରି ଦ୍ୱିଧା ବିଭକ୍ତ କରିଦେଉଥାଏ, ତତୋଧିକ ଶବ୍ଦରେ ବଜ୍ର କର୍ଣ୍ଣରନ୍ଧ୍ର ଫଟାଇଦିଏ, ବର୍ଷାର ବେଗ ପ୍ରାୟ ପାଞ୍ଚମିନିଟରେ ଏକଇଞ୍ଚ ହେଲାଭଳି, ବାୟୁକୁ ତୋଫାନ କହିଲେ ଅତ୍ୟୁକ୍ତି ହେବନାହିଁ । ଦାରୁଦ୍ରୁମ ମାତ୍ରେ ତଳେ ଆସି ଲୋଟିଯାଉଥାନ୍ତି । ପ୍ରଳୟର ତାଣ୍ଡବ ଆଉ କାହାକୁ କୁହନ୍ତି ! ଘଣ୍ଟାଏ ମଧ୍ୟରେ ଆଠ ଦଶଇଞ୍ଚ ବର୍ଷା ହୋଇ ସବୁ ଶାନ୍ତାକାର ଧରିଲା । ପୃଥିବୀ ସୌମ୍ୟମୂର୍ତ୍ତି ଧାରଣ କଲା । ଯଥା ସମୟରେ ଦେଖାଗଲା ସଶସ୍ତ୍ରବାହିନୀ ଓଦା ବିଲେଇଟିମାନଙ୍କ ପରି ଜୁଡୁବୁଡୁ ହୋଇ, ପବନ ବେଗରେ ଥରି ଥରି ପଗଡ଼ିକନାରେ ବନ୍ଧୁକଟିମାନ ଘୋଡ଼ାଇ ନାକେଦମରେ ଗୋଟି ଗୋଟି ହୋଇ କିଏ କେଉଁବାଟରେ ଫେରୁଛନ୍ତି । ସର୍ବାପେକ୍ଷା ଶୋଚନୀୟ ବ୍ୟାପାର ଘଟିଥିଲା ସେମାନଙ୍କ ବୁଟ୍‌ଜୋତା ସମ୍ପର୍କରେ । ଯେଉଁ ଅଞ୍ଚଳକୁ ଯାଇଥିଲେ, ତାହାସବୁ ଲବଣାକ୍ତ ଅଞ୍ଚଳ । ଖରାରେ ମାଟି ଶୁଖିଥିଲା, ବର୍ଷା ହେବାମାତ୍ରେ ଫଉଲିଉଠିଲା । ବୁଟ୍‌ଜୋତା ପଡ଼ିବା ମାତ୍ରେ ପ୍ରତି ପଦକ୍ଷେପରେ ଅନ୍ତତଃ ପାଚିଆଏ ମାଟି ଉଠିଲା । ଫଳରେ ବୁଟ୍‌ଜୋତା ମାଟିସମେତ ହାତରେ କିମ୍ବା ବନ୍ଧୁକ ସାହାଯ୍ୟରେ କାନ୍ଧରେ ପକାଇ କାଳିଆପାଟ ଅଭିଯାନର ମର୍ମନ୍ତୁଦ ସ୍ମୃତି ଘେନି ଫେରିଲେ । ଏହି ଘୋର ବୃଷ୍ଟିପ୍ରଭାବରେ ଲବଣ ଅଭିଯାନ ମଧ୍ୟ ସ୍ୱତଃ ବନ୍ଦହୋଇଗଲା ।

---

# ବିଚାରର ବ୍ୟଭିଚାର

ଗିରଫଦାରୀ ପରେ ମୋର ବିଚାର ହେବାର କଥା । ବିଚାରର ପୁଣି ଧାରାଅଛି । କଟକ ଚାଲାଣ ହୋଇଗଲେ ଓ ସେଠାରେ ବିଚାର ହେଲେ ଭିତିରି ସରକାରୀ ନିର୍ଦ୍ଦେଶ ସତ୍ତ୍ୱେ କୌଣସି ମାଜିଷ୍ଟ୍ରେଟ ଏତେ ତଳକୁ ଓହ୍ଲାଇଆସି ମୋତେ ଦଣ୍ଡ ନଦେବାର ମଧ୍ୟ ଯଥେଷ୍ଟ ଆଶଙ୍କା ଥିଲା, କାରଣ ମୁଁ ଜଣେ ଜଣାଶୁଣା ମକଦମାବିଷାରଦ ଲୋକ ଓ ବର୍ଦ୍ଧମାନ ସବ୍-ମେନେଜର ତାର ଜ୍ୱଳନ୍ତ ଓ ଜୀବନ୍ତ ପ୍ରମାଣ । ତାଙ୍କଦ୍ୱାରା ହୋଇଥିବା ସମସ୍ତ ମକଦମାଗୁଡ଼ିକ ମୁଁ କୃତିତ୍ୱର ସହିତ ଲଢ଼ିଥିଲି । ମକଦମା ଇତ୍ୟାଦିରେ ମୋ ତଦ୍‌ବିର ଉଚ୍ଚକୋଟୀର ଥିଲା ଏବଂ ମାଲିମକଦମାରେ ଟିକ୍‌ନିଖ ତ୍ରୁଟିକୁ ଧରିବା ମୋ ପକ୍ଷରେ ଏକ ସର୍ବବାଦିସମ୍ମତ ଦକ୍ଷତା ବୋଲି ମୋର ସୁନାମ ବା ଦୁର୍ନାମ ଥିଲା । ସେଥିପାଇଁ ମୋର ବିରୁଦ୍ଧାଚରଣ କରିବା ଆଗରୁ ଶତ୍ରୁପକ୍ଷକୁ ବାରମ୍ବାର ଚିନ୍ତା କରିବାକୁ ପଡୁଥିଲା । ତେଣୁ ମିତ୍ରପକ୍ଷ ଲୋକେ ଟିକିଏ ଅଡୁଆ ପଡ଼ିବା ମାତ୍ରେ ମୋ ପାଖକୁ ଦଉଡ଼ି ଆସୁଥିଲେ । ଏ ସମ୍ପର୍କରେ ମୋ ଦକ୍ଷତା ଯେକୌଣସି ଲବ୍‌ଧପ୍ରତିଷ୍ଠ ଓକିଲ ପରି ଗଢ଼ିଉଠିଥିଲା ଏବଂ ମୁଁ ଇଚ୍ଛାକରିଥିଲେ ଏହି ସୁବିଧାରେ ମୋର ବୈଷୟିକ ବ୍ୟାପାରକୁ ବ୍ୟାପକ ଆକାର ଦେବାରେ ମୋତେ ଟିକିଏ ହେଲେ କଷ୍ଟ ପଡ଼ିନଥାନ୍ତା; କିନ୍ତୁ ମୋ ପକ୍ଷରେ ଫଳ ଓଲଟା ହେଉଥିଲା । ଏପରି ମକଦମା ମୁଁ ହାତକୁ ନେଉଥିଲି, ପ୍ରତ୍ୟେକଟିରେ ମୋତେ ପ୍ରଚୁର ଖର୍ଚ୍ଚ କରିବାକୁ ପଡୁଥିଲା ଏବଂ ଯଦି କୌଣସି ପକ୍ଷ କେତେବେଳେ ମୋତେ ନିଜଖର୍ଚ୍ଚପାଇଁ କିଛି ଦେଉଥିଲା ତାହା ମୋ ଜନ୍ମଗତ ଆଭିଜାତ୍ୟ ଉପରେ କଠୋର ଛାୟାପାତ କରୁଥିଲା ଏବଂ ମୋ ମୌଳିକ ଅଭିମାନ ସେ କ୍ଷେତ୍ରରେ ଜର୍ଜର ହୋଇଉଠୁଥିଲା । ମୋ ଆତ୍ମସମ୍ମାନ ଗୁମୁରିଉଠୁଥିଲା । ଆଜି ବାର୍ଦ୍ଧକ୍ୟର କ୍ଷୟଶୀଳ ଅତଟ ଉପରେ ବସି, ବକ୍ଷ ଉପରେ ହାତଦେଇ ତଥାପି ମୁଁ ଘୋଷଣା କରିବାରେ ମୋର ଆତ୍ମବଳ ଅଛି ଯେ ଯୁଗବ୍ୟାପୀ ମାଲିମକଦମାରେ ଲିପ୍ତ ରହି ମୋ ଆଶ୍ରିତ ପକ୍ଷଙ୍କଠାରୁ ଗୋଟିଏ କପର୍ଦ୍ଦକ ମୋ ନିଜଖର୍ଚ୍ଚପାଇଁ ନେଇନାହିଁ । ବରଂ ପକ୍ଷାନ୍ତେ ଦୃଢ଼ତାର ସହିତ କହିବି ଯେ ମୋ ପୈତୃକ ସଞ୍ଚୟରୁ ଯଦି କେଉଁ ବାବଦରେ ବିଶାଳ ଅଂଶ ବ୍ୟୟ କରିଥାଏ ତାହା ହେଉଚି ଏହି ମାଲିମକଦମାରେ । ମୋର ହିତାକାଙ୍‌କ୍ଷୀ ମାତ୍ରେ କୁହନ୍ତି, ଏସବୁ ମୋର ଘୋର ଅପବ୍ୟୟ ବୋଲି, କିନ୍ତୁ କ୍ଷଣକପାଇଁ ମୁଁ ତାହା ସତ୍ୟ ବୋଲି ଉପଲବ୍‌ଧି କରିନାହିଁ ଏବଂ ମୋ ଅଞ୍ଚଳରେ କଂଗ୍ରେସ ସୌଧ ନିର୍ମାଣରେ ଏହାସବୁ ସଦ୍‌ବ୍ୟୟ

ହୋଇଛି ବୋଲି ମୋର ବଦ୍ଧମୂଳ ଧାରଣା ଏବଂ ଆତ୍ମସନ୍ତୁଷ୍ଟି ମଧ୍ୟ । ସେ ଯୁଗରେ ଲକ୍ଷ ଲକ୍ଷ ନହେଲେ ମଧ୍ୟ ସହସ୍ର ସହସ୍ର ଟଙ୍କା ମୁଁ ଅକାତରେ ଉଡ଼େଇଦେଇଛି, ଫିଙ୍ଗିଦେଇଛି; କିନ୍ତୁ ପାରିବାରିକ ଜୀବନ ପରେ ଅଭାବର କଷାଘାତ, ଦାରିଦ୍ର୍ୟର ଦଂଶନ ଜ୍ୱାଳାରେ ମ୍ରିୟମାଣ ହୋଇ ମଧ୍ୟ ସେଥିପାଇଁ ଦିନେ ହେଲେ ଅନୁତାପ କରିନାହିଁ, ବରଂ ଗର୍ବ ଓ ଗୌରବ ଅନୁଭବ କରିଛି । ମୋ ପୋଷ୍ୟ ମା'ଙ୍କ ସହିତ ମୋର ଏଥିପାଇଁ କେତେ କେଜାଣି ଝଗଡ଼ା ଲାଗିଛି ସତ; କିନ୍ତୁ ଅନ୍ୟ ଅବସରରେ ମୋର ଟଙ୍କା ଦରକାର ପଡ଼ିବାବେଳେ ସେ ବରାବର ବୁଝିପାରନ୍ତି ଏବଂ ମୋ ଅସହାୟ ଦୁରବସ୍ଥାକୁ ସେ କେବେହେଲେ ସହ୍ୟ କରିନପାରି, ମୁଁ ମାଗିବା ଆଗରୁ ଗୁମାସ୍ତାମାନଙ୍କ ହାତରେ ତାଙ୍କ କ୍ଷୁଦ୍ର ସଞ୍ଚୟରୁ ପଠାଇଦିଅନ୍ତି । ଏପରି ସ୍ଥଳେ ମୋ କୃତଜ୍ଞତା କେଉଁ ସ୍ତରରେ ପହଞ୍ଚୁଥିବ ତାହା ଭୁକ୍ତଭୋଗୀ ପାଠକମାନଙ୍କ ବ୍ୟତୀତ ଅନ୍ୟପକ୍ଷରେ କଳନା ବା ଧାରଣା କରିବା ବିଡ଼ମ୍ବନା ।

ଏ କ୍ଷେତ୍ରରେ ସବୁଦିଗରୁ ବିଚାର କରାଯାଇ ସ୍ଥିର ହେଲା ମୋ ବିରୋଧରେ ଆଗତ ହୋଇଥିବା ମକଦମା କୁଜଙ୍ଗରେ ବିଚାର କରାଯିବ— କାରଣ ସେଠାରେ ମିଥ୍ୟାସାକ୍ଷ୍ୟ ସଂଗ୍ରହ କରାଯାଇପାରିବ ଏବଂ ସ୍ୱୟଂ ଏସ୍.ଡି.ଓ. ବିଚାରପତିର ଆସନ ଅଳଂକୃତ କରିବେ । ସିଦ୍ଧାନ୍ତ ସିନା ହେଲା କିନ୍ତୁ ସାକ୍ଷୀ ମିଳୁଛନ୍ତି କେତେକେ ? ଚାରିଆଡ଼େ ଏପରି ବାୟୁମଣ୍ଡଳ ଗଢ଼ିଉଠିଥିଲା ଏବଂ ଲୋକେ ଏତେ ଉତ୍ତ୍ୟକ୍ତ ହୋଇଉଠିଥିଲେ ଯେ ମିଥ୍ୟାସାକ୍ଷ୍ୟ ଦେବା ତ ଦୂରର କଥା, ସାକ୍ଷୀହେବା ମାତ୍ରେ ତାର ଅସ୍ତିତ୍ୱ ଉପରେ ଆଞ୍ଚ ଆସିବ, ତାର ନିରାପତ୍ତାପାଇଁ ସମାଜର ଦାୟିତ୍ୱ ରହିବନାହିଁ । ଏପରି କଟକଣା ସତ୍ତ୍ୱେ କୁଳମଣି ରାଜଗୁରୁ ନାମରେ ଜଣେ କୁଖ୍ୟାତ ପ୍ରେସିଡେଣ୍ଟ ଓ ତାଙ୍କ ଅଧସ୍ତନ କର୍ମଚାରୀ ଦଫାଦାରଙ୍କୁ ନାନା ପ୍ରଲୋଭନ ଦେଖାଇ ହାତକରାଗଲା । ଏ ରାଜଗୁରୁ ମହାଶୟଙ୍କ ସମ୍ୟକ୍ ପରିଚୟ ପାଠକମାନଙ୍କ କୌତୂହଳ ନିବାରଣପାଇଁ ଦେଲେ ଅବାନ୍ତର ହେବନାହିଁ ।

ଆମ୍ଭେମାନେ ଯେପରି କୁଜଙ୍ଗ ରାଜବଂଶ ବୋଲି ଦାବିକରୁ, ଏମାନେ ସେହିପରି ରାଜଗୁରୁ ବୋଲି ଦାବି କରନ୍ତି । ପ୍ରଭେଦ ଭିତରେ ଆମ୍ଭମାନଙ୍କ ହାତରୁ ରାଜ୍ୟ ଚାଲିଯାଇଛି, କିନ୍ତୁ ରାଜଦତ୍ତ ବିପୁଳ ପରିମାଣ ଭୂସମ୍ପତ୍ତି ଆଜି ରାଜଗୁରୁ ବଂଶଧରମାନେ ଯାବତ୍‌ଚନ୍ଦ୍ରାର୍କ ଭିତ୍ତିରେ ଭୋଗଦଖଲ କରନ୍ତି ଏବଂ ଅଞ୍ଚଳର ପ୍ରତିଷ୍ଠିତ ବିଖ୍ୟାତ ଧନୀମାନଙ୍କ ମଧ୍ୟରେ ଜଣେ ବୋଲି ଗଣ୍ୟ ହୋଇଆସୁଛନ୍ତି । ତାଙ୍କ ପିତା ଆମ୍ଭମାନଙ୍କ ପରିବାର ପ୍ରତି ଏଡ଼େ ଅନୁରକ୍ତ ଯେ ବର୍ଷକୁ ଥରେ ଦୁଇଥର ଦୀର୍ଘ ଦଶ ବାରମାଇଲ ପଥ ପଦବ୍ରଜରେ ଅତିକ୍ରମ କରି ପାରାଦ୍ୱୀପର ପ୍ରତିଷ୍ଠିତ ଦେବଦେବୀମାନଙ୍କୁ ଦର୍ଶନ ଓ ରାଜପରିବାରର ଅବଶିଷ୍ଟ ଲୋକଙ୍କୁ ସଙ୍ଖୋଳି ନ ଆସିଲେ ଆଶ୍ୱସ୍ତିଲାଭ

କରିପାରନ୍ତିନାହିଁ । ବୋଧହୁଏ ବୃଦ୍ଧ ରାଜଗୁରୁଙ୍କ ବାତ୍ସଲ୍ୟର ସୁବିଧା ଗ୍ରହଣକରି ଏହି ସ୍ୱଳ୍ପଶିକ୍ଷାପ୍ରାପ୍ତ ଯୁବକଟି ଦୁର୍ଦ୍ଦାନ୍ତ ହୋଇଉଠିଥିଲେ ଏବଂ ପରିବାରର ବୈଷୟିକ କ୍ଷମତାସବୁ ପିତାଙ୍କଠାରୁ ଛଡ଼ାଇଆଣି ନିଜେ ସବୁ ବୁଝାସୁଝା ଓ କାରବାର କରୁଥିଲେ । ଏପରି ଜଣେ ସାମାଜିକ ମଦାନ୍ଧବ୍ୟକ୍ତି କ୍ଷମତାଲିପ୍ସାରେ ପ୍ରଲୁବ୍ଧ ହୋଇ ମୋ ବିରୋଧରେ ମିଥ୍ୟାସାକ୍ଷ୍ୟ ଦେବାକୁ ଛିଡ଼ାନହେଲେ ଆଉ କିଏ ହେବ ? କିନ୍ତୁ ଦୀର୍ଘନିଃଶ୍ୱାସ ପକାଇ ବିଚାରକ ମହାଶୟ ସାନ୍ତ୍ୱନାଲାଭ କଲେ ତେତେବେଳେ ଯେତେବେଳେ ମୁଁ ଅକିଞ୍ଚନ ସତ୍ୟାଗ୍ରହୀଟି ପରି ପ୍ରକାଶ କଲି ଯେ ମୋ ପକ୍ଷରୁ ମକଦ୍ଦମା ଲଢ଼ା ହେବନାହିଁ । ତଥାପି ବିଚାରର ଅଭିନୟ ଚାଲିଲା ଏବଂ ରାଜଗୁରୁ ଓ ଦଫାଦାର ସାକ୍ଷୀ ଦୁହେଁ କମ୍ପିତ କଳେବରରେ ମୋ ଆଗରେ ଛିଡ଼ାହେଲେ ସାକ୍ଷ୍ୟ ଦେବାକୁ । ଲୋକଗହଳି ମଧ୍ୟରେ ଆସାମୀ ପରି ପୁଲିସ୍ ଘେରାଉ କରି ସାକ୍ଷୀମାନଙ୍କୁ ଅଣାଯିବା ଏକ ହାସ୍ୟାସ୍ପଦ ବ୍ୟାପାର ବୋଧହେଲା । ଯାହା ମୁହଁକୁ ଯାହା ଆସିଲା ଅଶ୍ରାବ୍ୟ-ଅଶ୍ଳୀଳ ଭାଷା ପ୍ରୟୋଗର ପ୍ରତିଯୋଗିତା ଚାଲିବା ପରି ଜଣାଗଲା । ସମ୍ପୂର୍ଣ୍ଣ ନିଷ୍ପ୍ରଭ, ଅପ୍ରତିଭ, କରୁଣାଉଦ୍ରେକକାରୀ ମୂର୍ତ୍ତି ଦୁଇଟି ଗୋଟିକ ପରେ ଗୋଟିଏ ଆସି ସାକ୍ଷ୍ୟ ଦେଲେ । ଯଦିଓ ମୁଁ ବିଚାରକଙ୍କୁ ଜଣାଇଥିଲି ମକଦମା ଲଢ଼ିବିନାହିଁ ବୋଲି— ଜନତାର କୌତୂହଳ ବଢ଼ାଇବାକୁ ମୁଁ ଜେରା କରିବାକୁ ସ୍ଥିରକଲି ଏବଂ ନିଜେ କାଲପରି ଛଳନା କରି ଉଚ୍ଚସ୍ୱରରେ ଉତ୍ତରଦେବାକୁ ଅଚାନକ ପ୍ରଶ୍ନବାଣ ପ୍ରୟୋଗ କଲି । ଏଠାରେ ପାଠକେ ଜାଣିବା ଆବଶ୍ୟକ ଯେ ମୋର ଜେରା କରିବାର ଶୈଳୀ ବିଷୟରେ ନିପୁଣତା ନଥିଲେ ମଧ୍ୟ ଅପାରଗତା ନଥିଲା । ସାକ୍ଷୀମାନେ କେବଳ ହାକିମକୁ ଶୁଣାଯିବା ସ୍ୱରରେ ଯମାନବନ୍ଦୀ କରୁଥିବା ଦେଖି, ମୁଁ କାଲ ହୋଇ ଉଚ୍ଚସ୍ୱରରେ ଜବାବ ପାଇବାକୁ ଦାବି କଲି ଏବଂ ଜେରାର ପ୍ରତ୍ୟେକଟି ଉତ୍ତର ଭିଡ଼ି ହୋଇଥିବା ଜନତା ଶୁଣିବାକୁ ସକ୍ଷମ ହେଲେ । ସାକ୍ଷୀମାନେ ଜେରାପାଇଁ ପ୍ରସ୍ତୁତ ନଥିଲେ ଏବଂ ପ୍ରତି କଥାରେ ଏପରି ପରସ୍ପର ବିରୋଧୀ କଥାସବୁ ବାହାରିଲା ଯେ ଜନତାର କୌତୂହଳର ସୀମା ରହିଲାନାହିଁ । ସାକ୍ଷୀମାନେ ଘର୍ମାକ୍ତ କଳେବର, ଦୁର୍ବିପାକଗ୍ରସ୍ତ, ବିମୂଢ଼ ବ୍ୟକ୍ତିମାନଙ୍କ ପରି ପୁଲିସ ଜଗୁଆଳରେ ଫେରିଲେ ଏବଂ ନିରାପଦ ସ୍ଥାନରେ ସେମାନଙ୍କୁ ଛାଡ଼ିଆସିବାକୁ ବିଚାରପତିଙ୍କ ନିର୍ଦ୍ଦେଶ ରହିଲା । ମୋଠାରୁ ଷ୍ଟେଟ୍‌ମେଣ୍ଟ୍ ନେବାକୁ ପଚରା ଯିବାରୁ ଓକିଲମାନଙ୍କ ସୁଆଲ ଜବାବ ଢଙ୍ଗରେ ମକଦମାର କୌଣସି ଭିତ୍ତି ବା ମେରିଟ୍ ନାହିଁ ବୋଲି ବୁଝାଇବା ସଙ୍ଗେ ସଙ୍ଗେ କହିଲି ଆପଣ ବିଚାରପତି ହୋଇ ଏଠାକୁ ଆସିନାହାନ୍ତି, ଶାସନ କଳର ପ୍ରତିନିଧି ବା ଶାସନକର୍ତ୍ତା ହୋଇ ଆସିଛନ୍ତି । ତେଣୁ ବୃଥା ଛଳନାର ଅବକାଶ ନଦେଇ ଯଥାଶୀଘ୍ର ଦଣ୍ଡାଦେଶ ଦିଅନ୍ତୁ । ଶେଷରେ ମୋର ଏତିକି ଦୁଃଖ ରହିଲା ଯେ ଏଡ଼େବଡ଼ ବ୍ରିଟିଶ୍ ସରକାରର ପ୍ରତିନିଧି ହୋଇ କ୍ଷୁଦ୍ରାତିକ୍ଷୁଦ୍ରାଦପି ଜମିଦାରୀ କର୍ମଚାରୀମାନଙ୍କ ଇଙ୍ଗିତରେ ଯାହା ଚାଲିଲେ ।

ତା'ପରେ ମୋତେ ପାଞ୍ଚଶହ ଟଙ୍କା ଜୋରିମାନା ଓ ଷୋଳମାସ ସଶ୍ରମ ଜେଲଦଣ୍ଡ, ଜୋରିମାନା ଆଦାୟ ନହେଲେ ଆଉ ଛଅମାସ ଅଧିକା ସଶ୍ରମ କାରାଦଣ୍ଡ ଆଦେଶ ଦିଆଗଲା । ସୌଭାଗ୍ୟକୁ ହେଉ କି ଦୁର୍ଭାଗ୍ୟକୁ ହେଉ ମୋତେ ଦ୍ୱିତୀୟ ଶ୍ରେଣୀ କଇଦୀ ଭାବେ ରଖାଯିବାକୁ ବିଚାରପତି ଆଦେଶ ଦେଇଥିଲେ । ବିନାଦୋଷରେ ଏପରି ଗୁରୁଦଣ୍ଡ ହେବା ଶୁଣି ସମସ୍ତେ ହାହାକାର କରିଉଠିଲେ । ସମଗ୍ର ଅଞ୍ଚଳର ଅନ୍ଦିକନ୍ଦିରେ ଏ ସମ୍ବାଦ ପାଇବାକୁ ସମସ୍ତେ ଆଗ୍ରହାନ୍ୱିତ ହୋଇ ଚାହିଁବସିଥିଲେ । ଉପରବେଳାକୁ ବୋଧହୁଏ ଚାରି ପାଞ୍ଚଘଣ୍ଟା ପରେ ଦେଖାଗଲା କ୍ଷୁଦ୍ର କୁଜଙ୍ଗ (ଅନନ୍ତପୁର) ସହରଟି ଲୋକାରଣ୍ୟ ହୋଇଉଠିଛି । ଆଗରୁ ପାରାଦ୍ୱୀପରୁ ଗିରଫ ହୋଇଥିବା ମାଗୁଣି ରଥଙ୍କୁ ଛଅମାସ ଜେଲ ଦଣ୍ଡାଦେଶ ହୋଇସାରିଥିଲା ଏବଂ ଅନ୍ୟତମ କର୍ମୀ ଦାମୋଦର ରାୟଙ୍କ ମୁରବିମାନଙ୍କ ପ୍ରତି ବର୍ଦ୍ଧମାନ ମନ୍ତ୍ରୀଙ୍କ ସ୍ୱତନ୍ତ୍ର ଦୟା ଥିବାରୁ ତାଙ୍କୁ ମୁକ୍ତ କରି ଦିଆଯାଇଥିଲା । ତେଣୁ ମାଗୁଣି ରଥ ଓ ମୁଁ ପରଦିନ ପ୍ରତ୍ୟୁଷରୁ କଟକ ଚାଲାଣ କରାଯିବାକୁ ଟେଲିଗ୍ରାମ୍ ଦ୍ୱାରା ସ୍ୱତନ୍ତ୍ର ମଟର କାର୍ ମଗାହେଲା । ଫଳରେ ଟେଲିଗ୍ରାମ୍ ସମ୍ବାଦଟି ପ୍ରଚାର ହୋଇଯିବାରୁ କୁଜଙ୍ଗଠାରୁ ରାହାମା ପର୍ଯ୍ୟନ୍ତ ନିକୁଛ ଦଶମାଇଲ ରାସ୍ତା ଉପରେ ପରଦିନ ସକାଳୁ ସମଗ୍ର ଅଞ୍ଚଳର ନରନାରୀ ଜମାହୋଇଗଲେ । ସେ ଏକ ଅପୂର୍ବ ଦୃଶ୍ୟ । ବିଶେଷତଃ କଚାରାସ୍ତା ଓ ସ୍ଥାନେ ସ୍ଥାନେ ବର୍ଷାଜନିତ କାଦୁଅଦ୍ୱାରା ଦୁର୍ଗମ ହୋଇଥାଏ । ଏପରିକି ପଙ୍କପାଳ ଗ୍ରାମ ପାଖରେ ଗୋଟିଏ ସ୍ଥାନରେ ଆଉ ଗୋଟିଏ ମଟର ଅପେକ୍ଷା କରି ରହିଥାଏ, କାଳେ ସେଠାରେ ଆମ୍ଭମାନଙ୍କ ମଟର ଅତିକ୍ରମ କରି ନପାରିବ ବୋଲି । ସେହି ଦୁର୍ଗମ ସ୍ଥାନର ସୁବିଧା ନେବାପାଇଁ ଗୋଟିଏ ବିଶାଳ ଜନତା ସେଠାରେ ରୁଣ୍ଡ ହୋଇଥାନ୍ତି । ଲୋକଙ୍କ ହାହାକାର ଶୁଣି ଓ ଅଶ୍ରୁବିଗଳିତ ମୁଖ ଦେଖି ବନ୍ଦୀ ଆମ୍ଭ ଦୁହିଙ୍କ ଗୌରବ ଓ ଉନ୍ନତ ଗର୍ବଭରା ହୃଦୟ ଯାହା କ୍ଷଣକ ପୂର୍ବେ ପର୍ବତ ପରି ଅଟଳ ଓ ପାଷାଣ ପରି କଠିଣଥିଲା ମୁହୂର୍ତ୍ତକେ ତରଳିଗଲା ଏବଂ ମନେପଡ଼ିଲା କେଉଁ ଅତୀତଯୁଗର ଶ୍ରୀକୃଷ୍ଣଙ୍କ ମଥୁରା ଯାତ୍ରା ବା ଶ୍ରୀରାମଚନ୍ଦ୍ରଙ୍କ ବନବାସ ଯାତ୍ରାକାଳୀନ ଅଯୋଧ୍ୟାର 'ସହସା ବିଷାଦ ଭାରେ ବିବଶା' ଦଶା, ଆମ ଆର୍ଯ୍ୟ ସଭ୍ୟତା ସଂସ୍କୃତିର ନିୟାମକ ସେହି ପୌରାଣିକ ମହାବିଚ୍ଛେଦାନ୍ତ ସ୍ମୃତି ଏବଂ ରୁଦ୍ଧ ହୋଇ ରହିଲା କଣ୍ଠଚକ୍ର, ସ୍ଫୁରଣର ଅତୀତ ସ୍ତରରେ । ତଥାପି କର୍ତ୍ତବ୍ୟାନୁରୋଧରେ ଯେଉଁ ଦୁଇ ଚାରୋଟି କଥା କହିଥିଲି ତାହା ହେଉଛି, ''ବହୁଦିନ ମିଳନ ପରେ ଏ ବିଚ୍ଛେଦ ଯେପରି ଅପରିହାର୍ଯ୍ୟ, ଏ ବିଚ୍ଛେଦ ସେହିପରି ଏକ ମହାମିଳନର ସୂତ୍ରପାତ ମାତ୍ର । ସେହି ଗୌରବମୟ ମହାମିଳନପାଇଁ ଏ ବିଚ୍ଛେଦର ତ୍ୟାଗକୁ ଆପଣମାନଙ୍କୁ ବରଣ କରିବାକୁ ହେବ । ଆପଣମାନଙ୍କ ଅଶ୍ରୁତର୍ପଣରେ

ରାମାୟଣ, ମହାଭାରତ ପରି ନୂଆ ପୁରାଣ ଇତିହାସ ଗଢ଼ିଉଠୁ । ସେହି ନୂଆ ସୃଷ୍ଟିର ନିଶାଣକୁ ଅବନତ କରିବେନାହିଁ, ଏହି ଶେଷ ଭିକ୍ଷା ମୋର ମନେରଖନ୍ତୁ ଏବଂ ବିଦାୟ ଦିଅନ୍ତୁ ।''

ସଙ୍ଗେ ସଙ୍ଗେ ଅସଂଖ୍ୟ ବାଷ୍ପାକୁଳ କଣ୍ଠର ହରିବୋଲ, ହୁଳହୁଳି ଧ୍ୱନି ଉଚ୍ଛୁଳିଉଠିଲା ଏବଂ ମଟରଟି ସେମାନଙ୍କ ପକ୍ଷେ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ସେ ରୋଳ ବନ୍ଦୀ ଆମ୍ଭମାନଙ୍କ କର୍ଣ୍ଣଗୋଚର ହେଉଥିଲା । ଟିକିଏ ପରେ ବହୁ ମହିଳା ସମଭିବ୍ୟାହାରରେ ମୋ ମା' ରାସ୍ତା କଡ଼ରେ ଅପେକ୍ଷା କରିଥିଲେ ଏବଂ କାଳେ ମଟର ନ ଅଟକାଇବ, ସେଥିପାଇଁ ବୋଧହୁଏ ସହସ୍ର ସ୍ତରରେ ଲୋକେ ରାସ୍ତା ବନ୍ଦକରି ଛିଡାହୋଇଥିଲେ । ମୁହୂର୍ତ୍ତକପାଇଁ ମଟର ବନ୍ଦହେଲା ଏବଂ ମାଙ୍କୁ ମୁଁ କହିଲି, ''ମାମା ! ମୁଁ ଯିବାକୁ ଯେପରି ଆସିଥିଲି, ସେହିପରି ଆସିବାକୁ ଆଜି ଯାଉଛି । 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ । ତମରି ମନ୍ତ୍ର ଘୋଷି ଘୋଷି ଯାଉଛି ।'' ମଟର ଛାଡ଼ିଦେଲା ଏବଂ କିୟତ୍‌କ୍ଷଣ ମଧ୍ୟରେ ରାହାମା ଅତିକ୍ରମ କରିଗଲା, ଜନତା ସ୍ତର ଅତୀତକୁ ।

—

# ବନ୍ଦୀଜୀବନର ନନ୍ଦିତ ଓ ନିନ୍ଦିତ ସ୍ମୃତି-୧

ଆମେ ବନ୍ଦୀ ଦୁଇଟି ମୁଁ ଓ ମାଗୁଣି ରଥ ଦଶଟା ମଧ୍ୟରେ କଟକ ଜେଲଖାନା ଦ୍ୱାରରେ ପହଞ୍ଚିବା ମାତ୍ରେ ବନ୍ଦିଶାଳା ଝଣତ୍କାର ଶବ୍ଦରେ ମୁଖ ବ୍ୟାଦାନ କଲା ଏବଂ କୁକ୍ଷି ମଧ୍ୟରେ ପ୍ରବେଶ କରି ବହିର୍ଜଗତରୁ ଆମେ ଅଦୃଶ୍ୟ ହୋଇଗଲୁଁ । କୌତୂହଳାକ୍ରାନ୍ତ କଟକ ଲୋକେ (ସ୍ୱଳ୍ପ ସଂଖ୍ୟାରେ) ଜେଲ ଫାଟକ ପାଖରେ ଛିଡ଼ାହୋଇଥିଲେ ଆମକୁ ଦେଖିବାକୁ ଏବଂ ପରସ୍ପର ଦୃଷ୍ଟି ମାଧ୍ୟମରେ ଯାହାକିଛି କଥାଭାଷା ହେଲା ଭାବ ଆଦାନ ପ୍ରଦାନରେ । ଆମ ଦୃଷ୍ଟି ଥିଲା ଉନ୍ନତ ଓ ଆହ୍ୱାନଶୀଳ ଏବଂ ସେମାନଙ୍କର ଥିଲା ଅକ୍ଷମତା ଯୋଗୁଁ ବିନମ୍ର ଓ ବିକଳ । ଆମ ମୁଖମଣ୍ଡଳ ଥିଲା ହର୍ଷୋତ୍‌ଫୁଲ୍ଲ, ସେମାନଙ୍କର ଥିଲା ରାହୁଗ୍ରସ୍ତ ଚନ୍ଦ୍ର ପରି ଅବସାଦମୟ । ମୁହୂର୍ତ୍ତକେ ପଟ୍ଟପରିବର୍ତ୍ତିତ ହୋଇଗଲା ଏବଂ ସୀମାହୀନ ସମୁଦ୍ରରେ ସନ୍ତରଣକାରୀ ଆମ୍ଭେମାନେ ସେ ଗହ୍ୱରରେ ପ୍ରବେଶକଲୁ ଏକ ଅସ୍ଫୁଟ ଓ ଅସ୍ପଷ୍ଟ ଭବିଷ୍ୟତ୍‌ର ସନ୍ଧାନରେ ।

ବିଧିବଦ୍ଧଭାବେ ଆମ୍ଭମାନଙ୍କ ପରିଚ୍ଛଦ ପରିବର୍ତ୍ତିତ ହେବାମାତ୍ରେ ପ୍ରଭେଦ ଜଣାଗଲା ଶ୍ରେଣୀବିଭାଗର । ମୁଁ ଲମ୍ବା ପାଇଜାମା ଓ ଲମ୍ବା କୁରୁତା ପାଇଲି ଏବଂ ମାଗୁଣି ରଥେ ମୋର ଅଧା ଅନୁପାତରେ ପାଇଲେ, କାରଣ ମୁଁ ଖ ବା ଦ୍ୱିତୀୟ ଶ୍ରେଣୀ କଇଦୀ ଥିଲି ଓ ସେ ଗ ବା ତୃତୀୟ ଶ୍ରେଣୀ କଇଦୀ ଥିଲେ । କ ବା ପ୍ରଥମ ଶ୍ରେଣୀ କଇଦୀମାନେ ନିଜ ସମୟରେ ନିଜ ରୁଚିଅନୁଯାୟୀ ଖାଦ୍ୟ ଓ ପରିଚ୍ଛଦ ବ୍ୟବହାର କରିବା ବିଧି ଥିଲା ଏବଂ ଯିଏ ସୁବିଧା ଗ୍ରହଣ ନକରିବ ତାଙ୍କୁ ଖ ଶ୍ରେଣୀ ବ୍ୟବସ୍ଥାନୁଯାୟୀ ଖାଦ୍ୟ ଓ ଲୁଗା ଜେଲ ତରଫରୁ ଯୋଗାଇଦିଆଯିବାର ବିଧି ଥିଲା । ପରିଚ୍ଛଦ ପରିଧାନ ପରେ ଆମ ଦୁହିଙ୍କୁ ବିଭିନ୍ନ ଦିଗରେ ଅଡ଼ାଇ ନିଆଗଲା । ମୁଁ ଏକ କୋଠରି ବିଶିଷ୍ଟ ଗୋଟିଏ ସେଲ୍‌କୁ ଏବଂ ରଥେ କୁଆଡକୁ ନିଆଗଲେ ମୋ ପକ୍ଷରେ ଶେଷପର୍ଯ୍ୟନ୍ତ ଅଜ୍ଞାତ ରହିଲା । ରଥେ ମୋ ସାଙ୍ଗ ଛାଡ଼ିବାକୁ ହେବ ଜାଣିବାମାତ୍ରେ କାନ୍ଦିପକାଇଲେ ଏବଂ ସେ ରୋଗ ସଙ୍ଗେ ସଙ୍ଗେ ମୋଠାରେ ସଂକ୍ରମିତ ହୋଇଗଲା, ବୋଲିବା ବାହୁଲ୍ୟ । ରକ୍ତ, ମାଂସ, ହୃଦୟର ମନୁଷ୍ୟ ତ, ଧୈର୍ଯ୍ୟ ଅସୀମ ନୁହେଁ !

ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ଆଗରୁ ହୋଇନଥିବାରୁ ଜଳଯୋଗ ବ୍ୟବସ୍ଥା ହେଲା ଏବଂ ସମ୍ବଳ ମଧ୍ୟରେ ଦୁଇ ସେଟ୍ ପରିଚ୍ଛଦ, ଦୁଇଟି ଆଲୁମିନମ୍ ବାସନ, ଗୋଟିଏ ନୋଟା, କମ୍ବଳ ଦୁଇଟି, ଗୋଟିଏ କୁଟା ପରିପୂର୍ଣ୍ଣ ଶେଯ ଏବଂ ସାହାଯ୍ୟ କରିବାକୁ ଗୋଟିଏ ମେଟ୍ ବା କଇଦୀ ସଙ୍ଗେ ସଙ୍ଗେ ଯୋଗାଇଦିଆଗଲା । ଦୁଇଦିନ ଏକାକି

ରହିବା ପରେ ଆମ ଅଞ୍ଚଳରୁ ଆଉଜଣେ ସ୍କୁଲ ଛାତ୍ର ଶ୍ରୀ ବିଚିତ୍ରାନନ୍ଦ ଚୌଧୁରୀ ଯୋଗଦେଲେ । ଧୂମପାନରେ ମୁଁ ଜଣେ ଓସ୍ତାଦ ଥିଲି । ଗୋପବାବୁ (ଚୌଧୁରୀ) କୁହନ୍ତି ତାଙ୍କ ଜାଣିବାରେ ଓଡ଼ିଶାର ବିଖ୍ୟାତ ବା କୁଖ୍ୟାତ ଧୂମପାୟୀ ଚାରିଜଣଙ୍କ ମଧ୍ୟରେ ମୁଁ ଜଣେ । ଅନ୍ୟାନ୍ୟ ତିନିଜଣ ଓଡ଼ିଶାର ଶ୍ରେଷ୍ଠ ବକ୍ତା ଦୁଇଜଣ ଶ୍ରୀଯଦୁମଣି ମଙ୍ଗରାଜ ଓ ସମ୍ବଲପୁର ଲକ୍ଷ୍ମୀନାରାୟଣ ମିଶ୍ର, (ଏ ଲେଖାର ମାସକ ଆଗେ ରାଜନୈତିକ କାରଣରୁ ଆତତାୟୀ ଛୁରାଘାତରେ ପ୍ରାଣ ହରାଇଛନ୍ତି— ମଧ୍ୟବର୍ତ୍ତୀକାଳୀନ ନିର୍ବାଚନର ମଧ୍ୟ ଭାଗରେ) ଏବଂ ଶ୍ରୀ ଗୁଣନିଧି ମହାନ୍ତି (ସର୍ବୋଦୟ କର୍ମୀ) । ତେଣୁ ମୋତେ ଟିକିଏ ଅନାସ୍ୱସ୍ତି ଲାଗୁଥାଏ । ଦୈବାତ୍ ମୋତେ ଯେଉଁ ମେଟ୍‌ଟି ମିଳିଥାନ୍ତି, ସେ କଟକର ବାସିନ୍ଦା, ତେଲିଜାତିର ଲୋକ ଏବଂ ଗୁଲି ରାନ୍ଧିବା ଓ ଅଫିମ ଚୋରା କାରବାରରେ ଧରାପଡ଼ି କାରାବାସ ଭୋଗୁଥାନ୍ତି । ସେ ମଧ୍ୟ ଜଣେ ଧୂମପାୟୀ ଏବଂ ମୋ ଦୋଷଟି ସେ କିପରି ଜାଣିଲେ— କେତୋଟି ବିଡ଼ି ଓ ଗୋଟିଏ ଦିଆସିଲି ସଂଧ୍ୟା ଆଗରୁ ପହଞ୍ଚାଇ ଦେଇପାରିଲେ । ଜେଲ ଭିତରେ ସେ ତାଙ୍କର ଏସବୁ ବନ୍ଦୋବସ୍ତ କରିପାରିଥାନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇଗଲି ସତ, କିନ୍ତୁ ଗାନ୍ଧିଜୀଙ୍କ ନିର୍ଦ୍ଦେଶାନୁଯାୟୀ ଜେଲ ନିୟମ ମାନିବା ପରିବର୍ତ୍ତେ ଭାଙ୍ଗିବି କି ନା ସେ ବିଷୟରେ ଦ୍ୱିଧା ଘଟିଲା । ସାମାନ୍ୟ ବିଡ଼ିପାଇଁ ଏ ଅବିଚାର କରିବସିଚି ? ମାତ୍ର କୁଅଭ୍ୟାସର ବଳ ବେଶି ହେଲା ଏବଂ ମହାତ୍ମାଜୀଙ୍କ ନିର୍ଦ୍ଦେଶ ଓ ବିବେକକୁ ଭସାଇଦେଇ ଆଦରର ସହିତ ହାତବଢ଼ାଇ ବିଡ଼ି ଦିଆସିଲି ଗ୍ରହଣ କଲି । ମୋ ବିଜୟୋନ୍ନତ ଶିର ଏହି ସାମାନ୍ୟ କଥାପାଇଁ ଖର୍ବ ଜଣାଗଲା ସତ, ତଥାପି କୁଅଭ୍ୟାସ ଦୋଷରୁ ମୁଁ ସେ ଅଧୋଗତିକୁ ବରଣକରିନେଲି । ଆଜି ମଧ୍ୟ ସେ ଘଟଣାର ଦୀର୍ଘ ତିରିଶବର୍ଷ ପରେ ମୁଁ ସେ ଦୋଷରେ ଦୂଷିତ । ଅବଶ୍ୟ ଥରେ ଦୁଇଥର ମୁଁ ଏ କୁଅଭ୍ୟାସ ବିରୋଧରେ ଯେ ଅଭିଯାନ ଚଳାଇନଥିଲି ତାହାନୁହେଁ । ବର୍ଷେ ଦୁଇବର୍ଷ ଲେଖା ମୁଁ ସଂକଳ୍ପକରି ବିଡ଼ି ଛାଡ଼ିଛି ସତ, କିନ୍ତୁ ବିଡ଼ି ପରିବର୍ତ୍ତେ କଟକର ବିଖ୍ୟାତ ଆକବର ଖାଁଙ୍କ ଗୁଡାଖୁର ଅଶ୍ରୟ ନିଏ । ତଦ୍ୱାରା ମୋ ପରିପାକ ଶକ୍ତିରେ ବ୍ୟାଘାତ ଅନୁଭବ ପରେ ବିଡ଼ିର ସ୍ଥାୟୀ ବିଜୟକୁ ସ୍ୱାଗତ କରିନେଲି ।

ମୋଠାରେ ଧୂମପାନର ବିଜୟରେ ପାଠକମାନେ ନିଶ୍ଚୟ ନାସିକାକୁଞ୍ଚନ କରିବେ । କିନ୍ତୁ ମୁଁ ନାଚାର । ଏ ଦିଗରେ ମୁଁ ବାରମ୍ବାର ଆତ୍ମସମାଲୋଚନା କରିଛି । କେତେ ସଂକଳ୍ପ କରିଛି, କେତେ ପ୍ରତିଜ୍ଞା କରିଛି, କିନ୍ତୁ ତାମ୍ରକୂଟର ଦୁର୍ଜ୍ଜୟ ପ୍ରଭାବକୁ ଏଡ଼ିପାରି ନାହିଁ । ପୃଥିବୀମୟ ତାମ୍ରକୂଟର ଦିଗ୍‌ବିଜୟ ବିଷୟ ଚିନ୍ତାକରି ସ୍ତବ୍‌ଧ ହୋଇଯାଏ । ବୋଧହୁଏ ଏହି ଗୋଟିଏ ମନ୍ଦ କୁଅଭ୍ୟାସ ଯାହା କବଳରୁ କୌଣସି ଜାତି ମୁକ୍ତ ନୁହଁନ୍ତି । ମାନବିକତା ମଧ୍ୟରେ ଏ ଜୀବାଣୁ ଏପରି ସଂକ୍ରମିତ ଯେ ଖାଦ୍ୟ, ବସ୍ତ୍ର, ବଡ଼, ସାନ, ପ୍ରବଳ, ଦୁର୍ବଳ, ପ୍ରାଚ୍ୟ ପାଶ୍ଚାତ୍ୟ, ଶ୍ୱେତ କୃଷ୍ଣ ଇତ୍ୟାଦି ନାନା

ବୈଷମ୍ୟ, ନାନା ବୈଚିତ୍ର୍ୟ ମଧ୍ୟରେ ଯଦି କୌଣସି ସାମ୍ୟସୂତ୍ର ଥାଏ ତାହା ହେଉଛି ଏହି ତାମ୍ରକୂଟର ବିଜୟ ବୈଜୟନ୍ତୀ, ପ୍ରଚଣ୍ଡ ଶାସନ, ଯାହା ଚିନ୍ତାକଲେ ମନୁଷ୍ୟ ବିସ୍ମୟାଭିଭୂତ ଓ ବିହ୍ୱଳ ହୋଇଯାଏ । ଶୁଣାଅଛି ବିସ୍ଫୋରକ ଡିନାମାଇଟ୍‌କୁ ଆବିଷ୍କାର କରି ସୁଇଡ଼େନ୍‌ର ନୋବେଲ ସାହେବ ଶେଷଜୀବନରେ କେତେ ଅନୁତାପ କଲେ– କାହିଁକି ନା ଏ ବିସ୍ଫୋରକ ଯୁଦ୍ଧରେ ବ୍ୟବହୃତ ହୋଇ କେତେ ନିର୍ଦ୍ଦୋଷମାନଙ୍କ ହତ୍ୟାର କାରଣ ହେବ ବୋଲି । ସେଥିପାଇଁ ପ୍ରାୟଶ୍ଚିତ୍ତସ୍ୱରୂପ ଏହି ଡିନାମାଇଟ୍ କାରବାରଲବ୍ଧ ବିପୁଳ ଅର୍ଥକୁ ପୃଥିବୀରେ ବିଭିନ୍ନ ବିଷୟରେ କୃତିତ୍ୱ ଅର୍ଜନ କରିଥିବା ମନୀଷୀମାନଙ୍କୁ ପୁରସ୍କାର ଦିଆଯାଏ । କିନ୍ତୁ ମାନବ ସ୍ୱାସ୍ଥ୍ୟର ଚିରଶତ୍ରୁ ଏ ତାମ୍ରକୂଟକୁ ଯିଏ ଆବିଷ୍କାର କଲେ ତାଙ୍କ ନାମ ବିଷୟରେ ଇତିହାସ ନୀରବ । ବୋଧହୁଏ ତାଙ୍କ ଅନୁପମ ପାପର ପ୍ରାୟଶ୍ଚିତ୍ତ ନାହିଁ ବା ହୋଇନପାରେ । ହିସାବ ମିଳୁଛି ସମଗ୍ର ପୃଥିବୀରେ ଏହାର ବାର୍ଷିକ ଉତ୍ପାଦନର ପରିମାଣ ହେଉଛି ଆଠଶହ କୋଟି ପାଉଣ୍ଡ । ଭେଷଜ ତଥ୍ୟରୁ ମିଳେ, ଏହାର ବିଷାକ୍ତ ଦ୍ରବ୍ୟଗୁଣ ଅତ୍ୟନ୍ତ ମାରାତ୍ମକ । ବୃକ୍ଷଲତାଦି ଉଦ୍ଭିଦ ଶତ୍ରୁ କୀଟକୀଟାଣୁଦ୍ୱାରା ଆକ୍ରାନ୍ତ ହେଲେ, ଏହି ତାମ୍ରକୂଟରୁ ନିର୍ଗତ ହୋଇଥିବା ନିକୋଟିନ୍ ନାମକ ବିଷ ପ୍ରୟୋଗକଲେ କୀଟ କୀଟାଣୁ ମାତ୍ରେ ଲୋପପାଇଯାନ୍ତି । ତେଣୁ ଏହାର ଉତ୍କଟ ବିଷକ୍ରିୟା ମନୁଷ୍ୟ ସ୍ୱାସ୍ଥ୍ୟପକ୍ଷରେ ଯେ ପ୍ରତିକୂଳ, ଏଥିରେ ସନ୍ଦେହର ଅବକାଶ ନାହିଁ । ତଥାପି ଏହାର ଅଚିନ୍ତନୀୟ ବ୍ୟାପକ ବ୍ୟବହାରକୁ ମାନବ ସମାଜ କାହିଁକି ଯେ ବରଣ କରିନେଇଛି, ତାହା ମଧ୍ୟ ଭାବିହେଉନାହିଁ । ବୋଧହୁଏ ମାନବ ସମାଜପ୍ରତି ସ୍ରଷ୍ଟାଙ୍କର ଏହା ଏକ ଦାରୁଣ ଅଭିଶାପ । ଚର୍ବଣ, ଧୂମପାନ ଓ ନସ୍ୟଆକାରରେ ମାନବ ସମାଜର ପନ୍ଦରଅଣା ଲୋକ ଏ ବ୍ୟାଧିରେ ଅଭିଶପ୍ତ । ସର୍ବାପେକ୍ଷା ଚିନ୍ତାର ବିଷୟ ଯେ ଏ ବ୍ୟାଧି ସଭ୍ୟତା ସହିତ ସତେକି ପ୍ରତିଯୋଗିତା କରି ସମାନ୍ତରାଳଭାବେ ଅବ୍ୟାହତ ଗତିରେ ବଢ଼ିଚାଲିଛି । କଳ୍ପନା କରିହେଉନାହିଁ ଏ ପତନରୁ ମାନବର ଉଦ୍ଧାର ।

ସେ ଯାହାହେଉ, ଜେଲଖାନାର କଠୋର ଶୃଙ୍ଖଳା ମଧ୍ୟରେ ମୋତେ ଧୂମପାନରୁ ଗୋଟିଏ ଓଳି ବଞ୍ଚିତ ହେବାକୁ ପଡ଼ିଥିଲା ଏବଂ ତେଣିକି ବନ୍ଦୀ ଜୀବନର ମଧ୍ୟ ଶେଷଦିନ ପର୍ଯ୍ୟନ୍ତ ଅବ୍ୟାହତଭାବେ ଏ ଅମଳଟି ଚଳାଇରଖିବାକୁ ଯଦୃଚ୍ଛା ସୁଯୋଗ ମିଳିଥିଲା । ସେଥିପାଇଁ ମୋତେ କିଛି ଯେ ତ୍ୟାଗ କରିବାକୁ ପଡୁନଥିଲା ଏମନ୍ତ ନୁହେଁ । ମୋ 'ଖ' ଶ୍ରେଣୀ ଖାଦ୍ୟରୁ ମହନଭୋଗ ଓ ତରକାରିରୁ ଶ୍ରେଷ୍ଠାଂଶ (Lion's share) ମୋ ପରିଚାରକ ଦାମିଲ୍‌ବାବାଙ୍କ ସଦ୍‌ବ୍ୟବହାରରେ ଲାଗୁଥିଲା । ଅବଶ୍ୟ ଏ ବିନିମୟପାଇଁ ମୁଁ ଯେ କୁଣ୍ଠିତ ହେଉଥିଲି ତାହା ନୁହେଁ, ତଥାପି ଯେତେବେଳେ ମୋ ଅଂଶଟା ଆଶାତୀତ ଭାବେ ସ୍ୱଳ୍ପାକାର ଧାରଣକରୁଥିଲା ତେତେବେଳେ ଟିକିଏ ଅସନ୍ତୁଷ୍ଟ ଯେ ହେଉଥିଲି,

ତାହା ସ୍ୱୀକାର ନକଲେ ସତ୍ୟର ଅପଳାପ କରାଯିବ । ତଥାପି ଧୂମଦେବଙ୍କ ସୁଲଭ ପ୍ରାପ୍ତି ପ୍ରତ୍ୟାଶାରେ ସହାୟକ ବନ୍ଧୁଙ୍କ ନିର୍ମମ ଆତ୍ମସାତ୍‌କୁ ମନରେ ଧରି ଧରୁନଥିଲି । କେବଳ ସମାଜ ସ୍ତରରେ ଏହା କିପରି କାର୍ଯ୍ୟକାରୀ ହେଉଥିବ ତାହାର ନମୁନା ନିଜ କ୍ଷେତ୍ରରେ ଉପଲବ୍‌ଧି କରି ବେଶ୍ ବୁଝିଲି । ଅଭାବଗ୍ରସ୍ତ କୃଷକ ପରିବାରରେ ଯେଉଁ ମହିଳାମାନେ ପାନ ଗୁଣ୍ଡି ଇତ୍ୟାଦି କୁଅଭ୍ୟାସରେ ଅଭ୍ୟସ୍ତ, ସେମାନେ ସ୍ୱାମୀ ପିଲାମାନଙ୍କ ଖାଦ୍ୟରୁ ଖେଣ୍ଟି ସେହି ମୂଲ୍ୟରେ ବା ନାମମାତ୍ର ମୂଲ୍ୟରେ ନିଜର ଏ କୁଅଭ୍ୟାସକୁ ଖୋରାକ ଯୋଗାଇବାକୁ କିପରି ବାଧହେଉନଥିବେ ? କି ଦାରୁଣ ଦୁର୍ଗତି ! କି ଅକଳନ୍ତା କ୍ଷୟ କ୍ଷତି !! ସତେ ଏପରି ସୁଦିନ ଆସିବ ଆମ ସମାଜ ଏ ବ୍ୟାଧିରୁ ମୁକ୍ତହେବ ? ଆମ ଭାବୀ ବଂଶଧରମାନେ ସତେ ଏ ଅହେତୁକ ଅଭିଶାପ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇ ସାଫଲ୍ୟ ଅର୍ଜନ କରିବେ ? ପରାଧୀନତା ଭଳି କିମ୍ବା ତତୋଧିକ ଉତ୍କଟ ଏ ଅନାଚାର କବଳରୁ ଆମ ଦେଶ, ଆମ ସମାଜ, ଆମ ପୃଥିବୀ ସତେ ଅବ୍ୟାହତି ଲାଭ କରିବ ? ସମଗ୍ର ମାନବିକତାର ଏ କଳଙ୍କ, ମୁଁ ବା କି ଛାର ! ସେହି ସୁଦିନର ଆଗମନୀ ପ୍ରତୀକ୍ଷା ଆଶାକରିବା ଛଡ଼ା ମୋର ଗତ୍ୟନ୍ତର ନଥିଲା ।

କଟକ ଜେଲରେ ମୋତେ ମାତ୍ର ଦୁଇସପ୍ତାହ ଅବସ୍ଥାନ କରିବାକୁ ପଡ଼ିଥିଲା । ଦ୍ୱିତୀୟ ଶ୍ରେଣୀ ବନ୍ଦୀଭାବେ ମୋର ହଜାରୀବାଗ କେନ୍ଦ୍ର ଜେଲକୁ ଯିବାର କଥା । କେବଳ କର୍ତ୍ତୃପକ୍ଷଙ୍କ ଆଦେଶ ଓ ଆୟୋଜନ ଅପେକ୍ଷାରେ ଥାଏ । ମୋର ଭଲମନ୍ଦ ବୁଝିବାକୁ ଜେଲର୍ (Jailor) ପ୍ରତ୍ୟହ ସନ୍ଧ୍ୟା ସମୟରେ ମୋ ସହିତ ସାକ୍ଷାତ୍ କରୁଥିଲେ । ଅବଶ୍ୟ ସାକ୍ଷାତଟା କର୍ତ୍ତବ୍ୟାନୁରୋଧରେ ଯେତେ ନୁହେଁ, ଅଧିକାଂଶ ଆଳାପ ଉଦ୍ଦେଶ୍ୟରେ ହେଉଥିଲା । ଉକ୍ତ ଜେଲର୍‌ବାବୁଟି ଜୈନ ଥିଲେ ଏବଂ ଅହିଂସା ତାଙ୍କର ଧର୍ମାଚରଣ ଥିଲା । ମହାତ୍ମାଜୀଙ୍କ ଅହିଂସା ଆନ୍ଦୋଳନର ମୁଁ ଜଣେ ନିଷ୍ଠାପର କର୍ମୀଥିବାରୁ ଉଭୟଙ୍କ ମଧ୍ୟରେ ସେହି ସୂତ୍ରରେ ଆଳାପ ଓ ଘନିଷ୍ଠତା ଆଗେଇଚାଲିଲା । ଦେଖାଗଲା ଅହିଂସାରେ ସେ ଅଭ୍ୟସ୍ତ ଓ ମୁଁ ଆଶ୍ରିତ । ପ୍ରତ୍ୟେକଟି ବୀଜରେ ପ୍ରାଣଥିବା ଅନୁମାନ ଓ ଅନୁଭବ କରି ବାଇଗଣ, ପିଜୁଳି ଇତ୍ୟାଦି ଫଳରେ ବୀଜାଧିକ୍ୟ ଓ ତାକୁ ଖାଇଲେ ଅଧିକ ବୃକ୍ଷ ପ୍ରାଣନାଶ ଘଟିବା ଆଶଙ୍କାରେ ତାହାସବୁ ତ୍ୟାଗ କରିବାପାଇଁ ଜୈନ ମାତ୍ରେ ବିଚାରବନ୍ତ ଥିଲେ । କେବଳ ନଡ଼ିଆ, କଦଳୀ, ଆମ୍ବ ଇତ୍ୟାଦି ପରି ଯେଉଁ ଫଳ ବ୍ୟବହାରକଲେ ଅପେକ୍ଷାକୃତ ସ୍ୱଳ୍ପ ପ୍ରାଣନାଶ ଘଟେ ସେହିପରି ଫଳ ବ୍ୟବହାର କରିବାକୁ ଜୈନଧର୍ମରେ ନିର୍ଦ୍ଦେଶଥିବା ତାଙ୍କଠାରୁ ଶୁଣିଲି— ଅଭିଭୂତ ମଧ୍ୟ ହୋଇଗଲି । ଯେଉଁ ଦେଶରେ ଯେଉଁ ଧର୍ମ ଓ ସାମାଜିକ ଆଚରଣରେ ଅହିଂସାର ଏପରି ବ୍ରତ କାୟମନୋବାକ୍ୟରେ ପ୍ରତିପାଳିତ ହୋଇଆସିଛି, ତାହା କେଡ଼େ ଉନ୍ନତ, କେଡ଼େ ସଂସ୍କୃତିସମ୍ପନ୍ନ, ଭାବିଲେ ବିସ୍ମିତ ହେବାକୁ ହୁଏ । ସେହି

ଦେଶ, ସେହି ଧର୍ମ ଓ ସେହି ସମାଜ ଯେ ମହାତ୍ମା ଗାନ୍ଧିଙ୍କପରି ଅହିଂସା ଯୁଗାବତାରଙ୍କୁ ଜନ୍ମଦେବ ଏଥିରେ ବା ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଜୈନମାନଙ୍କ ବିଷୟରେ ଆମେ ଯତ୍‌ସାମାନ୍ୟ ପାଠ୍ୟପୁସ୍ତକରୁ ପଢ଼ି ଜାଣିଥିଲୁଁ ଯେ ସେମାନେ ନିଶ୍ୱାସରେ ଜୀବାଣୁ ଇତ୍ୟାଦି କାଳେ ପ୍ରବେଶ କରିବେ ସେଥିପାଇଁ କାର୍ପାସ ଇତ୍ୟାଦି ବ୍ୟବହାର କରୁଥିଲେ । ଅବଶ୍ୟ ତାହା ତେତେବେଳେ ଆମକୁ ଆଦିମ ଯୁଗର ଯୁକ୍ତିହୀନ ନିର୍ବୋଧ ଅନୁଷ୍ଠାନ ବୋଲି ଉପହାସର ବିଷୟ ହୋଇଥିଲା । କିନ୍ତୁ ସେହି ନିଷ୍କାମ ବ୍ରତାଚରଣରେ ସୁଦୂର ଭବିଷ୍ୟତର ଆଣବିକ ଭଳି ମାରଣାସ୍ତ୍ର ନିରୋଧର ବୀଜମନ୍ତ୍ର ଯେ ନିହିତ ଅଛି, ତାହା କିଏ କାହିଁକି ବିଚାର କରିବ ? କ୍ରିୟା ଓ ପ୍ରତିକ୍ରିୟାଦି ସୂକ୍ଷ୍ମ ଦାର୍ଶନିକ ବା ନୈତିକ ବିଚାରକୁ ଆସିଲେ ମଧ ବିଶ୍ୱାସ କରିହେବ କେତେକେ – ବିଶେଷତଃ ଯେଉଁ ଦେଶ-କାଳ-ପାତ୍ର ମଧ୍ୟରେ ଆମ୍ଭେମାନେ ସୀମାବଦ୍ଧ ଅଛୁଁ ! ମହତ୍ତ୍ୱ, ଅହିଂସା, କରୁଣା ନାମ ଶୁଣାଯାଏ ସତ କିନ୍ତୁ ଦୈନନ୍ଦିନ ବ୍ୟାବହାରିକ ଜୀବନର ପ୍ରତିଟି ଛନ୍ଦରେ ତାହା ଜୀବନବ୍ୟାପୀ ଅନୁଶୀଳନ କରୁଛି କିଏ ? ଯଦି ଜୈନମାନେ ନିଷ୍କପଟ ହୃଦୟରେ ତାହା ପାଳନ କରୁଥାନ୍ତି, ତେବେ ସେମାନେ ଓ ଆମେ ଉଭୟକୁ ତୁଳନା କଲେ ପ୍ରଭେଦ କେଡ଼େ ବିରାଟ ନହେବ ? ସେମାନେ ଦେବତା ହେଲେ ଆମେ ମନୁଷ୍ୟ ଓ ସେମାନେ ମନୁଷ୍ୟ ହେଲେ ଆମେ ପଶୁତ୍ୱକୁ ଓହ୍ଲାଇଆସିବା । ସେହି ଅତୀତ ଯୁଗରେ ବୁଦ୍ଧଦେବଙ୍କ ଆବିର୍ଭାବର ବହୁ ପୂର୍ବରୁ ମହାବୀର ଏହି ମହତୀ କରୁଣା ନୀତି ପ୍ରଚାର କରିଥିଲେ ଏବଂ ବୁଦ୍ଧଙ୍କ ଦୟା ଇତ୍ୟାଦିର ଯେଉଁ ସାଧନା ଓ ସିଦ୍ଧି ଘଟିଲା ତାହାର ଭୂମିକା ଥିଲା ଜୈନଧର୍ମ ଏବଂ ଅଶୋକଙ୍କ ରାଜତ୍ୱ କାଳରେ ଭାରତ ଓ ଭାରତ ବାହାରେ କେତେ ଦେଶ ଏହି ବୌଦ୍ଧଧର୍ମକୁ ବ୍ୟାପକଭାବେ ଗ୍ରହଣ କଲେ ସତ, କିନ୍ତୁ ଗାନ୍ଧିଜୀଙ୍କ ଆବିର୍ଭାବ ପର୍ଯ୍ୟନ୍ତ ଅହିଂସା ମନୁଷ୍ୟର ବ୍ୟାବହାରିକ ଜୀବନ ରାଜନୀତିରେ କୁତ୍ରାପି ବ୍ୟବହୃତ ହୋଇନଥିଲା । ଅବଶ୍ୟ ଭାରତର ରାଜନୈତିକ ସ୍ୱାଧୀନତା ଆନ୍ଦୋଳନରେ ଅହିଂସା ଅସହଯୋଗର ବିଶିଷ୍ଟ ଅଂଶ ଥିବା ସ୍ୱୀକାର କରାଯାଉଥିଲେ ମଧ ଏହା ଏକ ରାଜନୈତିକ ଅସ୍ତ୍ରଭାବେ ପୃଥିବୀର ଅନ୍ୟାନ୍ୟ ଅଂଶରେ ଯେ ଗୃହୀତ ହୋଇପାରିନାହିଁ ଏହା ସତ । କିନ୍ତୁ ଏହାର ଏକ ମିଶ୍ରଫଳ ଯେ ଭାବୀ ପୃଥିବୀର ରାଜନୈତିକ ସଂହତି ଉପରେ ପ୍ରଚଣ୍ଡ ପ୍ରଭାବ ପକାଉଛି, ତାହା ମଧ ନିଶ୍ଚିତ କଳ୍ପନା କରାଯାଇପାରେ । ଜୈନ ଓ ବୌଦ୍ଧଧର୍ମ ଯେଉଁ ମୌଳିକ ତତ୍ତ୍ୱ ଉପରେ ଥିଲା, ଗାନ୍ଧିଙ୍କ ଅହିଂସା ଅନୁଶୀଳନ ସେହି ଭିତ୍ତି ଓ ନୀତିକୁ ଆଶ୍ରୟ କରି ଭିନ୍ନ ଶୈଳୀରେ କେବଳ ଯୁଗୋପଯୋଗୀ କରିଛି ମାତ୍ର । ବେଳ ଥିଲା, ଯେତେବେଳେ ଧର୍ମ ନାମରେ ମହାଯୁଦ୍ଧମାନଙ୍କର ଅବତାରଣା କରାଯାଉଥିଲା ଓ ମାନବ ଇତିହାସ ଧର୍ମଯୁଦ୍ଧରେ କଳଙ୍କିତ ହୋଇ ରହିଛି; କିନ୍ତୁ ସେ

ଯୁଗ ଅତୀତ ହୋଇଛି । ଦେଶ, ଜାତୀୟତା ବର୍ତ୍ତମାନ ସେ ସ୍ଥାନ ଅଧିକାର କରିବସିଛି । ତେଣୁ ଗାନ୍ଧିଜୀ ସ୍ୱଦେଶ ଓ ଜାତୀୟତା ମାଧ୍ୟମରେ ସମଗ୍ର ପୃଥିବୀପାଇଁ ଏ ଶବସାଧନା ବରଣ କରିନେଇଥିଲେ । ତାଙ୍କ ସିଦ୍ଧିର ମାପକାଠି ଆମ ପକ୍ଷରେ ଅଚିନ୍ତ୍ୟ; କିନ୍ତୁ ଏହା ନିଶ୍ଚୟ ଯେ ମାନବ ସଭ୍ୟତାର ଦୃଷ୍ଟିକୋଣ ବଦଳିଯାଇଛି, ହିଂସାର, ଯୁଦ୍ଧର ଆଉ ଗୌରବ ନାହିଁ । ମାନବିକତାର ରୁଚି ବଦଳିଯାଇଛି । ପଞ୍ଚଶୀଳ ଇତ୍ୟାଦି ଯେଉଁସବୁ ରାଜନୈତିକ ବିଚାରଧାରାର ଅଭ୍ୟୁଦୟ ଘଟିଲା, ତାହା ସେହିସବୁ ବିଶ୍ୱବିବର୍ତ୍ତନର ସଙ୍କେତ ମାତ୍ର ଏବଂ ସେହିସବୁ ଅଭିନବ ଆଦର୍ଶକୁ ଲକ୍ଷ୍ୟରଖି ମାନବସମାଜ ଅଗ୍ରଗତି କରୁଛି । ବିଶ୍ୱଶାନ୍ତି ଦିଗରେ ଯେଉଁସବୁ ଚିନ୍ତାଧାରା ଓ ଇଙ୍ଗିତ ବିଷୟରେ ଆମ ଯୁଗ ଉପଲବ୍ଧି କଲାଣି, ତାହା ଐତିହାସିକ ନିୟମରେ ବିଚାର କଲେ ଖ୍ରୀଷ୍ଟଙ୍କ ଜନ୍ମର ୫୦୦ ବର୍ଷ ଆଗରୁ ଆରମ୍ଭ ହୋଇଛି, ଯେତେବେଳେ ମହାବୀର ଓ ବୁଦ୍ଧଙ୍କ ଚରଣ ସ୍ପର୍ଶରେ ଏ ମର୍ତ୍ତ୍ୟଲୋକ ପବିତ୍ର ହୋଇଥିଲା । ଏହାରି ଚରମ ଓ ପରମ ପରିଣତି ଘଟିବାକୁ ଅଢ଼େଇହଜାର ବର୍ଷ ବିତିଗଲାଣି; ଆଉ କେତେ ବର୍ଷ ବା କେତେ ଯୁଗ ବା କେତେ ଶତାବ୍ଦୀ ଲାଗିପାରେ । କିନ୍ତୁ ଏହା ନିଶ୍ଚିତ ଯେ ମାନବ ସମାଜ ସେହି ଆଦର୍ଶ ଓ ଲକ୍ଷ୍ୟ ଦିଗରେ ଏକ ଅଦୃଷ୍ଟ ଶକ୍ତିଦ୍ୱାରା ଆକୃଷ୍ଟ । ନଦନଦୀମାନେ ଯେପରି ମହାସାଗର ଦିଗରେ ପ୍ରଧାବିତ, ଏହି ଆକର୍ଷଣର ବେଗ ଠିକ୍ ସେହିପରି । କେହି ଜାଣୁ ନଜାଣୁ, କେହି ଶୁଣୁ ନଶୁଣୁ, କେହି ଦେଖୁ ନଦେଖୁ, କିମ୍ବା କେହି ବୁଝୁ ନବୁଝୁ, ଆୟତ୍ତରେ କିମ୍ବା ଅଣାୟତ୍ତରେ ମାନବିକତାର ଏହି ପ୍ରଗତିରଥ ଆଗେଇ ଚାଲିଛି । ଜ୍ଞାନୀ କୁହ, ଭକ୍ତ କୁହ, ମହାପୁରୁଷ କୁହ,ମହାତ୍ମା କୁହ ଅବତାର କୁହ ସେମାନେ ଏହି ପ୍ରଗତିର ଶାଶ୍ୱତ ଅଗ୍ରଗତି ଶିଥିଳ ହେବାମାତ୍ରେ, ବ୍ୟାହତ ହେବାମାତ୍ରେ ଧାଇଁଆସନ୍ତି ସଜାଡ଼ି ଦେବାକୁ ମାତ୍ର ।

ଜେଲର୍ ବାବୁଙ୍କ ସହିତ ଆଳାପ ପରେ ଏହିପରି ଅହିଂସାର ତାତ୍ତ୍ୱିକତା ବିଷୟରେ ଚିନ୍ତା କରୁଥିଲି । ବିଶେଷତଃ ସଂଗଠନ ଓ ସତ୍ୟାଗ୍ରହର ଘନଘଟା ମଧ୍ୟରେ ଏସବୁ ସୂକ୍ଷ୍ମବିଷୟରେ ଟିକିଏ ଚିନ୍ତା କରିବାକୁ ଅବସର ନଥିଲା । କାରାବାସର ଶାନ୍ତନୀଡ଼ କୋଳରେ ସେ ସୁବିଧା ପାଇବାରୁ କାରାବାସଜନିତ ଅବସାଦର ଆଶଙ୍କା କେବଳ ଯେ ଦୂରୀଭୂତ ହୋଇଗଲା ତାହାନୁହେଁ, କାରାଗାର ମଧ୍ୟରେ ଏକ ତପସ୍ୟାର ପୀଠ ଆବିଷ୍କାର କରିବସିଲି । ତତ୍‌ପୂର୍ବରୁ ମୁଁ ଯେ ଧ୍ୟାନଧାରଣା ବିଷୟରେ ଅଳ୍ପ ସ୍ୱଳ୍ପ ଅଭ୍ୟାସ କରିନଥିଲି ତାହାନୁହେଁ; କିନ୍ତୁ ଏଠାରେ ପ୍ରକୃଷ୍ଟ କ୍ଷେତ୍ର ପାଇଲି ନିୟମିତ ସାଧନା କରିବାର । ଫଳରେ ଚିତ୍‌ର ଯେଉଁସବୁ ଆକସ୍ମିକ ଓ ଅତର୍କିତ ସ୍ଫୁରଣ ଅନୁଭବ କଲି, ତାହା କିପରି ମୋ ପକ୍ଷରେ ସମ୍ଭବ ହୋଇଥାନ୍ତା– କାରାବାସ ବ୍ୟତୀତ ! ଅବଶ୍ୟ ସେସବୁ ଅନ୍ତର୍ନିହିତ ଶକ୍ତିଉତ୍ସର ଉପଲବ୍ଧି ପରିପକ୍ୱ ହେବାଆଗରୁ

ମୋତେ ମାତ୍ର ଦଶମାସ ପରେ ବାହାରକୁ ଚାଲିଆସି ପୁଣି କର୍ମକ୍ଷେତ୍ରରେ ଜଡ଼ିତ ହେବାକୁ ପଡ଼ିଲା, କିନ୍ତୁ ଏ ଅବଧି ଯଦି ମୋତେ କାରାବାସ ଭୋଗିବାକୁ ପଡ଼ିଥାନ୍ତା, ମୁଁ ଆଧ୍ୟାତ୍ମିକତା ଦିଗରେ କେତେ ଆଗେଇପାରିଥାନ୍ତି, ତାହା ଏବେ ମୋ ପକ୍ଷରେ କଳନାତୀତ । ସିଦ୍ଧ ମହାପୁରୁଷ ହେଲେ କିପରି ସ୍ତରରେ ପହଞ୍ଚିବାକୁ ହୁଏ, ତାହା ଅବଶ୍ୟ ମୋ ପରି କ୍ଷୁଦ୍ର ଅଧମାଧମ ପକ୍ଷରେ ଅଗମ୍ୟ; କିନ୍ତୁ ଅନୁଭବ ନହେଲେ ମଧ୍ୟ ଅନୁମାନ କରିବା ଅନ୍ତତଃ ମୋ ପକ୍ଷରେ ସମ୍ଭବ ହୋଇଛି ଐଶ୍ୱର୍ଯ୍ୟ କଣ ବୋଲି, ଯାହାର କଣାଦପି କଣା ଲାଭ କଲେ ମଧ୍ୟ ଭୌତିକତାର ବିରାଟ ଆବରଣ, ଆଲୋକ ଆଗରେ ଅନ୍ଧକାର ପରି ଘୁଞ୍ଚିଯାଏ ଏବଂ ଘନେଇଉଠେ ଏକପ୍ରକାର ଅନିର୍ବଚନୀୟ ଆନନ୍ଦ; ଯାହାକୁ ବିଚ୍ଛେଦାତ୍ମକ ଦୁଃଖ କହିଲେ ବରଂ ଅଧିକ ଠିକ୍ ହେବ । ସେ ଦୁଃଖ ଏଡ଼େ କରୁଣ, ଏଡ଼େ ମର୍ମସ୍ପର୍ଶୀ, ଏଡ଼େ ଆର୍ତ୍ତମୟ ଯେ ତାକୁ ଭୋଗିବାଠାରୁ ଛାଡ଼ିବା ତତୋଧିକ ଦାରୁଣ ଯନ୍ତ୍ରଣାଦାୟକ । ସେସବୁ ଆଲୋଚନା କରିବା କ୍ଷେତ୍ର ଏ ନୁହେଁ । ମୋ ଜେଲ ଜୀବନର ଅଭିଜ୍ଞତା ସହିତ ଏହା ଅଙ୍ଗାଙ୍ଗୀଭାବେ ସଂପୃକ୍ତ ବୋଲି ଲେଖିବା ଲୋଭ ସମ୍ବରଣ କରି ହେଲାନାହିଁ । କାରଣ ପାଠକମାନଙ୍କ ମଧ୍ୟରୁ କାହା କାହା ପକ୍ଷରେ ଏସବୁ କାଳ୍ପନିକ ଓ ଅବାନ୍ତର ବୋଧହେବାର ଆଶଙ୍କା ମଧ୍ୟ ଅଛି । ଉପହାସର ଭୟ ପୁଣି ଅଧିକ ।

କ୍ରମଶଃ ବେଶି ବେଶି ଖବର ପହଞ୍ଚୁଥାଏ ମୁଁ ହଜାରିବାଗ ନିକଟରେ ବଦଳି ହେବି ବୋଲି । ବିହାର-ଓଡ଼ିଶା ପ୍ରଦେଶ ମଧ୍ୟରେ ଏକ ସ୍ୱାସ୍ଥ୍ୟକର ସ୍ଥାନରେ କେନ୍ଦ୍ର ଜେଲ ଅବସ୍ଥିତ । ସେତେବେଳକୁ ଜେଲ ଜୀବନର ଶୃଙ୍ଖଳା ଇତ୍ୟାଦି ସହିତ ପରିଚିତ ଶେଷ ହେଇଥିଲା । ବରଂ ସଙ୍ଗହୀନ ଜୀବନ ଭଲଲାଗୁଥାଏ । ଖବରକାଗଜ ମିଳୁନଥିବାରୁ ବାହାର ସମ୍ବାଦ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ଚିନ୍ତାର ଖୋରାକ ଯାହା ସାମାନ୍ୟ ଭବିଷ୍ୟତ କଳ୍ପନା ଯୋଗାଉଥାଏ । ପାରିବାରିକ ଉଦ୍‌ବେଗ ମଧ୍ୟରେ ଏକମାତ୍ର ମା' । ଲବଣ ସତ୍ୟାଗ୍ରହ ଆରମ୍ଭ ଆଗରୁ ପୈତୃକ ଭୂସମ୍ପତ୍ତିରୁ ପ୍ରାୟ ଅର୍ଦ୍ଧେକ ବିକ୍ରିକରି ସତ୍ୟାଗ୍ରହରେ ଅଧିକାଂଶ ବ୍ୟୟ ହୋଇଥିଲେ ମଧ୍ୟ ଯାହା ଅବଶିଷ୍ଟ ଥାଏ, ତାହା ପାରିବାରିକ ଦାୟିତ୍ୱ ଚଳାଇବାକୁ ଯଥେଷ୍ଟ ଥାଏ । ତେଣୁ ସେ ଦିଗରେ ଉଦ୍‌ବେଗ ମୋଟେ ନଥାଏ । କେବଳ ଯାହାକିଛି ଉଦ୍‌ବେଗ ଥାଏ, ପାରାଦ୍ୱୀପର ରୁଗ୍ଣା ବିଧବାରାଣୀ କର୍କଟ ରୋଗର ମାରାତ୍ମକ ପ୍ରତିକ୍ରିୟାରେ ଜର୍ଜର ହୋଇ ମୃତ୍ୟୁଦ୍ୱାରରେ ଅପେକ୍ଷା କରୁଥିଲେ ଏବଂ ମୋ ଜୀବନର ସର୍ବାପେକ୍ଷା ହିତୈଷିଣୀ ଏହି ମହିଳାଙ୍କର ରୋଗଶଯ୍ୟାରେ ମୁଁ କୌଣସି ସେବା କରିପାରିଲିନାହିଁ । ଏ ହେଲା ଗୋଟିଏ ସମସ୍ୟା । ଦ୍ୱିତୀୟ ସମସ୍ୟାଟି ତତୋଧିକ ଗୁରୁତର । ତାଙ୍କ ଦ୍ୱିତୀୟା କନ୍ୟା ବିଷୟରେ ମୋ ଦାୟିତ୍ୱ । ଏ ସମ୍ପର୍କରେ ଯଥାସ୍ଥାନରେ ଲିଖିତ ହେବ । ବର୍ତ୍ତମାନ

ଏତିକି ଲେଖିଲେ ଯଥେଷ୍ଟ ହେବ ଯେ ଏହି କନ୍ୟାଙ୍କ ଦାୟିତ୍ୱ ବିଷୟରେ ମୁଁ ଗୋଟିଏ ଅପରିପକ୍ୱ ସିଦ୍ଧାନ୍ତର ସମ୍ମୁଖୀନ ହୋଇ ଛଟପଟ ହେଉଥିବା ବେଳେ ଲବଣ ସତ୍ୟାଗ୍ରହର ଦୁର୍ଜୟ ଦୁନ୍ଦୁଭି ବାଜିଉଠିଲା । ଆମ୍ଭେମାନେ ସୈନିକୋପମ ଶୃଙ୍ଖଳା ରକ୍ଷାକରି ଯେ ଯାହା କର୍ତ୍ତବ୍ୟରେ ଲାଗିଗଲୁ । ଆଉ ସେଦିଗରେ ଭାବିବାର ସମୟ ନଥିଲା ଯେପର୍ଯ୍ୟନ୍ତ, ସେପର୍ଯ୍ୟନ୍ତ ମୁଁ ଦାୟିତ୍ୱରୁ ମୁକ୍ତିଲାଭ କରି ଜେଲରେ ପ୍ରବେଶ କରିନଥିଲି । ଜେଲ ପ୍ରବେଶ ପରେ ଚିନ୍ତାରାଜ୍ୟରେ ଯଦୃଚ୍ଛା ଭ୍ରମଣ କରିବାକୁ ଅବସର ପାଇବା ମାତ୍ରେ ଯାହାସବୁ ଦେଖାଗଲା, ତନ୍ମଧ୍ୟରେ ବିଧବାରାଣୀଙ୍କ ଏହି କନ୍ୟାଟି ଗୋଟିଏ ବିଶିଷ୍ଟ ସ୍ଥାନ ଦଖଲ କରି ବସିଥିବା ଦେଖିଲି । ରୁଗ୍‌ଣାମାତାଙ୍କ ଅନ୍ଧକାରମୟ ଭବିଷ୍ୟତ୍ ବିଷୟରେ ଉକ୍ରଣ୍ଠିତା, ଉଦ୍‌ବିଗ୍ନା, ମଳୀନ ବେଶଭୂଷା ପରିହିତା ଅଥଚ ଲାବଣ୍ୟମୟୀ । ସେହି ବିଷାଦଭରା ପ୍ରତିମାଟିର ସ୍ମୃତି-ଚର୍ଚ୍ଚିତ ଅନ୍ତଃକରଣ ଘେନି ସୁଦୀର୍ଘ ବାଇଶମାସ ହଜାରୀବାଗ ପରି ସୁଦୂର ଦେଶସ୍ଥିତ ବନ୍ଦୀଶାଳାରେ କଟାଇବା ମୋ ପକ୍ଷରେ କେଡ଼େ ଦାରୁଣ ହେବ ଏବଂ ସେମାନଙ୍କ ନିରାଶ୍ରୟ ଅବସ୍ଥାର ଏକମାତ୍ର ଆଶ୍ରୟସ୍ଥଳ ମୁଁ ଘୋର ଅନ୍ତରାଳ ମଧ୍ୟରେ ସୁଦୀର୍ଘକାଳ ଆତ୍ମଗୋପନ କରି ରହିବା ସେମାନଙ୍କ ପକ୍ଷେ କେଡ଼େ ଭୈରବ ହେବ ଏହା ଭାବି ଦେଖିବା ବେଳକୁ ମୋର ଅସ୍ତିତ୍ୱ ମଧ୍ୟରେ ଏକ ଶିହରଣ ଅନୁଭବ କରୁଥିଲି । ତଥାପି ନିରୁପାୟଭାବେ ଯଥାସମୟରେ ହଜାରୀବାଗ ଦିଗରେ ପ୍ରେରିତ ହେଲି ଜନ୍ମଭୂମି ଉତ୍କଳର ଉତ୍ସଙ୍ଗରୁ ବଞ୍ଚିତ ହୋଇ ।

—

# ବନ୍ଦୀଜୀବନର ନନ୍ଦିତ ଓ ନିନ୍ଦିତ ସ୍ମୃତି-୨

ଜନ୍ମଭୂମି ଉତ୍କଳ ଉତ୍ସଙ୍ଗରୁ ବଞ୍ଚିତ ହୋଇ ପ୍ରେରିତ ହେଲି ହଜାରିବାଗ କେନ୍ଦ୍ର ଜେଲ ଅଭିମୁଖରେ । ଖଡ଼ଗପୁର ପର୍ଯ୍ୟନ୍ତ ପହଞ୍ଚିବାକୁ ପୁରୀ ଏକ୍ସପ୍ରେସ୍ କିମ୍ବା ମାନ୍ଦ୍ରାଜ ମେଲରେ ବ୍ୟବସ୍ଥା ଥିଲା ମନେନାହିଁ; ତେବେ ମନେପଡୁଛି ଭାଦ୍ର କୃଷ୍ଣପକ୍ଷର ସେ ଏକ ରାତ୍ରୀ । ସଂଧ୍ୟାର ଅଳ୍ପ ସମୟ ପରେ ଶୋଇପଡ଼ିଥିଲି ନିଜ ସେଲ୍ ଭିତରେ, ଉଠିଲି ପ୍ରହରୀ ଡାକରେ । ସଙ୍ଗେ ସଙ୍ଗେ ଯିବାକୁ ହେବ । ଜେଲ ଅଫିସ୍‌ରେ ଆସିଷ୍ଟାଣ୍ଟ ଜେଲର୍‌ଙ୍କଠାରୁ ଶୁଣିଲି ହଜାରିବାଗ ଯିବାକୁ ହେବ । ପ୍ରତ୍ୟୁତ୍ତର ବା ଆପତ୍ତି କରିବାର ଅବକାଶ କେଉଁଠି ? ଦୁଇଟି ଆର୍ମଡ୍ ଫୋର୍ସ ଜେଲ ଅଫିସ୍‌ର ଆବଶ୍ୟକୀୟ ୱାରଣ୍ଟ ଇତ୍ୟାଦି ପାଇସାରିବା ମାତ୍ରେ ଗସ୍ତ ଆରମ୍ଭ କରିଦେଲେ । ଯଥାରୀତି ଶବ୍ଦକରି ଅର୍ଗଳଦ୍ୱାର ଉନ୍ମୁକ୍ତ ହେଲା ଏବଂ ପ୍ରହରୀଦ୍ୱୟଙ୍କ ସମଭିବ୍ୟାହାରରେ ଅପେକ୍ଷା କରିଥିବା ଘୋଡାଗାଡ଼ିରେ ଉଠିଲି । ଆଜିର ପାଠକେ ପ୍ରଶ୍ନକରିପାରନ୍ତି, ଜେଲଭ୍ୟାନ୍ କୁଆଡେ ଗଲା କି ? ଜେଲଭ୍ୟାନ୍ ହେବାକୁ ତଥାପି ବହୁ ବିଳମ୍ବ ଥିଲା ଏବଂ ରାଜନୈତିକ ଆନ୍ଦୋଳନ ଘୋରତରଭାବରେ ଚାଲିବାରୁ ଜେଲଭ୍ୟାନ୍ ଇତ୍ୟାଦିର ଆବଶ୍ୟକତା ପ୍ରଥମଥରପାଇଁ ସୃଷ୍ଟି ହେଲା । କାରଣ କଂଗ୍ରେସର ବାନରସେନାଙ୍କ ଉତ୍ପାତ ଯେତେବେଳେ ଅଧିକରୁ ଅଧିକ ବଢ଼ିଉଠିଲା ଏବଂ ଜେଲରେ ସ୍ଥାନାଭାବ କର୍ତ୍ତୃପକ୍ଷ ଉପଲବ୍ଧି କଲେ, ତେତେବେଳେ ସେମାନେ ଚାରିଆଡେ ବ୍ୟାପିଥିବା ଏହି ବାନର-ସେନାଙ୍କୁ ଭ୍ୟାନ୍‌ରେ ଭର୍ତ୍ତିକରି ଦୂରାନ୍ତ ସ୍ଥାନମାନଙ୍କରେ ଛାଡ଼ି ପଳାଇଆସିବାପାଇଁ ବୁଦ୍ଧି ପ୍ରୟୋଗ କଲେ । ତେଣୁ ଆନ୍ଦୋଳନର ଆଉ ଟିକିଏ ପରେ ଜେଲଭ୍ୟାନ୍ ଯୋଗାଇବାକୁ ସରକାର ସୁବିଧା ମନେ ନ କରନ୍ତୁ, ବାଧ୍ୟହେଲେ । କାରଣ ଏ ବାନର ସେନାଙ୍କ ପ୍ରତ୍ୟହ ଉଦ୍‌ଭାବିତ ନୂଆ ନୂଆ କୌଶଳରେ ସାଧାରଣ ଜନତା ଯେପରି ଆକୃଷ୍ଟ ହେଉଥିଲେ, ଶାସକ ଗୋଷ୍ଠୀ ସେହିପରି ଅତ୍ୟଧିକ ବ୍ୟସ୍ତବିବ୍ରତ ହୋଇପଡୁଥିଲେ । ଏପରିକି ଏମାନେ କୋର୍ଟର ବିଚାରାସନ ଦଖଲ କରି, ମକଦମା ବିଚାରର ଅଭିନୟ ଆରମ୍ଭ କରି-ଦେଉଥିଲେ ଏବଂ ବେତ୍ରାଘାତ ଦଣ୍ଡ ବରଣକରି ଲୋକଙ୍କ ମନରେ ଶାସକମାନଙ୍କ ପ୍ରତି ଘୃଣା ଓ ବିରକ୍ତି ଯୁଗପତ୍ ଉଦ୍ରେକ କରାଇବା ଲକ୍ଷ୍ୟ ହାସଲ କରିପାରୁଥିଲେ । ବେତ୍ରାଘାତ ଦଣ୍ଡ ପରେ କୋମଳମତି ବାଳକମାନଙ୍କର ରକ୍ତାକ୍ତ ହାତ ଓ ରକ୍ତାକ୍ତ ପୃଷ୍ଠ ସହିତ ହସହସ ମୁଖ ଦେଖି ଲୋକେ ଅଶ୍ରୁ ସମ୍ବରଣ କରିପାରୁନଥିଲେ ଏବଂ ବିଦେଶୀ ଶାସନକଳ ପକ୍ଷରେ ତାହାହିଁ ମାରାତ୍ମକ ହୋଇଉଠୁଥିଲା ! ଅସହଯୋଗର ଧନ୍ୟ କରାମତି ! ଅହିଂସା ସତ୍ୟାଗ୍ରହର ଧନ୍ୟ ମହିମା !

ପ୍ରହରୀ ସୁରକ୍ଷିତଭାବେ ଥାର୍ଡ଼କ୍ଲାସ ଘୋଡ଼ାଗାଡ଼ିରେ କଟକ ଷ୍ଟେସନ୍‌କୁ ବାହାରିବା ସମୟରେ ଜେଲ୍‌ଗେଟ୍ ପାର ହୋଇଛୁଁ କି ନାହିଁ ମୂଷଳଧାରରେ ବର୍ଷା ଆରମ୍ଭ ହେଲା । ବର୍ଷା ମାଡ଼ରେ ଆମ ପଞ୍ଜରାବଶିଷ୍ଟ କୃଶକାୟ ଅଶ୍ୱଯୁଗଳ ଜଡ଼ହୋଇଗଲେ । ସାରଥିଙ୍କ ଚିତ୍କାର ଦୁଇଗୁଣ ବଢ଼ିଉଠି ସେ ନୀରବତାକୁ କ୍ଷୁବ୍‌ଧ କରୁଥିଲା ସତ; କିନ୍ତୁ ଅଶ୍ୱମାନଙ୍କୁ ବେଗଗାମୀ କରିବା ଲକ୍ଷ୍ୟ ସର୍ବଥା ବିଫଳ ହେଉଥିଲା । ପ୍ରୟୋଜନୀୟ ସମୟଠାରୁ ଷ୍ଟେସନ୍‌ରେ ପହଞ୍ଚିବାକୁ ଯେ ଦୁଇଗୁଣ ସମୟ ଲାଗିଲା, ଲେଖିବା ନିଷ୍ପ୍ରୟୋଜନ । କଟକ ଷ୍ଟେସନ୍‌ରେ ପହଞ୍ଚି ପରିଚିତ ମୁହଁଟିଏ କାହାର ଦେଖିବାକୁ ବଡ଼ ଆଶାଥିଲା । କିନ୍ତୁ ସେ ବର୍ଷାମାଡ଼ରେ ମୁହଁ ଦେଖାଉଛି କିଏ ? ଟ୍ରେନ୍ ପହଞ୍ଚିବାକୁ ନିର୍ଦ୍ଦିଷ୍ଟ ସମୟରୁ ମଧ ଟିକିଏ ବିଳମ୍ବ ହେଲାନାହିଁ । ଅନ୍ତତଃ ଇଂରେଜ ଶାସନର କଠୋର ନିୟମାନୁବର୍ତ୍ତିତା ଗୁଣଟି ଯଦି ଆମେ ଅନୁକରଣ କରିପାରିଥାନ୍ତୁ ଆମ କ୍ଷତି ତୁଳନାରେ ଯଥେଷ୍ଟ ଲାଭ ହୋଇନଥିଲେ ମଧ ଅନେକଟା ପୂରଣ ହୋଇଥାନ୍ତା । ଆଜି ସ୍ୱାଧୀନତାର ଗହନ ଆଟୋପ ଭିତରେ ଆମେ ପ୍ରତି ଗାଡ଼ି ଆସିବାକୁ କିଛି ନା କିଛି ସମୟ ଅପେକ୍ଷା କଲାବେଳେ ଝୁରିହେଉ ଇଂରେଜୀଅମଳର ସମୟାନୁବର୍ତ୍ତିତାକୁ । ଆମ ରେଳବାଇ କର୍ମଚାରୀମାନଙ୍କ ବେଶଭୂଷା, ଠାଣିମାଣି, ଚାଲିଚଳଣ, କଥାଭାଷା ସବୁ ଦେଖି ଶୁଣି ମନେହୁଏ ଇଂରେଜମାନଙ୍କ କାଇଦା-କଟକଣା ଆମ ଲୋକେ ବେଶ୍ ଅନୁକରଣ କରି ହଜମ୍ କରିପାରିଛନ୍ତି ଏବଂ ସେଥିପାଇଁ ଇଂରେଜମାନଙ୍କୁ ନିଶ୍ଚିତଭାବେ ଭୁଲିଯାଉ, କିନ୍ତୁ ଷ୍ଟେସନ୍‌ମାଷ୍ଟରଙ୍କ କାମରା ପାଖ ବ୍ଲାକ୍‌ବୋର୍ଡ଼କୁ ଚାହିଁବାମାତ୍ରେ ଯେତେବେଳେ ଦୃଷ୍ଟିପଥାରୂଢ଼ ହୁଏ ଅମୁକ ଗାଡ଼ି ଆସିବାକୁ ଏତେ ବିଳମ୍ବ ଅଛି ଏବଂ ମେଲ୍ ଏକ୍‌ସପ୍ରେସ୍ କେହି ଏ ନିୟମରୁ ବାଦ ପଡ଼ନ୍ତିନାହିଁ, ତେତେବେଳେ ସ୍ୱତଃ ଇଂରେଜମାନଙ୍କ ସ୍ମୃତି ମନକୁ ଆସେ । ଯଦି କାହାର ନଆସୁଥିବ ତାହା ବ୍ୟତିକ୍ରମ ସିନା; କିନ୍ତୁ ନିୟମ ହେଉଛି ସେମାନଙ୍କ କୃତିତ୍ୱ ମନେପଡ଼ିବା, ଯେହେତୁ ଆମପକ୍ଷରେ ଗାଡ଼ି ଠିକ୍ ସମୟରେ ନପହଞ୍ଚିବା ହେଲାଣି ନିୟମ ଓ ଠିକ୍ ସମୟରେ ପହଞ୍ଚିବା ହେଲାଣି ବ୍ୟତିକ୍ରମ । ଏସବୁ ଯଥାସମୟରେ ସଂଶୋଧିତ ହେବାର ଆଶାଭରସା ଆମର ଯେ ନାହିଁ କିମ୍ବା ଆମ ଭାବୀ ବଂଶଧରମାନେ ଏସବୁ ଗୁଣକୁ ଯେ ଆୟତ୍ତ କରିନପାରିବେ, ତାହା କହିବା ଆମର ଉଦ୍ଦେଶ୍ୟ ନୁହେଁ; କିନ୍ତୁ ଲକ୍ଷଣ ଆପାତତଃ ଯେ ବିପରୀତ ଦିଗରେ ଗତି କରୁଛି, ଏହା ସମସ୍ତେ ଅନୁଭବ କରିପାରୁଛନ୍ତି ।

ଯାହାହେଉ, ଗାଡ଼ି ଟିକିଏ ବିଳମ୍ବରେ ଆସିବାକୁ ଯେତେ ଆଶା କରିଥିଲେ ମଧ ସେ ଆଶା ପୂରଣ ହେଲାନାହିଁ ଓ ଅସନ୍ତୋଷ ମଧରେ ଗାଡ଼ିରେ ଉଠିବାକୁ ପଡ଼ିଲା । ଯଥାସମୟରେ ଗାଡ଼ି ଛାଡ଼ିଦେଲା ଓ କଟକ ଷ୍ଟେସନ୍ ଅଦୃଶ୍ୟ ହେବା ପୂର୍ବରୁ

ଘନଘୋର ଅନ୍ଧକାର ମଧ୍ୟରେ ଗାଡ଼ି ପ୍ରବେଶ କରିସାରିଥିଲା । ଅବିସ୍ମରଣୀୟ ସେ ଅନ୍ଧକାର ନିଶା । ଚନ୍ଦ୍ର ନାହିଁ, ନକ୍ଷତ୍ର ନାହିଁ, ନିରଗ୍ନି ନିଷ୍ପ୍ରଦୀପ-ଜ୍ୟୋତି ଲେଶଶୂନ୍ୟ ହୋଇ ତମିସ୍ରା ଅନ୍ଧବ୍ରାହ୍ମୀ ନିଶାପରି ଏକ ଅନୁତ୍ତର ଜିଜ୍ଞାସ୍ୟ ନିର୍ଗୁଣ ନିଗୂଢ଼ । ମୋ ପକ୍ଷରେ ଅବିସ୍ମରଣୀୟ କାହିଁକି ନା, ରାଜନୈତିକ ବନ୍ଦୀଭାବେ ଜନ୍ମଭୂମି କୋଳରୁ ବଞ୍ଚିତ ବିତାଡ଼ିତ ହେଉଥିବା ବେଳେ ଆଶାଥିଲା, ଜନନୀର ଶ୍ରୀମୁଖ ଦର୍ଶନ କରିନେବି, ନଦୀ ପର୍ବତ ଚିତ୍ରିତ ପ୍ରକୃତି ମାଧ୍ୟମରେ; କିନ୍ତୁ ସେ ଘନ ତମିସ୍ରାଘେରା ଆବରଣ ଅବଗୁଣ୍ଠନ ଭେଦ କରିବାକୁ ସର୍ବଦା ଅସମର୍ଥ ହେଲା ମୋର ଅଶ୍ରୁବିଗଳିତ ଚକ୍ଷୁ । ମନେ ମନେ ଆବୃତ୍ତି କରୁଥିଲି ଦାସେ ଆପଣଙ୍କ ସମଘଟଣା ଲିଖିତ କବିତାବଳୀ । ଦାସେ ଆପଣେ ଦୁଇବର୍ଷ ଆଗରୁ ସ୍ୱର୍ଗକୁ ଚାଲିଯାଇଥିଲେ ସତ; କିନ୍ତୁ ବଞ୍ଚିଥିଲେ ଏହି ଦେଶବ୍ୟାପୀ ଜାଗରଣ ଦେଖି ତାଙ୍କ କବି ହୃଦୟରେ ଉତ୍ସ କିପରି ଅନର୍ଗଳ ଆକାର ଧାରଣକରିଥାନ୍ତା, ତାହା ଚିନ୍ତା କରୁ କରୁ କେତେବେଳେ ଶୋଇପଡ଼ିଲି ଜାଣେନାହିଁ । ନିଦ ଭାଙ୍ଗିଲା ବେଳକୁ ଗାଡ଼ି ଉତ୍କଳ ସୀମା ପାରହୋଇଯାଇଥିଲା ଏବଂ ଦେଖିଲି କୌମୁଦିସ୍ନାତ ମେଘବିମୁକ୍ତ ଅସୀମ ମହାକାଶ, ଆକାଶ ବକ୍ଷରେ ସୁଶୁଭ୍ର ଛାୟାପଥ ଓ କାଳଚକ୍ରରେ ଗ୍ରଥିତ ଅଗଣିତ ନକ୍ଷତ୍ରରାଜି । ତନ୍ମଧ୍ୟରେ ଅସ୍ପଷ୍ଟ ନୀହାରିକାର ନୃତ୍ୟ ଚପଳ ଚରଣ ସ୍ପର୍ଶରେ କମ୍ପିତ ଛାୟାପଥ । ଆକାଶର ଉତ୍ତର ସୀମାନ୍ତ ଦିଗ୍‌ବଳୟର ଟିକିଏ ଉର୍ଦ୍ଧ୍ୱରେ ସପ୍ତର୍ଷିମଣ୍ଡଳ, ବଳୟବେଷ୍ଟନରେ ଆନନ୍ଦବିଲୀନ ଦିଗ୍‌ବଧୂ । ସେ ନିଖିଳ ସୌନ୍ଦର୍ଯ୍ୟ ଅବଲୋକନରେ ହୁ ହୁ କରିଉଠିଲା ମୋର ମନ, ପ୍ରାଣ । ଅଶ୍ରୁହୀନ ପିଙ୍ଗଳ ନେତ୍ରରେ ଅତିଶୟ ଶୁଷ୍କ, ଅତିଶୟ ରୁକ୍ଷ ଦୃଷ୍ଟିପାତ କରି ଆନନ୍ଦପୂର୍ଣ୍ଣ ଆକାଶ ଆଡ଼କୁ ଚାହିଁ ଦୀର୍ଘଶ୍ୱାସ ପକାଇଲି । ମୋର କଠୋର ସୀମାବଦ୍ଧ ବନ୍ଦୀଜୀବନ ଅନୁଭୂତ ହେଲା । କାରଣ ପ୍ରେତଲୋକର ପ୍ରେତ ପରି ମୋର ପ୍ରବେଶ ନିଷେଧ ଥିଲା ଉଚ୍ଛଳ ଜୀବନ-ନଦୀ ପ୍ଲାବିତ ପ୍ରାଣମୟୀ ପୃଥିବୀର ମମତା ମାୟା ଧରଣୀରେ, ଯେଉଁଠି ସଂଗୀତ-ମୁଖର ସମୀରଣ, କଳମୁଖର କଲ୍ଲୋଳିନୀ– ପିକ କୂଜିତ କୁଞ୍ଜବନ, ତ୍ୟାଗଯଜ୍ଞ ପ୍ରତିଷ୍ଠିତ କଲ୍ୟାଣୀ ପ୍ରଜା, ଗୃହେ ଗୃହେ ମାତା-ପିତା, ଭ୍ରାତା-ଭଗ୍ନୀ, ପତି-ପତ୍ନୀର କଳକୋଳାହଳ ବାତ୍ସଲ୍ୟରେ, ପ୍ରୀତିରେ, ପ୍ରେମମିଳନ ସୁଖରେ ଆନନ୍ଦଗୁଞ୍ଜନ ଆତ୍ମହରା ସ୍ନେହମୟୀ ବସୁନ୍ଧରା । ଉଦାସୀନ ସାକ୍ଷୀଟିଏ ପରି ଦୂରରେ ଛିଡ଼ାହୋଇ ଦେଖୁଛି ସେହି ଆନନ୍ଦଉତ୍ସବ, ଦେଖୁଛି ସେହି ସୁଖାପ୍ଳୁତ କୋଳାହଳ; କିନ୍ତୁ ଯୋଗଦେଇପାରିବିନାହିଁ ତହିଁରେ, ଏହି ଜାଗତିକ ଆନନ୍ଦ ଜୁଆରରେ ଅବଗାହନ କରିବା ଅଧିକାର ମୋର ନାହିଁ । ତଥାପି ମୋ ନିରାଶାର ସ୍ୱପ୍ନ ଅଛନ୍ତି ସେହି ନକ୍ଷତ୍ର, ସେହି ନୀହାରିକା, ସେହି ଛାୟାପଥ, ସେହି ଦିଗଙ୍ଗନା– ଯାହାକୁ ଭୋଗ କରିବାରେ ମୋର ବାଧା ନାହିଁ କି ବନ୍ଧନ ନାହିଁ ।

ହଁ– ଆତ୍ମାଲୋଚନା କରିବାର ଅବକାଶ ମିଳିଲା । ମୁଁ ପରିଚିତ କାମନାକୁଟିଳ ସମାଜ ସହିତ, ନ୍ୟାୟ ଅନ୍ୟାୟ ବିଚାରହୀନ ଅତ୍ୟୁଗ୍ର କ୍ଷୁଧା, ଚିରଲୋଭା, ଚିର ମଦାନ୍ଧ ଅଧର୍ମରେ ମୁଁ ମଧ ଲାଳିତ । ଇଚ୍ଛା କରିଥିଲେ ମୁଁ ସେପରି ଜୀବନ ଗ୍ରହଣକରି ସୁଖୀ ହୋଇପାରିଥାନ୍ତି– କିନ୍ତୁ ପାରିନାହିଁ । କାରଣ ଦିନେ ମୋ ଭିତରେ ଅନୁଭବ କରିଥିଲି ଏକ ଦୁର୍ଦ୍ଦମନୀୟ ଅଦ୍ଭୁତ ଧର୍ମବୋଧ; ଯାହା ହୋଇଥିଲା ଦୁର୍ନୀତି ରାଜତ୍ୱରେ ନୀତିର ଧାରକ । ସେହି ନୀତିର ନିରପେକ୍ଷ ବିଚାରରେ ସୌମ୍ୟଭାବ ଧରିଥିଲା ମୋର ସମସ୍ତ ଉଗ୍ରତା, ସମସ୍ତ ଔଦ୍ଧତ୍ୟ, ସମସ୍ତ ନିରଙ୍କୁଶତା ଏବଂ ସଂକଳ୍ପ କରିଥିଲି ଦୁଃଖ ଆଘାତରେ ଧରଣୀରେ ସୁଖଶତଦଳ ଫୁଟାଇବାକୁ, ଶ୍ମଶାନ ଚିତାର ପ୍ରଧୂମିତ ଧୂମରେ ମେଘସଞ୍ଚାର କରି ନବସୃଷ୍ଟିର ସହାୟକ ହେବାକୁ, ପ୍ରଳୟ ବେଦନାର ତାଡ଼ନା ମଧରେ ଅମିତପ୍ରଭ ସତ୍ୟ ଓ ନ୍ୟାୟଦଣ୍ଡକୁ ଉନ୍ନତ ରଖିବାକୁ; ଯାହାର ଐକାନ୍ତିକ ସାଧନାରେ ମାନବସମାଜରେ ସୂଚିତ ହେବ ନବଜୀବନର ଅଭ୍ୟୁଦୟ ।

ବିବେକ ବୁଦ୍ଧିଦ୍ୱାରା ଏକ ବିଚାରଶୀଳ ସୁସଂଯତ ହୃଦୟ ମୋପକ୍ଷରେ ସୁଲଭ ସତ; କିନ୍ତୁ ସର୍ବୋପରି ମୋ ବିସ୍ମୃତି ପଥରେ ଆବିର୍ଭୂତ ହୁଏ ଏକ ଧ୍ରୁବ ସ୍ମୃତି– ଯାହାର ଅମୋଘ ହସ୍ତସଙ୍କେତ ଆଚ୍ଛନ୍ନ ଦୃଷ୍ଟି ଓ ବୁଦ୍ଧି ମଧରେ ସନ୍ଧାନଦିଏ ଏକ ଅତନ୍ଦ୍ର ଓ ଅଭ୍ରାନ୍ତ ଦିଗ୍‌ଦର୍ଶନର– ଯାହା ସାହାଯ୍ୟରେ ମୁଁ ବୁଝିପାରେ ମୋ ମର୍ମଗତ ନିର୍ମମ, କଠିନ ସତ୍ୟକୁ ଏବଂ ସ୍ଥିରବୁଦ୍ଧି, ସ୍ଥିରଦୃଷ୍ଟି ଓ ଧ୍ରୁବ ଲକ୍ଷ୍ୟ ମୋ ପକ୍ଷରେ ଅବିଚଳିତ ହୋଇଉଠେ ।

ଏହିପରି ମାନସିକ ଘାତପ୍ରତିଘାତକୁ ଅତିକ୍ରମକରି ମୁଁ ଯଥାସମୟରେ କଡ଼ା ପହରା ନେତୃତ୍ୱରେ ହଜାରିବାଗ୍ କେନ୍ଦ୍ର ଜେଲରେ ପହଞ୍ଚିଲି । ବିହାର୍-ଓଡ଼ିଶା ପ୍ରଦେଶର ଏହା ହେଉଛି କେନ୍ଦ୍ରକାରାଗାର– ଯେଉଁଠି କୁଖ୍ୟାତ, ବିଖ୍ୟାତ ସବୁ ଶ୍ରେଣୀର ବନ୍ଦୀ ଦଣ୍ଡଭୋଗ କରୁଥିଲେ । ଗୋଟିଏ ଗୋଟିଏ ସ୍ୱତନ୍ତ୍ର କମ୍ପାଉଣ୍ଡ ଭିତରେ ୧୫।୨୦ଟି ସେଲ୍ ଅଛି ଏବଂ ପ୍ରତି ସେଲ୍‌ରେ ଆୟୋଜନ ଅନ୍ୟଠାରୁ ପୃଥକ । ପ୍ରତ୍ୟେକ ବନ୍ଦୀପାଇଁ ସ୍ୱତନ୍ତ୍ର ସ୍ୱତନ୍ତ୍ର ସେଲ୍ ଉଦ୍ଦିଷ୍ଟ । ସକାଳେ ସବୁ ସେଲ୍‌ଗୁଡ଼ିକ ଖୋଲିଦିଆଯାଏ ଏବଂ ସଂଧ୍ୟା ପୂର୍ବରୁ ବନ୍ଦକରିଦିଆଯାଏ; କିନ୍ତୁ ସେହି ନିର୍ଦ୍ଦିଷ୍ଟ କାରାଦଣ୍ଡ ଭିତରୁ ସ୍ୱତନ୍ତ୍ର ଆଦେଶ ବ୍ୟତୀତ ବାହାରିହୁଏନା । ଯାବଜ୍ଜୀବନ କାରା ଦଣ୍ଡିତ କଇଦୀମାନଙ୍କୁ ଦାମିଲ କୁହାଯାଏ । ରାଜନୈତିକ ବନ୍ଦୀମାନଙ୍କର ଘରସଫା, ପାଇଖାନା ସଫା, ପିଇବାପାଣି ଯୋଗାଇବା ଇତ୍ୟାଦି କେତେକ କାମପାଇଁ ପ୍ରତି ଓ୍ୱାର୍ଡ ବା କମ୍ପାଉଣ୍ଡରେ ଜଣେ ଲେଖା ଦାମିଲ ଥାଆନ୍ତି । ଖାଦ୍ୟ ଦୁଇପ୍ରକାର ମିଳେ– ଇଉରୋପୀୟାନ୍ ଓ ଇଣ୍ଡିୟାନ୍ ଖାଦ୍ୟ– ପାଉଁରୁଟି, ମାଂସ, ମଖନ ହେଲା ଇଉରୋପୀୟାନ ଓ ଭାତ, ଡାଲି, ତରକାରି ହେଲା ଇଣ୍ଡିୟାନ୍ । ଉପର ବେଳା ଭାତ ପରିବର୍ତ୍ତେ ରୁଟି ଖିଆଯାଇପାରେ ।

ସକାଳେ ଇଉରୋପୀୟାନ ଖାଦ୍ୟ ପାଉଁରୁଟି, ଅଣ୍ଡା, ମଖନ ଏବଂ ଇଣ୍ଡିୟାନ ହାଲୁଆ ଓ କିଛି ଶୁଖିଲାଫଳ ଜଳଖିଆପାଇଁ ଦିଆହୁଏ । ଗୋଟିଏ ଖଟ, ଗୋଟିଏ ଶେଯ, ଗୋଟିଏ ମଶାରି, ଦୁଇଟି ବିଛଣାଚାଦର, ଗୋଟିଏ ଟିଣ ଟ୍ରଙ୍କ୍, ଗୋଟିଏ ଥାଳି, ଗୋଟିଏ ଗ୍ଲାସ୍ ଓ ଗୋଟିଏ ଡାଟିଆ ଛଡ଼ା, ଗୋଟିଏ ଲଣ୍ଠନ, ଗୋଟିଏ ସୁରେଇ, ଦୁଇଟି କମଳ, ଗୋଟିଏ ସେଟ୍ ପଶମ ଶୀତପୋଷାକ, ଦୁଇସେଟ୍ ସାଧାପୋଷାକ ମିଳିଥାଏ । ଚାରିଖଣ୍ଡ ଇଟା ଓ ଦୁଇଟି ମାଟିକୁଣ୍ଡବିଶିଷ୍ଟ ପାଇଖାନା ଘରର ଗୋଟିଏ କୋଣ ମଣ୍ଡନ କରିଥାଏ ।

ସବୁ ଓଡ଼ିଆ କଇଦୀଙ୍କପାଇଁ ଗୋଟିଏ ଓ୍ୱାର୍ଡ଼ ନିର୍ଦ୍ଦିଷ୍ଟ ଥିଲା । ମୋର ସମସାମୟିକ କଇଦୀମାନଙ୍କ ମଧ୍ୟରେ ସର୍ବଶ୍ରୀ ପଣ୍ଡିତ ନୀଳକଣ୍ଠ ଦାସ, ଯଦୁମଣି ମଙ୍ଗରାଜ, ଗୋବିନ୍ଦ ମିଶ୍ର, ରାଜକୃଷ୍ଣ ବୋଷ, ନନ୍ଦକିଶୋର ଦାସ, କରୁଣାକର ପ୍ରାଣିଗ୍ରାହୀ, ଲିଙ୍ଗରାଜ ମିଶ୍ର, ଜୀବରାମ କଲ୍ୟାଣୀ, କିଶୋରୀ ମୋହନ ଢୁଆରଦାର, ଭାଗବତ ସାହୁ, କମଳାକାନ୍ତ ମହାପାତ୍ର, ଏହିମାନଙ୍କ ନାମ ମନେଅଛି । ମହତାବଙ୍କୀ ମାତ୍ର କେତେମାସ ରହିବା ପରେ ତତ୍‌କାଳୀନ ପ୍ରାଦେଶିକ ସରକାରରେ (ଏକ୍‌ଜିକିଉଟିଭ କାଉନ୍‌ସିଲର) ସର୍ବେସର୍ବା ବୋଲାଉଥିବା କନିକା ରାଜାସାହେବଙ୍କ କୋପଦୃଷ୍ଟିରେ ପଡ଼ି ବି କ୍ଲାସରୁ ସି କ୍ଲାସକୁ ''ଉନ୍ନିତ'' ହୋଇ ଭାଗଲପୁର ଜେଲକୁ ପ୍ରେରିତ ହେଲେ । ଆମ୍ଭେମାନେ ଯିବାପୂର୍ବରୁ ସେହି ଓ୍ୱାର୍ଡରେ ଜଣେ ସାଧାରଣ (ବି) କ୍ଲାସ ଓଡ଼ିଆ କଇଦୀ ଥିଲେ । ତାଙ୍କ ଘର ଖୋର୍ଦ୍ଧା ଟାଉନ୍ ଓ ତାଙ୍କ ନାମ ଶ୍ରୀ ଉଦୟ ନାଥ ମହାନ୍ତି । ହାଇକୋର୍ଟର ସିରସ୍ତାଦାର ଥାଇ ତହବିଲ ତୋସରଫ ଦଫାରେ ଧରାହେବା ପୂର୍ବରୁ ସେ ରେଙ୍ଗୁନ ପଳାଇଥିଲେ । ସେଠାରେ ନିଜ ପ୍ରତିଭା ବଳରେ ନାମ ବଦଳାଇ ଓକିଲାତି ପଢ଼ି କୃତିତ୍ୱର ସହିତ ରୋଜଗାର କରୁଥିବାବେଳେ ଗ୍ରାମିକ ଶତ୍ରୁମାନଙ୍କ ସମ୍ବାଦରେ ସେଠାରେ ଧରାପଡ଼ିଲେ ଏବଂ ମକଦମାରେ ଦଣ୍ଡିତ ହୋଇ ବି କ୍ଲାସ କଇଦୀଭାବେ ହଜାରିବାଗ ଜେଲରେ ଥିବାବେଳେ ଆମ୍ଭମାନଙ୍କର ସମାଗମ ଘଟିଲା । ମୋ ସେଲ୍ ତାଙ୍କ ସେଲ ଲଗାଲଗି ଥିବାରୁ ଆମ ଦୁହିଙ୍କ ମଧ୍ୟରେ ପ୍ରଗାଢ଼ ଘନିଷ୍ଠତା ଉପୁଜିଲା । ସେ ଜଣେ ଉଚ୍ଚକୋଟୀର ବୁଦ୍ଧିଜୀବୀ ଥିବାରୁ ଓ ଲେଖାପଢ଼ା, ହିସାବକିତାବରେ ଧୁରନ୍ଧର ଥିବାରୁ ଅଳ୍ପକାଳ ମଧ୍ୟରେ ସେ ଜେଲଖାନା ଶାସନ କଳରେ ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଷ୍ଠା ଅର୍ଜନ କରିପାରିଥିଲେ । କେନ୍ଦ୍ର ଜେଲଖାନାଟିର ବିରାଟ ବ୍ୟାପାର ସହିତ ଦୁଇହଜାର ରାଜନୈତିକ, ବିଶେଷତଃ 'ଏ' ଓ 'ବି' କ୍ଲାସ ବନ୍ଦୀଙ୍କ ଦୈନନ୍ଦିନ ସମସ୍ୟା ସହିତ ସମ୍ମୁଖୀନ ହେବା କି ଅଲୌକିକ ବ୍ୟାପାର, ତାହା ପ୍ରତ୍ୟକ୍ଷଦର୍ଶନ ବ୍ୟତୀତ କଳନା କରିବା ସମ୍ଭବନୁହେଁ । କିନ୍ତୁ ଓଡ଼ିଆ କଇଦୀ ଉଦୟନାଥ ମହାନ୍ତିଙ୍କ ନିଷ୍ଠାରେ ସବୁ ସୁରୁଖୁରୁରେ ଚାଲିଥାଏ । ରାଜନୈତିକ ବନ୍ଦୀମାନଙ୍କ ମଧ୍ୟରେ ସ୍ୱର୍ଗୀୟ ଶ୍ରୀକୃଷ୍ଣ ସିଂହ

ପରେ ବିହାର ମୁଖ୍ୟମନ୍ତ୍ରୀ ହେଲେ । ଶ୍ରୀ ଦୀପନାରାୟଣ ସିଂହଙ୍କଭଳି ବଡ଼ଲୋକ ମଧ ଥିଲେ । ଚାରି ପାଞ୍ଚଶ 'ଏ' କ୍ଲାସ ବନ୍ଦୀଙ୍କର ନିଜ ଟଙ୍କାରେ ବାହାରୁ ଖାଇବା ବରାଦ ହୋଇ ଆସେ ।

ଏହିପରି ନାନାପ୍ରକାର ବରାଦ ପରେ ଦୈନିକ ବଜାର ସଉଦା କରାଇବାକୁ ଅନ୍ତତଃପକ୍ଷେ ଦୁଇହଜାର ଅଢ଼େଇହଜାର ଟଙ୍କା ବ୍ୟୟ ହେଉଥିଲା ଏବଂ ତାହାସବୁ ବ୍ୟବସ୍ଥା କରିବା ସମ୍ପୂର୍ଣ୍ଣ ଦାୟିତ୍ୱ ଥିଲା ଶ୍ରୀ ଉଦୟନାଥଙ୍କ ଉପରେ । ତାଙ୍କ ଇଚ୍ଛାନୁସାରେ ସେ ଯେଉଁ ଓ୍ୱାର୍ଡରଙ୍କୁ ବରାଦ କରୁଥିଲେ, ସେ ବଜାର ସଉଦା କରିବା ସୁବିଧା ପାଉଥିଲେ । ଦରଦାମ୍ ବିଷୟରେ ପ୍ରଶ୍ନ ଉଠିବାକୁ ଅବସର ନଥିବାରୁ ସ୍ୱଳ୍ପ ବେତନଭୋଗୀ ଲୋଭୀ ଓ୍ୱାର୍ଡ଼ରମାନେ ଇଚ୍ଛାନୁସାରେ ପ୍ରତ୍ୟହ ଲାଭ ଉଠାଉଥିଲେ, ବୋଲିବା ବାହୁଲ୍ୟ । ଫଳରେ ସବୁ ଓ୍ୱାର୍ଡରଗୁଡ଼ିକ ଆମ ଉଦୟବାବୁଙ୍କ ଦୟାର ପାତ୍ର ଭାବେ ଆଜ୍ଞାଧୀନ ବଚସ୍କର ପରି କାମକରୁଥିଲେ ।

ଏପରିକି ଉଦୟବାବୁଙ୍କ ମନ ଧରିବାପାଇଁ ଆଙ୍ଗୁଳି ଦେଖାଇଲେ ସେମାନେ ବାହା ଗିଳିଦେବାକୁ ନିଜ ନିଜ ମଧ୍ୟରେ ପ୍ରତିଯୋଗିତା କରୁଥିଲେ । ଏପରିସ୍ଥଳେ ପାଠକମାନେ ବିଚାର କରିବେ ଉଦୟବାବୁଙ୍କ ଘନିଷ୍ଠ ସୁହୃଦ୍ ତଥା ସହବନ୍ଦୀଭାବେ ମୋ ସୁବ୍ୟବସ୍ଥା । ଜେଲ ରନ୍ଧନ ଓ ପରିବେଷଣ ସହିତ ଆମ ଦୁହିଁଙ୍କର କୌଣସି ସମ୍ପର୍କ ରହିଲାନାହିଁ । କେବଳ ଆମ ଦୁହିଁଙ୍କ କାମପାଇଁ ଜଣେ ବିଶ୍ୱସ୍ତ ଦାମିଲ ନିଯୁକ୍ତ ହେଲା । ସେ ଆମ ଲୁଗା ସଫାକରିବ, ରନ୍ଧାବଢ଼ା କରିଦବ (ଥୁଆ କୋଇଲାଚୁଲି ସାହାଯ୍ୟରେ), ବାସନକୁସନ ସଫା କରିବ । ମୋଟଉପରେ ଇଚ୍ଛାମୁତାବକ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଇତ୍ୟାଦି ଚତୁଷ୍ଟୟ ପ୍ରକରଣ ଖାଦ୍ୟ ଆମ ଦୁହିଙ୍କ ମୁହଁପାଖରେ ବନ୍ଧାହୋଇ ରହିଥାଏ । ଏତାଦୃଶ ଖାଦ୍ୟ ପର୍ଯ୍ୟାପ୍ତି ଭିତରେ ବିଡ଼ି ଇତ୍ୟାଦି ଅମଳ ବା କୁଅଭ୍ୟାସ ଅତି ମାରାତ୍ମକଭାବେ ବଢ଼ିଉଠିଥିଲା ଓ ଅନ୍ୟାନ୍ୟ ବନ୍ଦୀମାନେ ଆମ ଦୁହିଙ୍କ ସ୍ୱତନ୍ତ୍ର ବ୍ୟବସ୍ଥାମାନଙ୍କୁ ଈର୍ଷାଦୃଷ୍ଟିରେ ଯେ ଦେଖୁଥିଲେ, ଏହା ଲେଖିବା ନିଷ୍ପ୍ରୟୋଜନ । ବିଶଷତଃ ପଶାଖେଳର ଗୋଟିଏ ଆୟୋଜନ ହେବାକୁ ମଧ ବେଶୀ ବିଳମ୍ବ ହେଲାନାହିଁ । ସମଗ୍ର ଦ୍ୱିପ୍ରହର ସମୟଟି ଆମେ ଦୁହେଁ ଓ ଯଦୁମଣିବାବୁ, ଭାଗବତବାବୁ ଓ ଜୁଆରଦାରବାବୁ ତିନିଙ୍କ ମଧ୍ୟରୁ ଯେକୌଣସି ଦୁଇଜଣ ବସି ଉତ୍ସାହ ଉତ୍ତେଜନା ଭିତରେ କାଟୁଁ । ଏଡ଼େ ନିର୍ଲଜ୍ଜଭାବେ ଏତେ ସମୟ ଉଡ଼ାଇଦେଉଛୁଁ, ଯାହା ଭାବିଲା ବେଳକୁ ଆଜି ମଧ ଲଜ୍ୟା ବୋଧହୁଏ । ସେହି ସମୟକୁ ସଦ୍‌ବ୍ୟବହାରରେ ଲଗାଇ ଥିଲେ କେତେଖଣ୍ଡ ଉପାଦେୟ ପୁସ୍ତକ ଲେଖିପାରିଥାନ୍ତୁ କିମ୍ବା ଶାସ୍ତ୍ରାଦି ଆଲୋଚନା କରି ଅଗାଧ ଜ୍ଞାନ ଆହରଣ କରିପାରିଥାନ୍ତୁ ।

—

# କାରା କାହାଣୀ

ମୋଟାମୋଟି କାରାବାସର ଦିନଗୁଡ଼ିକ ବେଶ୍ ସ୍ୱଚ୍ଛନ୍ଦରେ କଟିଯାଉଥାଏ । ତହିଁରେ ପୁଣି ମୋର ସଶ୍ରମ କାରାଦଣ୍ଡ ଆଦେଶ ଥିବାରୁ ମୁଁ କିଛି କାମ ନକରିବାଟା ମୋ ପକ୍ଷରେ ଏକ ନୈତିକ ଦୁର୍ବଳତା ମନେହେଉଥିଲା । କିନ୍ତୁ ପ୍ରାୟ ସମସ୍ତଙ୍କର ସଶ୍ରମ କାରାଦଣ୍ଡ ଥିବାରୁ ଏବଂ ସମସ୍ତେ ମୋପରି ଭାବୁଥିବାରୁ କମାଣି (କର୍ମଶାଳା) ବହୁତ ଭିଡ଼ହୋଇଉଠିଲା । ତଥାପି ଟିକିଏ ଯୋଗାଡ଼କରି ଲୁଗାବୁଣାଟା ଶିଖିନେବି ବୋଲି ପସନ୍ଦ କଲି ସିନା କିନ୍ତୁ ମୋ ଭାଗ ପଡ଼ିଲା ମାତ୍ର ଦଶମିନିଟ । ପ୍ରତ୍ୟହ ଦଶମିନିଟ୍ ଶିଖିବାଦ୍ୱାରା ଅଭ୍ୟାସଟା କିପରି ବଢ଼ିବ ବେଶ୍ ଅନୁମେୟ । ତେଣୁ ସାର୍ଦ୍ଧ ଦୁଇମାସ ପରେ ମୁଁ ଅତି ନଗଣ୍ୟଭାବେ ଉନ୍ନତି କରିଥିବା ବୁଝିପାରିଲି ଏବଂ କୌଣସି ଦିଗରୁ ହେଲେ ମନମଧ୍ୟରେ ତୁଷ୍ଟିଲାଭ କଲିନାହିଁ । ଫାଙ୍କିଦେଇ କାମ ନକଲେ ଯେ ସେଥିପାଇଁ ତିଳେହେଲେ ବାହାରୁ ବାଧବାଧକତା ଥିଲା, ତାହାନୁହେଁ । କିନ୍ତୁ ଫାଙ୍କିବି କାହାକୁ ? ବାହାରର ବେଷ୍ଟନୀ ସିନା ଆମମାନଙ୍କ ପକ୍ଷରେ ଅତି ତୁଚ୍ଛ, ଅତି ନଗଣ୍ୟ– କିନ୍ତୁ ମନକୁ ଫାଙ୍କିଦବା ଯେ କଷ୍ଟକର ଏହାମଧ୍ୟ ବୁଝିହେଉଥିଲା । ମନକୁ ମଧ୍ୟ ଅବସ୍ଥା ବିଶେଷରେ ଫାଙ୍କିଦିଆଯାଇପାରେ; କିନ୍ତୁ ବୁଦ୍ଧିକୁ ଫାଙ୍କିବା ଯେ ତତୋଧିକ କଷ୍ଟକର । ତଥାପି ବୁଦ୍ଧିକୁ ନାନା ଯୁକ୍ତି ସାହାଯ୍ୟରେ ବିକଳାଙ୍ଗ କରିଦିଆଯାଇପାରେ, କିନ୍ତୁ ବିବେକ ପାଖରେ ପହଞ୍ଚିବା ବେଳକୁ ସବୁ ଯୁକ୍ତି ଅସାର ହୋଇପଡ଼େ । କାରଣ ଏହି ବିବେକର କାଉଁରୀକାଠି ସାହାଯ୍ୟରେ ମୁଁ ଭଲପାଇଶିଖିଛି ଏହି ଜଗତକୁ, ମୁଁ ପ୍ରଣାମ କରି ଶିଖିଛି ମହତ୍ତ୍ୱକୁ, ମୁଁ କାମନା କରିଶିଖିଛି ମୁକ୍ତିକୁ ଏବଂ ବିଶ୍ୱାସ କରିଶିଖିଛି ମହାମାନବିକତା ମଧ୍ୟରେ ଧ୍ରୁବସତ୍ୟକୁ । ସେହି ସତ୍ୟ ଉଦ୍ଦେଶ୍ୟରେ ମୋର ଏକମାତ୍ର ଅର୍ଘ୍ୟ ହେବ ମୋର ଐକାନ୍ତିକ କର୍ମ, ଏକମାତ୍ର ନୈବେଦ୍ୟ ହେବ ମୋର ଐକାନ୍ତିକ ତ୍ୟାଗ । ମାନବିକ ମହାନୁଭବତାର ବ୍ୟାପ୍ତି ହୃଦୟାକାଶରେ ସଂଘଟିତ କରିନପାରିଲେ ସବୁ ସାଧନା ଯେ ବ୍ୟର୍ଥ ହୋଇଯିବ, ଏହା ମୁଁ ଅନ୍ତରେ ଅନ୍ତରେ ଉପଲବ୍ଧି କରିପାରୁଥିଲି ଏବଂ ଲାଭକରୁଥିଲି ଯେଉଁ ପ୍ରସାଦ, ତାହା ନିରୂପଣ କରିବାକୁ ତୁଳନାବ୍ୟଞ୍ଜକ ମନ୍ତବ୍ୟ ଦେବାପାଇଁ ବା ଇତିହାସଗତ ଗୁରୁତର ମୂଲ୍ୟ ଦେବାପାଇଁ ମୋର ଭାଷାନାହିଁ । କାରଣ ମୁଁ ଆସିଛି ଏହି ଧରଣୀର ମହାତୀର୍ଥକୁ, ଯେଉଁଠି ସର୍ବଦେଶ, ସର୍ବଜାତି ଓ ସର୍ବକାଳର ସଂମିଶ୍ରଣ, ସମନ୍ୱୟ ଘଟିଛି ନରଦେବତାଙ୍କ ମହାକେନ୍ଦ୍ରରେ । ସେହି ନିଭୃତ ବେଦୀମୂଳରେ ବସି ମୋ ଅହଙ୍କାର, ମୋ ସ୍ୱାର୍ଥଚିନ୍ତା କ୍ଷାଳନ କରିବାର ଦୁଃସାଧ୍ୟ ଚେଷ୍ଟାରେ ପ୍ରବୃତ୍ତ

ରହିବା ହେଲା ମୋର କର୍ତ୍ତବ୍ୟ । ଏହି ବିପୁଳ ହାର୍ଦ୍ଦିକ ପ୍ରଶସ୍ତି, ଯାହାପାଇଁ ଜଡ଼ ଭାରତଭୂଇଁ ମହାଭାରତବର୍ଷ ହୋଇପାରିଛି, ତାହାକୁ ଲାଭ କରିବାକୁ ଆମପକ୍ଷରେ କୌଣସି ବାଧା ଅନତିକ୍ରାନ୍ତ ନୁହେଁ କିମ୍ବା କୌଣସି ଭାବନା ଅକଳ୍ପନୀୟ ନୁହେଁ । ବିଶେଷତଃ ଯୁଗ ଯୁଗ । ଶତାବ୍ଦୀ ଶତାବ୍ଦୀ ତ ଛାରକଥା; ପ୍ରାଗୈତିହାସିକ କାଳରୁ ଭାରତଭୂମିରେ ବେଦମନ୍ତ୍ରର ଉଦ୍ଦାମଛନ୍ଦ ମାଧ୍ୟମରୁ ଆରମ୍ଭକରି ବୌଦ୍ଧ କୃଚ୍ଛ୍ର ସାଧନା ବ୍ୟାପ୍ତ ହୋଇ ଯେଉଁ ଧ୍ୱନି ଆମପାଖରେ ପହଞ୍ଚିଛି ତାକୁ ଆଉ ଗ୍ରାମ୍ୟ କେନ୍ଦରାରେ ନ ବଜାଇ ବୀଣାଯନ୍ତ୍ରରେ ଧ୍ରୁପଦ ରାଗ ଓ କଳାବତୀ ରାଗିଣୀର ଆଳାପକରି ଶୁଣାଇବାକୁ ହେବ ବିଶ୍ୱାସଭରେ । ଆଜି ଅନ୍ଧକାର ରଜନୀର ଅବସାନ ଘଟିଛି ! ଦସ୍ୟୁ, ତସ୍କର, ଲୁଣ୍ଠନକାରୀ ରାଜ୍ୟ ଓ ଉପନିବେଶ ଲିପ୍ସୁମାନଙ୍କର କାଳ ଶେଷହୋଇଯାଉଛି । ଭାରତ ଆକାଶରେ ଅକସ୍ମାତ୍ ଯେଉଁ ଜ୍ୟୋତିଷ୍କର ଆବିର୍ଭାବ ଘଟିଛି ତାହା ଭାରତର ପ୍ରାଣକୁ ପରିପୂର୍ଣ୍ଣ ଓ ଆପ୍ଲୁତ କରି ଅପରିସର ଐତିହ୍ୟ ଓ ଅସାମାନ୍ୟ ପ୍ରତିଭାର ମାୟା ସ୍ପର୍ଶରେ ସଂପ୍ରସାରିତ କରିପାରିଛି ସ୍ୱୀୟ ଜ୍ୟୋତିକୁ ଦିକ୍‌ଦିଗନ୍ତ ବ୍ୟାପୀ । ତେଣୁ ଏ ସାଧନାପଥ କୋମଳହୃଦୟବୃତ୍ତ ମଧ୍ୟରୁ ଉଦ୍ଭବ ହେଲେ ମଧ୍ୟ ଦୃଢ଼ତା ଓ ନିଷ୍ଠା ଥିଲା ଏହାର ବାହ୍ୟ ଆଭରଣ– ଯେକୌଣସିପ୍ରକାର ସୌକୁମାର୍ଯ୍ୟର ବହୁ ଦୂରରେ । ଏହାପାଇଁ ଆବଶ୍ୟକ ଥିଲା ମାଳା, କିନ୍ତୁ ତାହା ପୁଷ୍ପପେଲବ ନହୋଇ ବଜ୍ରହୀରକ ହେବାର ଆବଶ୍ୟକତା ଥିଲା– ଆବଶ୍ୟକ ଥିଲା ସଙ୍ଗୀତ; କିନ୍ତୁ ତାହା କୋମଳମୂର୍ଚ୍ଛନା ନହୋଇ ଦୀପକ ତାନରେ ଧ୍ୱନିତ ଓ ଝଂକୃତ ହୋଇପାରିବା ଭଳି ଦୀପ୍ତି ଦାବି କରୁଥିଲା । ଗୋଟିଏ କଥାରେ କହିଲେ ସେ ସାଧନାର ଏକମାତ୍ର ଉପାଦାନ ଥିଲା ଆଜୀବନ କ୍ଳାନ୍ତିହୀନ ଅନ୍ୱେଷା ।

ଏହିଭଳି ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ବିଚରଣ କରୁଥିବାବେଳେ, ଯଦିଓ ଖାଦ୍ୟପେୟ, ଖେଳକସରତ ସମସ୍ତପ୍ରକାର ବାହ୍ୟାଡ଼ମ୍ବର ଠିକ୍ ଠିକ୍ ଚାଲୁଥିଲା, କିନ୍ତୁ ଏକ ଅନାଶ୍ୱସ୍ତିର ଦୁର୍ଦ୍ଦମନୀୟ ତାଡ଼ନା ମଧ୍ୟରେ ଆତ୍ମଗ୍ଳାନି ଅନୁଭବ କରୁଥିଲି । ଆତ୍ମିକ ତାତ୍ପର୍ଯ୍ୟ ଚର୍ଚ୍ଚା କରିବାକୁ ଯେଉଁ ଅନୁରାଗ ଲୋଡ଼ା, ତାହା ଆଧୁନିକ ଶିକ୍ଷା-ସଭ୍ୟତାରେ ଦୁର୍ଲଭ ହେଲେ ମଧ୍ୟ ସେହି ଆତ୍ମିକ ଅଭିଯାନ ଚିରଯୁଗ ଧରି ନିଶ୍ଚିତଭାବେ ପାଇବ ତା ଆତ୍ମପ୍ରକାଶର ନବ ନବ ପଥ । ଆତ୍ମିକ ସାର୍ଥକତାର ଏହି ଅନ୍ୱେଷଣ ହେଉଛି ଭାରତବର୍ଷର ଅନବଦ ଭୂମିକା ଏବଂ ଗାନ୍ଧିଜୀଙ୍କ ନେତୃତ୍ୱରେ ସେ ନିଜକୁ ବିକଶିତ କରୁଛି ଏକ ନୂତନ ସଭ୍ୟତା ଓ ସଂସ୍କୃତିର ପରିବେଶ ମଧ୍ୟରେ– ଯେଉଁଠି ଅତୀତର ଦୁର୍ବହ ସ୍ମୃତି ମାତ୍ରେ ଲୁପ୍ତହୋଇ ମୁକ୍ତହେବ ଧରଣୀର ଏକ ନବଜନ୍ମ । ମାନବିକତାର ଏହି ନବଯାତ୍ରା ପଥରେ ଆଦର୍ଶଗତ ଚରମ ପରିଣତି ହେବ ଭାରତ ବିଚାରଧାରାର ସିଦ୍ଧାନ୍ତ । ଏହି ଆଶା ଯଦି କେବେ ପୂର୍ଣ୍ଣହୁଏ– ସେଦିନ ପ୍ରାୟ ସମାଗତ– ତେତେବେଳେ ସାରା ଜଗତର ଲୋକେ ତୀର୍ଥଯାତ୍ରା କରିବେ ପୁରାଣବନ୍ଦିତ

ଭାରତବର୍ଷକୁ, ଯେଉଁ ଭୂମିରେ ବିଧିନିର୍ଦ୍ଦେଶ ଭଳି ଗଢ଼ିଉଠିଛି ମାନବିକତାର ଉନ୍ମେଷଠାରୁ ଉଦ୍‌ଯାପନ ପର୍ଯ୍ୟନ୍ତ ସମସ୍ତ ସ୍ତରର ଅସାଧ ସାଧନା ।

ଏ ତ ଗଲା ଭାରତଭୂମି ସୁଲଭ ତନ୍ଦ୍ରାତୁର ଜ୍ଞାନ ଭକ୍ତିର ଗାଥା । କିନ୍ତୁ ଅସଲ କର୍ମ ସହିତ ଏହାର ବ୍ୟାବହାରିକ ସମ୍ପର୍କ କେଉଁଠି ? ଅଳସୁଆ ମସ୍ତିଷ୍କ ଶୟତାନର କାରଖାନା ପରି ଜ୍ଞାନ ଭକ୍ତିର ସହଜ ଲୀଳାଭୂମିଠାରୁ ଯୁଗୋଚିତ କର୍ମର ରଣଭୂମି ଯେ କେଡ଼େ ଭିନ୍ନ, ତାହା ଏକାସଙ୍ଗେ ବିଚାର ନକଲେ ଯେ ସବୁ ଅପୂର୍ଣ୍ଣ ରହିଯିବ । ତେଣୁ ଜ୍ଞାନ, ଭକ୍ତି ଆଦି ଦେବଦୁର୍ଲଭ ସିଦ୍ଧି ଯେଉଁ କର୍ମମୟ ସାଧନା ଉପରେ ନିର୍ଭର କରୁଛି, ତାହା ଯେ ଅବିଶ୍ଳେଷିତ ଓ ଅମୀମାଂସିତ ରହିଯାଉଛି ।

ସେ ଯାହାହେଉ, ଶେଷପର୍ଯ୍ୟନ୍ତ ସଶ୍ରମକାରାବାସ ମଧ୍ୟରେ ଶ୍ରମର ସୁବିଧା କୌଣସିମତେ କରିପାରିଲିନାହିଁ ଏବଂ କମାଣିକୁ (କାର୍ଯ୍ୟାଳୟ) ଯିବା କ୍ରମଶଃ ବନ୍ଦ କରିଦେଇ, କଣ କରିବି ଭାବୁ ଭାବୁ ଅଯାଚିତଭାବେ ଯେଉଁ କାମ ମିଳିଲା, ତହିଁରେ ମୁଁ ଦୁଶ୍ଚିନ୍ତାରୁ ମୁକ୍ତ ହୋଇ ଯଥେଷ୍ଟ ଶାନ୍ତିଲାଭକଲି ।

ଆମ ଓଡ଼ିଶାର 'ଖ' ଶ୍ରେଣୀ ରାଜନୈତିକ ବନ୍ଦୀମାନେ ହଜାରୀବାଗ କେନ୍ଦ୍ର ଜେଲ୍‌କୁ ଯିବା ଆଗରୁ ଆମପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ୱାର୍ଡଟିରେ ଅନ୍ୟାନ୍ୟ ଯେଉଁ 'ଖ' ଶ୍ରେଣୀର ଅପରାଧୀ ଥିଲେ ସେମାନଙ୍କ ମଧ୍ୟରେ ଯୁବକ ନୁହନ୍ତି କି ପ୍ରୌଢ଼ ନୁହନ୍ତି ଏହିପରି ଜଣେ ବଙ୍ଗାଳୀ ଥିଲେ । ତାଙ୍କ ନାଁ ଅବଶ୍ୟ ଭୁଲିଯାଇଛି, କିନ୍ତୁ ତାଙ୍କ ଇତିହାସ ଭୁଲିପାରିନାହିଁ । ସେ ଜଣେ ଟେଲିଗ୍ରାମ୍ ମାଷ୍ଟର ଥିଲେ, କିନ୍ତୁ ତାଙ୍କର ଅର୍ଥପିପାସା ବଳବତୀ ଥିଲା । ଟେଲିଗ୍ରାମ୍ କୌଶଳ ସବୁ ଆୟତ୍ତ କଲା ପରେ ତାହା ପ୍ରୟୋଗକରି ବିପୁଳ ଅର୍ଥାଗମର ଗୋଟିଏ ପଥ ଉଦ୍ଭାବନକଲେ । ଦିଲ୍ଲୀ ଓ କଲିକତା ମଧ୍ୟରେ ଥିବା ତାର ଲାଇନ ତଳେ ପାଟନାଠାରୁ ଅଦୂରବର୍ତ୍ତୀ କୌଣସି ସ୍ଥାନରେ ଗୋଟିଏ ସ୍ଥାନ ବାଛିଲେ ଯେଉଁଠି ନିକଟରେ ଚିନିକଳ ଅଛି ଓ ବହୁପରିମାଣରେ ଆଖୁଚାଷ ହୁଏ । ସେଠାରେ ଆତ୍ମଗୋପନ କରିବାକୁ ଗୋଟିଏ ଆଖୁଚାଷ କରି ସେହି ଆଖୁକ୍ଷେତ ଉଢ଼ାଳରେ ରହି ଟେଲିଗ୍ରାମ୍ ଗ୍ରହଣକରିବା ଓ ପ୍ରେରଣକରିବାର ଯନ୍ତ୍ରପାତି ସେଠାରେ ବସାଇଲେ । ଦିନ ମଧ୍ୟରୁ ନିର୍ଦ୍ଦିଷ୍ଟ କେତେ ସମୟ ମୂଳଲାଇନ୍‌କୁ କାଟିଦେଇ ଖବରଗୁଡ଼ିକ ନିଜ ଯନ୍ତ୍ର ସାହାଯ୍ୟରେ ଗ୍ରହଣ କରି ନିଜ ଯନ୍ତ୍ର ସାହାଯ୍ୟରେ ପଠାଇବାକୁ ଲାଗିଲେ । ଯେଉଁ ସମୟରେ ରହିପାରୁନଥିଲେ, ମୂଳଲାଇନ ଯୋଡ଼ିଦେଉଥିଲେ । ଏହିପରି କେତେ ସମୟ ଅଭ୍ୟସ୍ତ ହେବା ପରେ ସେ ଲାଇନରେ ପ୍ରଚଳିତ ହେଉଥିବା ବିଷୟବସ୍ତୁ ସହିତ ସମ୍ୟକ୍ ପରିଚିତ ହୋଇ କୌଣସି ଚିନିକଳ ଫାର୍ମର ଏଜେଣ୍ଟଙ୍କ ପ୍ରାପ୍ୟ କୋଡ଼ିଏହଜାର ଟଙ୍କାର ସମ୍ବାଦକୁ ଗ୍ରହଣକରି ଏହାଙ୍କ ନିଯୁକ୍ତ କୌଣସି ବେନାମି ଫାର୍ମକୁ ଦେଇଦବାକୁ ଟେଲିଗ୍ରାମ୍ କରିଦେଲେ । ଟଙ୍କାଟି

କାରବାର ହେବା ସଙ୍ଗେ ସଙ୍ଗେ କୋଲକତା ବେନାମି ଫାର୍ମଟି ଅନ୍ତର୍ଦ୍ଧାନ ହୋଇଗଲା ଓ କାଳେ ଧରାପଡ଼ିବା ଆଶଙ୍କାରେ ଆଖୁକ୍ଷେତ୍ରରୁ ମଧ ଟେଲିଗ୍ରାମ୍ ମାଷ୍ଟର ଚମ୍ପଟ କଲେ । ବହୁ ତନାଘନା ଅନୁସନ୍ଧାନଦ୍ୱାରା କୌଣସି ସୁଫଳ ଫଳିଲାନାହିଁ ।

ବୁଦ୍ଧିଜୀବୀ ମାଷ୍ଟର ମହାଶୟଙ୍କ ମୁଣ୍ଡରେ ଆଉଗୋଟିଏ ଫନ୍ଦି ଚାଲିଆସିଲା ଜାଲ୍ ନୋଟ ଛାପିବାପାଇଁ । ଏଣେ ଟଙ୍କା ହସ୍ତଗତ ହୋଇଥାଏ । କୋଲକତା ଗଙ୍ଗା ଉପରେ ଗୋଟିଏ ଦୋତାଲାକୋଠା ଏଥିପାଇଁ ବ୍ୟବହୃତ ହେଲା । ଭଲ କାରିଗରଦ୍ୱାରା ଦଶଟଙ୍କିଆ ନୋଟ ଛପାକଳ ମଧ ତିଆରି ହୋଇଗଲା । ବହୁ ଅନୁଶୀଳନରେ ନୋଟ ଛପା ହେଲା ଏବଂ ପଚାଶହଜାର ଟଙ୍କାର ନୋଟ ବଜାରରେ ମଧ ଚାଲୁହୋଇଗଲା । ବଜାରର ଯେଉଁ ଅଞ୍ଚଳରେ ବ୍ୟାପକ ଜାଲ ନୋଟ ଚାଲୁହୋଇଗଲା ଗୋଇନ୍ଦା ବିଭାଗ ସେହି ଅଞ୍ଚଳରେ ଲକ୍ଷ୍ୟ ରଖିଥିବା କାହାକୁ ଜଣାନାହିଁ । ଦିନେ ଗୋଟିଏ ପେସଓ୍ୱାରୀ ଫଳଦୋକାନରେ ଜଣେ ଲୋକ କେତେଗୁଡ଼ିଏ ନୋଟ ଗୋଟି ଗୋଟି ଗଣି ଦେବାବେଳେ ସଦ୍ୟ ଛପାନୋଟ ପରସ୍ପରଠାରୁ ନଛାଡ଼ିବାରୁ ତାକୁ ଛଡ଼ାଇବା ଚେଷ୍ଟା କରୁଥିବାବେଳେ ଗୋଇନ୍ଦା କର୍ମଚାରୀଙ୍କ ଦୃଷ୍ଟିପଡ଼ିଲା ଏବଂ ସଙ୍ଗେ ସଙ୍ଗେ ସେ ଲୋକକୁ ନୋଟ ସହିତ ଗିରଫ କଲେ ।

ସେ ଲୋକଟି ଘରର ସନ୍ଧାନ ଦେବାରୁ ପୁଲିସ୍ ଘରକୁ ଘେରାଉକଲେ ଏବଂ ଛପାଯନ୍ତ୍ରଟି ପୁଲିସ ହସ୍ତଗତ କରିବା ପୂର୍ବରୁ ଆସାମୀମାନେ ଯନ୍ତ୍ରଟି ଗଙ୍ଗା ଗର୍ଭରେ ନିକ୍ଷେପ କରିଦେଲେ । କିନ୍ତୁ ଅନ୍ୟାନ୍ୟ ଆସବାବ, ରଙ୍ଗକାଳି ଓ କେତୋଟି ନୋଟ ଧରାପଡ଼ିଲା । ବିଶେଷଜ୍ଞ ସାକ୍ଷୀ ଦେଲେ ଜାଲ ନୋଟ ଏପରି କୃତିତ୍ୱ ସହିତ ଛପା ହୋଇଛି ଯେ, ନମ୍ବର ନମିଳିବା ଛଡ଼ା ବୁଝିବାର ଅନ୍ୟ କୌଣସି ଉପାୟ ନାହିଁ । ଯାହାହେଉ ଆସାମୀମାନଙ୍କ ମଧ୍ୟରୁ ପ୍ରଧାନ ଆସାମୀ ଏହି ବଙ୍ଗାଳୀ ଭଦ୍ରଲୋକ ପାଞ୍ଚବର୍ଷ ଦଣ୍ଡଭୋଗ କଲାବେଳେ ଆମ୍ଭମାନଙ୍କ ସମାଗମ ଘଟିଲା ।

ଏହି ବ୍ୟକ୍ତି ଜେଲଦଣ୍ଡ ଭୋଗୁଥିବା ବେଳେ ତାଙ୍କର ଭାଷାନୁରାଗ ଦେଖି ମୁଁ ଅବାକ୍ ହୋଇଗଲି । ବଙ୍ଗଳା ସାହିତ୍ୟ ଯେ ଏଡ଼େ ଉନ୍ନତ, ତାହାର କାରଣ ହେଉଛି ସାଧାରଣ ଲୋକଙ୍କର ସାହିତ୍ୟ-ପ୍ରୀତି । ଏହି ବ୍ୟକ୍ତିଙ୍କ ପାଖରେ ମୁଁ କାରବାର ହୋଇ ବୁଝିଲି ଯେ ଦୀର୍ଘ ପାଞ୍ଚବର୍ଷ କାରାଦଣ୍ଡରେ ନାବାବିଧ ବହିପଢ଼ି ଏପରି କଟାଇଦେବେ ଯେ ତାଙ୍କୁ ପାଞ୍ଚମାସ ପରି ମଧ ଲାଗିବନାହିଁ– ତାହା ମଧ ମୁଁ ଦେଖି ଅନୁଭବ କଲି । ସବୁବେଳେ ଖଣ୍ଡେ ବହି ସେ ନିଶ୍ଚୟ ଧରି ପଢୁଥିବେ । ମୁଁ ଇଚ୍ଛାକଲି ତାଙ୍କ ବହିଗୁଡ଼ିକ ଖଣ୍ଡକ ପରେ ଖଣ୍ଡେ ଆଣି ମୁଁ ପଢ଼ିବି । ମୋର ମଧ ବଙ୍ଗଳାବହି ପଢ଼ିବାର ଆକର୍ଷଣୀ କମ୍ ନଥିଲା । ଫଳତଃ ମୁଁ ଖଣ୍ଡେ 'ସାହିତ୍ୟସମ୍ରାଟ ବଙ୍କିମଚନ୍ଦ୍ର'ଙ୍କ ଅମର ଲେଖନୀ ନିଃସୃତ ବହି ମାଗିଆଣି ପଢ଼ିଲି । ଅବଶ୍ୟ ମୁଁ ଯେ ଆଗରୁ ଏବହି ପଢ଼ିନଥିଲି ତାହା

ନୁହେଁ, କିନ୍ତୁ 'ବନ୍ଦେମାତରଂ'ର ଭୂମିକା ଆନନ୍ଦମଠ ପଢ଼ିବାକୁ ଏଥର ଯେପରି ଲାଗିଲା, ପୂର୍ବେ ସେପରି ଲାଗିନଥିଲା । କାରଣ ସ୍ୱାଧୀନତା ଆନ୍ଦୋଳନର ଜଣେ ସୈନିକପାଇଁ ଏହା ଯଥେଷ୍ଟ କଳ୍ପନା ଯୋଗାଉଥିଲା । ତାହା ପଢ଼ିସାରିବା ପରେ ମୁଁ ସ୍ଥିର କଲି 'ଆନନ୍ଦମଠ'ର ଗୋଟିଏ ଓଡ଼ିଆ ଅନୁବାଦ ଆମ ଓଡ଼ିଆ ଭାଷାରେ ପ୍ରତିବିମ୍ବିତ କରିବାକୁ ଏବଂ ସେହି ଆଳସ୍ୟର ଆତୁରତା ମଧ୍ୟରେ ମୁଁ ଗୋଟାଏ ମନମୁତାବକ ଧନ୍ଦା ପାଇଗଲି । ଖୁବ୍ ଅଳ୍ପସମୟ ମଧ୍ୟରେ ତାହା ସାରିବା ସଙ୍ଗେ ସଙ୍ଗେ ଗୋଟି ଗୋଟି କରି 'କପାଳକୁଣ୍ଡଳା', 'ଦୁର୍ଗେଶନନ୍ଦିନୀ', 'ରାଜସିଂହ', 'ଦେବୀ ଚୌଧୁରାଣୀ', 'ସୀତାରାମ', 'ଚନ୍ଦ୍ରଶେଖର' ପ୍ରଭୃତି ଅନୁପମ ଲେଖାଗୁଡ଼ିକ ଅନୁବାଦ କରିବାରେ ମୋର ସମସ୍ତ ସମୟ ଅତିବାହିତ ହୋଇଗଲା । ମୋତେ ଦଶମାସ କାରାବାସ ସହିବାକୁ ପଡ଼ିଲା । କିନ୍ତୁ ଛ ସାତମାସ ମୋତେ ନିବିଡ଼ଭାବେ ଏହି କାର୍ଯ୍ୟରେ ବିଭୋର ହୋଇଯିବାକୁ ପଡ଼ିଥିଲା । ମୁଁ ପ୍ରକୃତରେ ଜାଣୁନଥିଲି ରାତି କେତେବେଳେ ଆସୁଛି ବା ଦିନ କେତେବେଳେ ଯାଉଛି ବୋଲି । ପରେ ନାନା ଘାତପ୍ରତିଘାତ ମଧ୍ୟରେ ସେଗୁଡ଼ିକ ମୁଦ୍ରଣ କରିବାର ଅବସର ପାଇନଥିଲି ସତ, କିନ୍ତୁ ଦୀର୍ଘ ତିରିଶ ବତିଶ ବର୍ଷ ପରେ ସେଗୁଡ଼ିକ ଯନ୍ତ୍ରସ୍ଥ କରାଇପାରିଛି ଓ 'ଆନନ୍ଦମଠ' ଓଡ଼ିଆ ଅନୁବାଦଟି ଆତ୍ମପ୍ରକାଶ ମଧ୍ୟ କରିସାରିଲାଣି ।

ଏହି ଅନୁବାଦମୂଳକ ସାହିତ୍ୟ ସାଧନା ଭିତରେ ମୋର ଯଥେଷ୍ଟ ତୃପ୍ତି ଥିଲା ସତ, ତଥାପି ଏହି ବିରାଟ ଅବକାଶ ଭିତରେ ମାତୃଭାଷାରେ କିଛି ମୌଳିକ ଲେଖା ଲେଖିବାକୁ ମୋ ମନ ବରାବର ଛଟପଟ ହେଉଥାଏ ଏବଂ କେବେ କେବେ ଗୋଟାଏ ଗୋଟାଏ କବିତା ଯେ ଲେଖୁନଥିଲି ତାହା ନୁହେଁ । ମୋ କର୍ମଭୂଇଁ କୁଜଙ୍ଗ ଥିବାରୁ ଏହି ଅଞ୍ଚଳରେ ଭୌଗୋଳିକ, ସାଂସ୍କୃତିକ ବିଶେଷତ୍ୱ ସମ୍ବଳିତ 'କୁଜଙ୍ଗ ଚିତ୍ର' ନାମରେ ଗୋଟିଏ ପଦ୍ୟ ରଚନା କରିଥିଲି ଯାହା ପରେ ମୁଦ୍ରିତ ହେଲା । ବୈରାଗ୍ୟ ଓ ଭକ୍ତିମୂଳକ ଛୋଟ ଛୋଟ କବିତା ଲେଖିବା ଲୋଭ ମଧ୍ୟ ସମ୍ବରଣ କରିପାରୁନଥିଲି । ପାଠକମାନଙ୍କ କୌତୂହଳପାଇଁ 'ମେଲାଣି' ବୋଲି କବିତାର କିୟଦଂଶ ଉଦ୍ଧାରକଲି ।

କରିଥିଲି ପାଞ୍ଚ ଯେତେ ମୁଁ କେତେ କହିବି ତାହା
ଅଗ୍ରିମ ଆକାଶ କୁସୁମ ତୋଳୁଥିଲି ମୁଁ ଆହା ।
ଲୁବ୍ଧ ବେନି ନୟନେ ମଣି ବିମଳ ଜଳ
ମୃଗତୃଷ୍ଣା ପଛେ ଗୋଡ଼ାଇ ମଲି ହୋଇ ବିକଳ ।
ମିଶିଗଲା ଆଶାଟିକ ମୋ ବିଦୁ ପ୍ରାୟ ଝଟକି
ଦୁଃଖ ଗୀତ ବୋଲୁ ବୋଲୁ ମୋ କଣ୍ଠ ଗଲା ଅଟକି ।
ହୃଦୟ ଫୁଲଟି ସରାଗେ ଫୁଟି ଉଠିବାବେଳେ
ମୂଳ କାହୁଁ ଆସି ଦୁରନ୍ତ କୀଟ କାଟିଲା ହେଳେ ।

ଉଲୁସାଇ ଲୟ ଉଠି ଗୋ ଆଣୁଥିଲା ଝଙ୍କାର
ଭାଙ୍ଗିଗଲା ପ୍ରାଣ ବୀଣାଟି ଛିଣ୍ଡିଗଲା ତା ତାର ।
ଆସିଥିଲା ଭକ୍ତ ପୂଜିବ ଯିବ ଜୀବନ ଦେଇ
ଶୂନ୍ୟ କରି ପୁଣ୍ୟ ମନ୍ଦିର ଦିଅଁ ଗଲେ ଉଭେଇ ।
ଚାହିଁବସିଥିଲା ଚାତକ ବାରି ପଡ଼ିବ ତୁଣ୍ଡେ
ଏକାଳେ ପଡ଼ିଲା ଅକାଳ ବଜ୍ର ସିନା ତା' ମୁଣ୍ଡେ ।
କିନ୍ତୁ ଧ୍ରୁବତାରା ଜଳନ୍ତି ହୃଦେ ଜ୍ୟୋତି ବିକାଶି
ଅନାଇ ମୁଁ ତାଙ୍କୁ ଏଘୋର ସିନ୍ଧୁ ଲଙ୍ଘିବି ଭାସି ।
ଲଭିବି ମୁଁ ଯେଉଁ କୂଳ ଗୋ ଏହି ସାଗର ପାରେ
ସେହି ମୋର ନିତ୍ୟ ଭୂଇଁ ଗୋ ଦିଅ ମେଲାଣି ବାରେ ।

୧।୧୧।୧୯୩୦
ହଜାରିବାଗ ଜେଲ

—

# ମାନସିକ ଦ୍ୱନ୍ଦ୍ୱ

ଜେଲରେ ମୋତେ ଦଶମାସ କାଟିବାକୁ ପଡ଼ିଥିଲା । ଗାନ୍ଧି ଆର୍‌ଉଇନ୍ ପ୍ୟାକ୍ଟ ଫଳରେ ସବୁ ବନ୍ଦୀ ମୁକ୍ତି ପାଇଲେ । ଏପରି ଏକ ଅପ୍ରତ୍ୟାଶିତ ପରିଣତିପାଇଁ ପ୍ରକୃତରେ କେହି ପ୍ରସ୍ତୁତ ନଥିଲେ । ରାଜନୈତିକ ବନ୍ଦୀମାନଙ୍କ ସମାଗମରେ ଇତର ବନ୍ଦୀମାନଙ୍କ ଉପରେ ସାଧାରଣ ଅତ୍ୟାଚାର କେତେକଟା କମିଥିଲା– ଅନେକଟା କମିଥିଲା କହିଲେ ଅଧିକ ଠିକ୍ ହେବ । ମାନବିକତା ସ୍ତରର ବହୁ ଦୂରରେ ଏବଂ ପଶୁତ୍ୱସ୍ତରର ବହୁ ନିକଟରେ ସେମାନଙ୍କୁ ରଖାହୋଇଥିଲା । ରାଜନୈତିକ ବନ୍ଦୀମାନେ ସାଧାରଣତଃ ବିପ୍ଳବୀ ଥିବାରୁ ସାଧାରଣ କଇଦିମାନେ କାଳେ କେତେବେଳେ ସଂକ୍ରମିତ ହେବେ, ସେଥିପାଇଁ ସେମାନଙ୍କ ପ୍ରତି ଦୁର୍ବ୍ୟବହାରର ଆଶାତୀତ ସଂଶୋଧନ କରାଯାଇଥିଲା । ରାଜନୈତିକ ବନ୍ଦୀମାନଙ୍କଠାରୁ ପୂର୍ବବର୍ଣ୍ଣିତ ମତେ ସେମାନେ ନାନାଭାବେ ସାହାଯ୍ୟ ସହାନୁଭୂତି କେତେକାଂଶରେ ଯେ ପାଉନଥିଲେ– ତାହା ନୁହେଁ । ତେଣୁ ରାଜନୈତିକ ବନ୍ଦୀମାନଙ୍କର ଅତର୍କିତ ମୁକ୍ତି ଘୋଷଣାରେ ସେମାନେ ନିରତିଶୟ ଦୁଃଖିତ ହୋଇଥିଲେ ଏବଂ ଯେତେବେଳେ କୋଳାହଳ ଉତ୍ତେଜନା ମଧ୍ୟରେ ବୀରବନ୍ଦୀମାନେ ଦଳ ଦଳ ହୋଇ ସେଲ୍ ପରିତ୍ୟାଗ କଲେ; ସେତେବେଳେ ସାଧାରଣ ବନ୍ଦୀମାନଙ୍କ କରୁଣ କ୍ରନ୍ଦନ ଯେକୌଣସି ପାଷାଣ ହୃଦୟକୁ ମଧ୍ୟ ତରଳାଇଦେବ । ଏପରିକି କତିପୟ ପ୍ରହରୀ ଅଶ୍ରୁ ସମ୍ବରଣ କରିପାରିନଥିବା ଦୃଶ୍ୟର ଲେଖକ ପ୍ରତ୍ୟକ୍ଷଦର୍ଶୀ ଅଟେ ।

ମୋ ପକ୍ଷରେ ତାହା ଏକ ମର୍ମନ୍ତୁଦ ଘଟଣା । କାରଣ ମୋ ପାଖରେ ଯେଉଁ ଦାମିଲ୍ ବା ଯାବତ୍‌ଜୀବନ କାରାଦଣ୍ଡରେ ଦଣ୍ଡିତ ଥିବା ଅଳ୍ପବୟସ୍କ ଯୁବକ ଆଦିବାସୀଟି ନିଯୁକ୍ତ ଥିଲା, ମୋ ପ୍ରତି ତାର ଗଭୀର ଅନୁରକ୍ତିର ପଟାନ୍ତର ନଥିଲା । ପ୍ରକୃତ ଅପରାଧୀ ଧରାନପଡିବାରୁ ପୁଲିସ୍ ଚକ୍ରାନ୍ତରେ ତାକୁ ଧରି ମୂକ ପ୍ରାୟ ଏହି ୧୬।୧୭ ବର୍ଷ ବୟସ୍କ ପିଲାଟିକୁ ଏକତରଫା ବିଚାରରେ ହତ୍ୟାକାରୀ ବୋଲି ପ୍ରମାଣିତ କରିବାକୁ ସକ୍ଷମ ହୋଇପାରିଥିଲା । ବୟସର ସ୍ୱଳ୍ପତା ଦୃଷ୍ଟେ ବିଚାରପତି ଫାଶୀଦଣ୍ଡରୁ ଅବ୍ୟାହତି ଦେଇ ତାକୁ ଯାବଜ୍ଜୀବନ କାରାଦଣ୍ଡରେ ଦଣ୍ଡିତ କରିଥିଲେ । ତା ଭାଷା ନିତାନ୍ତ ଅଳ୍ପ ଓ ଅସ୍ପଷ୍ଟ ଥିଲେ ମଧ୍ୟ ତାର ଇତିହାସ ବର୍ଣ୍ଣନା ବେଳେ ତାକୁ ପଦେହେଲେ ଅବିଶ୍ୱାସ କରିବା ମୋ ପକ୍ଷରେ ସମ୍ଭବ ହୋଇନଥିଲା । ତେଣୁ ମୋର ସମସ୍ତ ଦୟା, ସମସ୍ତ ସହାନୁଭୂତି, ସମସ୍ତ ଉଦାରତା ତା ଉପରେ ଅଜାଡ଼ିଦେବାକୁ ତିଳେ ହେଲେ କୁଣ୍ଠାବୋଧ

କରିନଥିଲି । ବନ୍ଦୀଶାଳାର ଅନ୍ୟ ପ୍ରକୋଷ୍ଠ ସେମାନଙ୍କ ରାତ୍ରି ଯାପନପାଇଁ ନିର୍ଦ୍ଦିଷ୍ଟ ଥିବାରୁ ପ୍ରତ୍ୟହ ପ୍ରତ୍ୟୁଷରେ ଦ୍ୱାରୋନ୍ମୁକ୍ତି ମାତ୍ରେ ସେ ନିମିଷମାତ୍ର ବିଳମ୍ବ ନସହି ମୋ ପାଖକୁ ଛୁଟିଆସୁଥିଲା ଏବଂ ଆଦିବାସୀସୁଲଭ ଉନ୍ନତସ୍ୱାସ୍ଥ୍ୟ ଓ ହର୍ଷୋତ୍‌ଫୁଲ୍ଲବଦନରେ ଯେତେବେଳେ ପ୍ରତ୍ୟହ ଅଭିବାଦନ ଜଣାଉଥିଲା, ସେତେବେଳେ ମୋପ୍ରତି ତାର ଆନ୍ତରିକତା କେଡ଼େ ଅସାଧାରଣ ତାହା ମୁଁ ମନେ ମନେ ଅନୁଭବ କରିପାରୁଥିଲି । ବୋଧହୁଏ ଏପରି ଆଉ କେବେ କାହାଠାରୁ ପାଇଛି ବୋଲି ମୋର ମନେନାହିଁ କିମ୍ବା ଜୀବନର ଏହି ନିଃଶେଷାୟୁ ପର୍ଯ୍ୟାୟରେ ପାଇବି ବୋଲି ଭରସା ମଧ୍ୟ ନାହିଁ । ସେହି ଅନୁରାଗଦୀପ୍ତ ଅବସ୍ଥିତିଟି ଯେତେବେଳେ ଏକ ଅତର୍କିତ ପରିସ୍ଥିତି ପ୍ରଭାବରେ ଚିର ବିରହ ଓ ଘୋର ବିଚ୍ଛେଦରେ ପରିଣତ ହେବାକୁ ଯାଉଛି, ତେତେବେଳେ କେଉଁ ବଜ୍ରପାତ ଏହାଠାରୁ ବଳି ପ୍ରଚଣ୍ଡତର ହୋଇପାରେ ? ସେ କ୍ରନ୍ଦନର ରୋଳ, ସେ ବୈକଲ୍ୟ, ସେ ଆର୍ତ୍ତଭରା ଅପୂର୍ବ ଚାହାଣୀ ଆଜି ବତିଶବର୍ଷ ପରେ ମଧ୍ୟ ସ୍ମୃତିକୁ ମୋର ଘାରିରଖିଚି । ଇତିମଧ୍ୟରେ କେତେ ଯୁଗାନ୍ତକାରୀ ଘଟଣା ଘଟିଗଲାଣି– ଜାତୀୟତା ସ୍ତରରେ, ପାର୍ଥିବ ସ୍ତରରେ, ବ୍ୟକ୍ତିଗତ ସ୍ତରରେ– କିନ୍ତୁ ସେ ଦିନଟିର ଘଟଣା ପରି କେହି ମୋ ଅନ୍ତରତମ ଅନ୍ତର ପ୍ରଦେଶରେ ରେଖାପାତ କରିପାରିନାହିଁ । ନଥିଲା ଆମ ଭିତରେ ସାମାଜିକ ବା ଭାଷାଗତ ସମ୍ପର୍କ, ଦେଶ ବା ଜାତିଗତ ସମ୍ପର୍କ । କିନ୍ତୁ ମାନବିକତା ପକ୍ଷରେ ଦୟା, ସ୍ନେହ, ଶ୍ରଦ୍ଧା, ବାତ୍ସଲ୍ୟ ଇତ୍ୟାଦି ଯେଉଁ ଦେବଦୁର୍ଲଭ ଗୁଣ ସୁଲଭ, ତାହା ଆମ ଦୁହିଙ୍କ ମଧ୍ୟରେ ଗଢ଼ିଉଠିଥିଲା ଏବଂ ଏପରି ନିବିଡ଼ଭାବେ ଯେ, ତାହା କଳନା କରିପାରି ନଥିଲୁ ସେପର୍ଯ୍ୟନ୍ତ ଯେପର୍ଯ୍ୟନ୍ତ ସେହି ବିଚ୍ଛେଦର ଅପ୍ରତିହତ ଆହ୍ୱାନ ଆମ ଦୁହିଁଙ୍କ ନିକଟରେ ପହଞ୍ଚିନଥିଲା । ବନ୍ଦୀଶାଳାର ଆକଟକୁ ଉପେକ୍ଷା କରି ମୋର ମନହେଉଥିଲା ସବୁଦିନପାଇଁ ବରଂ ଦାମିଲ୍ ସଙ୍ଗରେ ରହିଯିବା ମୋପକ୍ଷରେ ସହଜ ହେବ, କିନ୍ତୁ ତା'ଠାରୁ କଷ୍ଟକର ହେଲା ଛାଡ଼ି ଚାଲିଯିବା ।

ମାନବିକତାର ସମସ୍ତ କାରୁଣ୍ୟ ଏଡ଼ି ଦାରୁଣ ଧୃତି ପ୍ରଭାବରେ ବନ୍ଧନ ଛିଣ୍ଡାଇ ମୁଖ୍ୟଦ୍ୱାର ଦିଗରେ ଆଗେଇଲି । ଅସରନ୍ତା ଅଶ୍ରୁର ପ୍ଳାବନରେ ଆଖିକୁ କିଛି ଦେଖାଯାଉ ନଥିଲା । ତଳେ ଧରଣୀ ବା ଉର୍ଦ୍ଧ୍ୱରେ ଆକାଶ କିଛି ଅନୁଭୂତ ହେଉନଥିଲା, କେବଳ ଶୁଭୁଥିଲା ବନ୍ଦୀଟିର କରୁଣ କ୍ରନ୍ଦନ ଏବଂ ଦିଶିଯାଉଥିଲା ତାର କାକୁତିମୟ ନୈବେଦ୍ୟ । ହାୟ ! ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଭକ୍ତ ଓ ପୂଜକମାନେ ଯଦି ଏହିପ୍ରକାର ଉଚ୍ଛ୍ୱସିତ ନୈବେଦ୍ୟ ଅର୍ପଣ କରୁଥିବେ, ତେବେ ତାହା ଗ୍ରହଣ ନକରି ଈଶ୍ୱର ବା ଚୈତନ୍ୟମୟ ପରମାତ୍ମା ରହିପାରିବେନାହିଁ, କିମ୍ବା ସେହି ନୈବେଦ୍ୟରେ ଯଥେଷ୍ଟ ତ୍ରୁଟି ରହେ ବୋଲି ଯଥାସ୍ଥାନରେ ପହଞ୍ଚିପାରେନାହିଁ । କାରଣ ନାନା ମଳିନତା, ନାନା ଆବିଳତାରେ କଳୁଷିତ ମୋ ଆତ୍ମା ସେହି ଦିନଟିର ନୈବେଦ୍ୟ ନିକଟରେ

ଯେତେଦୂର ବିଚଳିତ, ଯେତେଦୂର ଜର୍ଜରିତ ହୋଇଉଠିଥିଲା, ତାହା ଏତେ ଭାବାତୀତ ଯେ ଭାଷାରେ ଲେଖିବା ନିଶ୍ଚିତ ବିଡ଼ମ୍ବନା ।

କିନ୍ତୁ ତାହା ଲେଖିବାର ଅପଚେଷ୍ଟା ପଛରେ ରହିଚି ମୋ ଜୀବନ ପରିବର୍ତ୍ତନର ଗୋଟିଏ ଭୂମିକା । ମୁଁ ଥିଲି ଉଦ୍ଧତ, ମୁଁ ଥିଲି ଗର୍ବୀ, ମୁଁ ଥିଲି ବିରତବିଳାସୀ– ଗୋଟିଏ କଥାରେ କହିଲେ ମୁଁ ଥିଲି ଆଭିଜାତ୍ୟର ସକଳ ଦୁର୍ଗୁଣର ଆଧାର, ଦାମ୍ଭିକତାର ମୂର୍ତ୍ତିମନ୍ତ ସାଧକ । କିନ୍ତୁ ଅଦୂର ଅତୀତରେ ସେସବୁ ନଇଁଯାଇଥିଲା ଅସାମାନ୍ୟା ଗୋଟିଏ ବାଳିକାର ବିଚାର ନିକଟରେ । ମୋର ଅହଙ୍କାର ଥିଲା ଜନସାଧାରଣଙ୍କ ନେତାଭାବେ, କର୍ମବୀରଭାବେ, ଜନତା ସମ୍ମାନର ଅଧିକାରୀଭାବେ । ଜନପରିଚାଳନା କାର୍ଯ୍ୟରେ ସେପରି ସମ୍ମାନର ପ୍ରୟୋଜନ ମଧ ଥିଲା, କାରଣ ସ୍ୱାଧୀନତା ଲକ୍ଷ୍ମୀ ଯେଉଁ ଜନସମୁଦ୍ରର ଗଭୀର ଅନ୍ତରାଳ ମଧ୍ୟରେ ଗୁପ୍ତ ଥିଲେ ତାଙ୍କୁ ବାହାରକୁ ଆଣି ପ୍ରତିଷ୍ଠା କରିବାପାଇଁ ଆବଶ୍ୟକ ଥିଲା ମନ୍ଥନ ଏବଂ ସେହି ସମୁଦ୍ର ମନ୍ଥନପାଇଁ ଯେଉଁ ମନ୍ଥନଦଣ୍ଡ ଆବଶ୍ୟକ ଥିଲା ତାହା ମନ୍ଦର ପର୍ବତ ପରି କଠୋର ଓ ସୁବିଶାଳ ହେବା ଉଚିତ, ନଚେତ ଜନତା ତରଙ୍ଗ ଉଚ୍ଛ୍ୱସିତ ହେବ କିପରି ? ଏହି ଆତ୍ମଶ୍ଳାଘାର ଦୁର୍ନିବାର ଅହମିକା ଯେପରି ଧୂଳିସାତ୍ ହୋଇଥିଲା ଅବଶ୍ୟ ତାହା ଜଣାଇ ପାଠକମାନଙ୍କ ପ୍ରତି ମୋ କର୍ତ୍ତବ୍ୟ ସାଙ୍ଗ କରିବି ।

ଯେଉଁ ସମୟର ଅବତାରଣା କରୁଛି, ତେତେବେଳକୁ ମୋର ବିବାହ ବୟସ ଅତିକ୍ରାନ୍ତ ହୋଇଥିଲା । ମୋ ବିଧବା ମାତାଙ୍କର ମୋ ସମ୍ପର୍କରେ ସର୍ବବିଧ ଆଶା ଭରସା ଲୁପ୍ତହୋଇଥିଲେହେଁ ଯେଉଁ ଗୋଟିଏ ବିଷୟରେ ଆଶା କେନ୍ଦ୍ରୀଭୂତ ହୋଇଥିଲା ତାହା ହେଉଚି ମୋରି ବିବାହ । ଆପାତତଃ ବୋହୂଟିଏ ଆଣିଲେ ମରୀଚିକାମୟ ମରୁଭୂମିରେ ମରୂଦ୍ୟାନ ପରି ଟିକିଏ ଆଶ୍ୱସ୍ତି ପାଇବେ । ଗୋଟିଏ ପ୍ରସ୍ତାବ ମା ଲାଗିପଡ଼ି ସ୍ଥିରକଲେ । ଉଭୟପକ୍ଷ ଉତ୍ସାହ ଉଦ୍‌ଯୋଗରେ ଲାଗିପଡ଼ିଲେ । ସେ ସବୁ ମୋ କାନକୁ ଆସିବା ମାତ୍ରେ ମୁଁ ସିଧାସଳଖ ମନାକରିଦେଲି । ମା'ଙ୍କର ଦୁଃଖର ସୀମା ରହିଲାନାହିଁ । ତାଙ୍କର ସେ ଦୁଃଖ ମୋ ଆଗରେ ବ୍ୟକ୍ତ କରିବାକୁ ଭାଷା ନଥିଲା କିମ୍ୱା ସେପରି ଅବସର ମୁଁ ମଧ ଦେବାକୁ ନାରାଜଥିଲି । ଏସବୁ ବିଷୟକ ଆଲୋଚନା ମା ପୁଅ ଉଭୟଙ୍କ ବିଶ୍ୱସ୍ତ ଉଛବ ନାୟକ ଜଣେ ଗୁମାସ୍ତାଙ୍କ ମାଧ୍ୟମରେ ଚାଲିଥିଲା । ରାଜନୈତିକ ଗୋଲକଧନ୍ଦାରେ, ଘୂର୍ଣ୍ଣପାକରେ ଜଡ଼ିତ ଥିଲେ ମଧ ମାଙ୍କ ନିରତିଶୟ ଦୁଃଖ ମୁଁ ଭଲଭାବେ ଉପଲବ୍ଧି କଲି ଏବଂ ମୋପ୍ରତି ମା'ଙ୍କ ଅସୀମ ସ୍ନେହ, ଶ୍ରଦ୍ଧା, ଉଦାରତାର ପ୍ରତିଦାନସ୍ୱରୂପ ସେ କେବଳ ଗୋଟିଏ ବୋହୂ ପାଇଲେ ସୁଖୀ ହେବେ ବୋଲି ତାଙ୍କ ମନକଥା ପ୍ରକାଶ କରିଥିବା ମଧ ଉଛବ ଗୁମାସ୍ତାଙ୍କଠାରୁ ଶୁଣିଲି । ଯେଉଁ ପ୍ରସ୍ତାବଟି ପ୍ରତ୍ୟାଖ୍ୟାନ କରିଦେଇଥିଲି ତାହା ମଧ ମା'ଙ୍କ ଯୋଗୁଁ ସେପରି କରିଥିଲି, କାରଣ

ମୋର ଏ ମା' ପୋଷ୍ୟମାତା ଥିଲେ ମଧ୍ୟ ସ୍ନେହ ଆଦରରେ କୌଣସି ମା' ଠାରୁ ଊଣା ତ ନଥିଲେ, ବରଂ କେତେକାଂଶରେ ଅଧିକ ଥିଲେ । ଜଣେ ଅପରିଚିତା ସ୍ତ୍ରୀଲୋକ ଘରକୁ ଆସିବା ପରେ କାଳେ ତାଙ୍କର କୌଣସି କାର୍ଯ୍ୟକଳାପଦ୍ୱାରା ମା'ଙ୍କର ହାନି ଘଟିବ, ତାହା ମୋପକ୍ଷରେ ଜୀବନବ୍ୟାପୀ ଅଶାନ୍ତି ଘଟାଇବ, କେବଳ ଏହି ଗୋଟିଏ ଆଶଙ୍କାରେ ମୁଁ ବିବାହ ପ୍ରତି ବିମୁଖ ଥିଲି । କିନ୍ତୁ ଯେତେବେଳେ ଅନୁଭବ କଲି ବିବାହ ନକଲେ ମା'ଙ୍କର ଜୀବନବ୍ୟାପୀ ଅଶାନ୍ତି ରହିବ, ତେତେବେଳେ ମୋ ମାନସିକ ଶାନ୍ତିପାଇଁ ମା'ଙ୍କ ଅଶାନ୍ତିକୁ ପ୍ରଶ୍ରୟ ଦେବା, ଉଭୟବିଧ ଚିନ୍ତା ମୋ ମନରେ ଏକ ଦ୍ୱନ୍ଦ୍ୱ ଉପୁଜାଇବସିଲା । ଏ ମାନସିକ ଦ୍ୱନ୍ଦ୍ୱ କ୍ରମଶଃ ସମାହିତ ହୋଇଗଲା ବିବାହ କରିବା ସିଦ୍ଧାନ୍ତରେ । ଏ ସିଦ୍ଧାନ୍ତକୁ ଯଥେଷ୍ଟ ପ୍ରଭାବିତ କରିଥିଲା ପାରାଦ୍ୱୀପ ବିଧବାରାଣୀଙ୍କର ମୋପ୍ରତି ଅନୁପମ ଆନ୍ତରିକତାର ପ୍ରତିଦାନପାଇଁ କର୍ତ୍ତବ୍ୟ ବିଷୟକ ବିବେଚନା । ତାଙ୍କ ବଡ଼ କନ୍ୟାଙ୍କୁ ପାତ୍ରସ୍ଥ କରିବାର କିମ୍ବା ଋଣ ପରିଶୋଧ କରିଦେବାର ସମସ୍ତ ବ୍ୟୟ ବହନକରି ସେ କର୍ତ୍ତବ୍ୟ ଯେ ପୂରଣ କରିନଥିଲି ତାହା ନୁହେଁ; କିନ୍ତୁ ସେ ମୋପାଇଁ ଯେପରି ଉତ୍ସର୍ଗୀକୃତପ୍ରାଣ ହୋଇ ବସିଥିଲେ ଏବଂ ସେହି ପ୍ରତିକ୍ରିୟାଶୀଳ ଦଳମାନଙ୍କ ସହିତ ଅନମନୀୟଭାବେ ସମ୍ମୁଖୀନ ହେଉଥିଲେ, କିମ୍ବା ସେମାନଙ୍କ ଆକ୍ରମଣଦ୍ୱାରା ବୈଷୟିକ ବ୍ୟାପାରରେ ଅଯଥା ବ୍ୟତିବ୍ୟସ୍ତ ହେଉଥିଲେ, କିମ୍ବା ମନ୍ଦିର ଓ ଦେବୋତ୍ତର ଇତ୍ୟାଦି ବହୁମୂଲ୍ୟ ସମ୍ପତ୍ତିବାଡ଼ି ମୋ ଅଜ୍ଞାତରେ ମୋ ନାମରେ କରିଦେଇଥିଲେ, ସେସବୁ ଭାବିବାବେଳକୁ ମୁଁ ଯେ କେଡ଼େ ମୁହ୍ୟମାନ ଓ ମ୍ରିୟମାଣ ହୋଇ ତାଙ୍କ ନିକଟରେ ଅବନତ ରହିଥିଲି— ତାହାର ଉପମା ଦେବା ମୋପକ୍ଷରେ ଅସମ୍ଭବ । ଏ ସବୁପାଇଁ ମୋଠାରେ ତାଙ୍କର କୌଣସି ପ୍ରତିଦାନର ଆଶା, ଦାବି ବା ଅଳି କିଛି ନଥିଲା ବୋଲି ମୋର ତାଙ୍କଠାରେ ଦାବି ଥିଲା— ଆଜ୍ଞା ଆହରଣ କରିବା । କିନ୍ତୁ ଦିନେହେଲେ ସେ ମୋତେ କେବେ କିଛିପାଇଁ ଆଜ୍ଞା ଦେଇନାହାନ୍ତି କିମ୍ବା ଘୁଣାକ୍ଷରେ କୌଣସି ଇଚ୍ଛା, ଆକାଙ୍‌କ୍ଷା ପ୍ରକାଶ କରିନାହାନ୍ତି— ଯାହା ମୁଁ ତାଙ୍କପାଇଁ କରିଥାଏ, ନିଜ ଆଭିମୁଖ୍ୟ ନେଇ । ଘୋର ଦୁର୍ଦ୍ଦଶାଗ୍ରସ୍ତ ହୋଇ ମଧ୍ୟ ସେ ଦିନକପାଇଁ ହରାଇନଥିଲେ ଆଭିଜାତ୍ୟର ପରାକାଷ୍ଠା । ସେ ଥିଲେ ମୂର୍ତ୍ତ ଅଭିମାନୀ ଏବଂ ଧୂର୍ତ୍ତତାକୁ ସେ କଠୋର ଘୃଣା କରୁଥିଲେ । ମୋ ସହିତ ମନଖୋଲି କଥାଭାଷା କରିବାକୁ ସେ ସର୍ବଦା ସୁବିଧା ଖୋଜୁଥିଲେ ଓ ସୁବିଧା ଦେଉଥିଲେ । ସେତେବେଳକୁ ତାଙ୍କର କର୍କଟ ରୋଗ ଆରମ୍ଭ ହୋଇଗଲାଣି ଏବଂ ମୁଁ ଚିକିତ୍ସା କରାଇବା ଦାୟିତ୍ୱରେ ଥାଏ । କଥା ପ୍ରସଙ୍ଗରେ ତାଙ୍କ କନିଷ୍ଠା କନ୍ୟାଙ୍କ ବିବାହ ଦାୟିତ୍ୱ ଶେଷରେ ମୋ ଉପରେ ନିର୍ଭର କରିବ ବୋଲି ମୁଁ କେତେଥର ତାଙ୍କଠାରୁ ଶୁଣିଥିଲି । କାରଣ ଦୁରାରୋଗ୍ୟ କର୍କଟବ୍ୟାଧି କବଳରୁ ତାଙ୍କର ମୁକ୍ତିନାହିଁ, ଏଣୁ ଏପରି କହିବା ତାଙ୍କପକ୍ଷରେ ସ୍ୱାଭାବିକ ବୋଲି ମୁଁ ଧାରଣା କରୁଥିଲି ।

ଜୟକୃଷ୍ଣ ନାମରେ ତାଙ୍କର ଗୋଟିଏ ଆଶ୍ରିତ ଥିଲେ– ବହୁ ଦୂର ସମ୍ପର୍କୀୟଭାବେ ସେ ତାଙ୍କ ପୁତୁରା । ସେ ଏକାନ୍ତରେ ଦିନେ ମତେ ଜଣାଇଲେ ରାଣୀଙ୍କର ଇଚ୍ଛା ମୋପରି ଗୋଟିଏ ପାତ୍ର ତାଙ୍କ ସାନ ଜେମାଙ୍କପାଇଁ ହେଲେ ସେ ସୁଖୀ ହୁଅନ୍ତେ । ତାଙ୍କ ଇଚ୍ଛା– ମୋପକ୍ଷରେ ବିଧିନିର୍ଦ୍ଦେଶ ଅମୋଘ ଥିଲା । ତେଣୁ ତାଙ୍କ ନିଜଆଡୁ କଥା ପକାଇବାରେ ଅସୁବିଧା ଥିବା ଜାଣି, ଆମଆଡୁ କଥା ପଡ଼ିବାର ସବୁ ବ୍ୟବସ୍ଥା କରିଦେଲି । ଦାୟିତ୍ୱଶୀଳ ଲୋକ ରାଣୀଙ୍କ ନିକଟରେ ପ୍ରତ୍ୟକ୍ଷ ପ୍ରସ୍ତାବ ଦେଲେ ଏବଂ କହିବା ବାହୁଲ୍ୟ ଯେ, ତତ୍କ୍ଷଣାତ୍ ତାଙ୍କ ସମ୍ମତି ମିଳିଲା । କ୍ରମଶଃ ପ୍ରସ୍ତାବଟି କନିଷ୍ଠା ଜେମାଙ୍କ କର୍ଣ୍ଣଗୋଚର ହେବାବେଳକୁ କେତେ ମାସ ବହିଗଲା । ମୋପକ୍ଷରେ ସେତେବେଳେ ମା'ଙ୍କୁ ଜଣାଇବା ଓ ମୋ ସଂପୃକ୍ତ ସମସ୍ତଙ୍କୁ ଜଣାଇବା ଇତ୍ୟାଦି କାମ ଯଥାରୀତି ଆଗେଇଗଲା । ଏପରି ଏକ ନିଶ୍ଚିତ, ନିର୍ଣ୍ଣିତ ପରିସ୍ଥିତିରେ ସଂକଳ୍ପ ନିଷ୍ଠାଭାବେ ଗତିକରୁଥିଲାବେଳେ ଶୁଣିଲି କନିଷ୍ଠା ଜେମାଙ୍କର ଏ ପ୍ରସ୍ତାବରେ ସମ୍ମତି ନାହିଁ । ମୁଣ୍ଡରେ ବଜ୍ର ପଡ଼ି ଶତଧା ବିଦୀର୍ଣ୍ଣ ହେବାପରି ଜଣାଗଲା । ବୁଝିଲି ଏତାବତ୍ ମୋ ସାଧନା ଥିଲା ଯଜ୍ଞପାଇଁ ସମିଧ ଆହରଣ କରିବା ଏବଂ ସେଥିପାଇଁ ଆବଶ୍ୟକ ହେଉଥିବା ସମସ୍ତ ପ୍ରଚଣ୍ଡତା, ସମସ୍ତ କ୍ଷିପ୍ରତା ସେ ସମସ୍ତ ଗୁଣ ମୋଠାରେ ଥିଲା, କିନ୍ତୁ ଏ ଯଜ୍ଞପାଇଁ ଆବଶ୍ୟକ ହେଉଥିଲା ପୁଷ୍ପମାଲ୍ୟ– ସେଥିପାଇଁ ତରୁ ଲଙ୍ଘନ କରି ଶାଖା ଧରିବାକୁ ହେବ, ଶାଖା ଅତିକ୍ରମ କରି ଶ୍ୱାସରୁଦ୍ଧକର ସାବଧାନତା ସହିତ ପତ୍ର ଗହଳକୁ ସ୍ପର୍ଶକରି କଣ୍ଟକ ଓ ପଲ୍ଲବ ମଧ୍ୟରେ ଅନ୍ୱେଷଣ କଲେ ପୁଷ୍ପ ଚୟନ କରାଯାଇପାରିବ । ତେବେ ଯାଇଁ ମାଲ୍ୟ ଗୁନ୍ଥା ହେବ ଓ ଯଜ୍ଞରେ ନିୟୋଜିତ ହେବ । ଏଥିପାଇଁ ମୋର ନଥିଲା ସାଧନା କିମ୍ବା ଅନୁଶୀଳନ ।

ଏ ସମ୍ବାଦରେ ରାଣୀ ଅଧୀରା ହୋଇପଡ଼ିଲେ ଏବଂ କାର୍ଯ୍ୟାନୁରୋଧରେ ମୁଁ ଯେତେବେଳେ ତାଙ୍କୁ ଦେଖାକରେ, ମୁଁ କିଛି ନଜାଣିବାପରି ଛଳନାକରି ଚାଲୁଥିଲି ଏବଂ ମୋର ସେ ଛଳନା ସେ ଯେ ବୁଝୁନଥିଲେ ତାହା ନୁହେଁ । ବିଶେଷତଃ ସେ ପରିବାରରେ ମୋ ପ୍ରବେଶର ଅବାଧ ଅଧିକାର ଥିବାରୁ ଜେମାଙ୍କ ସହିତ ବାରମ୍ବାର ଦେଖାସାକ୍ଷାତ ହେଉଥିଲା । କିନ୍ତୁ ଏଡ଼େବଡ଼ ବ୍ୟାପାରରେ ସେ ଏପରି ଉଦାସୀନତାର ଆଚରଣ କରୁଥିଲେ ଯେ ମୁଁ ଆତ୍ମନିବେଦନ କରିବାକୁ ଯଥେଷ୍ଟ ସୁଯୋଗ ସୁବିଧା ପାଉଥିଲେ ମଧ୍ୟ ସାହସ ହେଉନଥିଲା ।

ତେଣୁ ଏ ଦିଗରେ ସର୍ବତୋଭାବେ ପରାଭବ ପାଇ 'ଲାଙ୍ଗୁଳ ସଙ୍କୋଚି ଶ୍ୱାନ ପଳାଏ ଯେସନେ' ଅବସ୍ଥାକୁ ଆଦରିନେବି କି ନିଜର ସାଧନାଦୃପ୍ତ ବିପ୍ଳବଙ୍କରୀ ଶକ୍ତି ପ୍ରକଟାଇ ଜେମାଙ୍କୁ ବୁଝାଇଦେବି ବୀରତ୍ୱହିଁ ମୋର ସାଧନା– ''ସୁନ୍ଦରୀଏ ତେଣୁ ହୁଅନ୍ତି ସର୍ବଦା ବୀରପ୍ରତି ଅନୁକୂଳ ।''

ଏ ମନ୍ତ୍ରରେ ଯଦି କିଛି ସତ୍ୟତା ଥାଏ ତେବେ ଜେମାଙ୍କର ଅନୁଗ୍ରହ, ଅନୁରାଗ ଯାହା କୁହ ଦିନେ ମୋର ଲଭ୍ୟ ହୋଇପାରିବ । ଏହି ତାତ୍ପର୍ଯ୍ୟପୂର୍ଣ୍ଣ କବିତାରେ ଭରସା ରଖିଥାଏ ସତ୍ୟ; କିନ୍ତୁ ଅସମ୍ଭବ ପ୍ରକାରେ ମଉଳିଯାଇଥାଏ ମୋର ଦର୍ପ, ଅହଙ୍କାର, ଆତ୍ମଶ୍ଳାଘା ।

ଏହି ମାନସିକ ଦ୍ୱନ୍ଦ୍ୱରେ ଦୋଦୁଲ୍ୟମାନ ଥିବାବେଳେ ବାଜିଉଠିଲା ଲବଣ ସତ୍ୟାଗ୍ରହର ପ୍ରଳୟକାରୀ ଭେରୀ ଏବଂ ହୃଦୟର ନିର୍ମମ ଭାରା ଟିକିଏ ଉଶ୍ୱାସ ଜଣାଗଲା ଅଭ୍ୟସ୍ତ ସାଧନାର ଉନ୍ମୁକ୍ତ ପଥ ପାଇ । ପାଷାଣବଦ୍ଧ ନିର୍ଝରିଣୀର ମୁଖ ମୁକ୍ତହେବା ପରି ପ୍ରବାହିତ ହେଲା କାର୍ଯ୍ୟଧାରା ଦେଶ ଗ୍ରାମ ପ୍ଲାବିତ କରି । ଆପାତତଃ ଶାନ୍ତି ଲଭିଲା ଅଦମ୍ୟ ତୃଷ୍ଣା ।

ବନ୍ଦୀ ଜୀବନକାଳ ମଧ୍ୟରେ ସବୁଦିନଗୁଡ଼ିକ ଆଶାତୀତ ସୁଖରେ କଟିଗଲା ସତ, କିନ୍ତୁ ହୃଦୟର ଭୀରୁତମ ପ୍ରଦେଶରେ ଯେଉଁ ଅକଥ୍ୟ ଓ ଅବୋଧ କ୍ଷତ ଥିଲା ତାହା ଉପଶମ ହେବା ଦୂରେ ଥାଉ, ଅଧିକରୁ ଅଧିକ ପୀଡ଼ା ଦେଉଥିଲା । ସେ ପୀଡ଼ାର ଉତ୍ତାପ ତରଳାଇବାରେ ସିଦ୍ଧିହସ୍ତ ଥିଲା ମୋ ହୃଦୟର କଠିନ ଲୌହସମ ଗ୍ରନ୍ଥିନିଚୟ । ଦୁଗ୍ଧ ମନ୍ଥନରୁ ନବନୀତ ନିଃସୃତ ହେଲାପରି ମୋର ସେହି ମର୍ମାନ୍ତିକ ପୀଡ଼ନ ପ୍ରଭାବରେ ହୃଦୟରେ ଉପଲବ୍ଧି କଲି ଦୟା, ମାୟା, କରୁଣା ଇତ୍ୟାଦି କୋମଳ ବୃତ୍ତିଗୁଡ଼ିକର ସ୍ଖଳନ । ସେଥିପାଇଁ ଦାମିଲ୍ ସଙ୍ଗୀଟିର ବିଚ୍ଛେଦ ମୋତେ ଯତ୍‌ପରେନାସ୍ତି ବୈକଲ୍ୟରେ ଜର୍ଜରିତ କରିପକାଇଲା । ମୁଁ ଯେତେ କର୍ମୀଥିଲି, ତେତେ ଭାବୁକ ନଥିଲି । ମୋର ହୃଦୟ ଥିଲା, କିନ୍ତୁ ଭାବ ନଥିଲା । ଦାନ ଥିଲେ କ'ଣ ହେବ, ଦୟା ନଥିଲା । ମୋଟଉପରେ ମୁଁ ବୀର ହୋଇ ବନ୍ଦୀଶାଳାକୁ ଯାଇଥିଲି, କିନ୍ତୁ ଫେରିଲି ଗୋଟେ କବି ହୋଇ । କେଉଁ ପରଶପଥରର ସ୍ପର୍ଶରେ, ପାଠକେ ବିଚାର କରିବେ ।

—

# କାରା କାହାଣୀ

ଠିକ୍ ୩୧ ବର୍ଷ ପରେ ମୁଁ ଯେତେବେଳେ ଏହି କାରା କାହାଣୀ ଲେଖିବସିଛି, ପାଠକ ମହାଶୟମାନେ କଦାପି ଆଶା କରିବେନାହିଁ ଯେ, ଦୈନନ୍ଦିନ ଘଟଣାପ୍ରବାହଗୁଡ଼ିକ ଲେଖି ଆପଣମାନଙ୍କ ଛାମୁରେ ପରିବେଷଣ କରିପାରିବି ବୋଲି । କାରଣ ମୁଁ ପେଷାଦାର ଲେଖକ ନୁହେଁ, ଡାଇରୀ ଇତ୍ୟାଦି ଖୋଲି ରଖିବାଭଳି ଶୃଙ୍ଖଳାଜ୍ଞାନର ବହୁଦୂରରେ ମୋର ଗତି । ବିଶେଷତଃ ସତ୍ୟର ଅପଳାପ ନକଲେ ଲେଖିବି ଯେ, ସ୍ୱାଧୀନତା ପ୍ରାପ୍ତିର ଧାରଣା ଆମର କାହାରିହେଲେ ନଥିଲା । ତାତ୍ପର୍ଯ୍ୟପୂର୍ଣ୍ଣ ସ୍ୱାଧୀନତାସଂଗ୍ରାମକୁ କିଏ କେତେ ତ୍ୟାଗ ଓ ଉତ୍ସର୍ଗ ମନ୍ତ୍ରରେ ମୋହିତ ହୋଇ ବରଣ କରିଥିଲା ଏବଂ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ମଧ୍ୟରେ ସେପରି ଉତ୍ସାହ ଓ ଉନ୍ମାଦନା ନଦେଖି ବାସ୍ତବିକ ଆମ ମଧ୍ୟରୁ ଅନେକେ ମ୍ରିୟପ୍ରାଣ ହୋଇଯାଇଥିଲେ, ବିଶେଷତଃ ଯଦିଓ ବୁଢ଼ା ବା ବୟୋଧିକ ବ୍ୟକ୍ତିମାନେ ଅହିଂସ ଆନ୍ଦୋଳନର ମର୍ଯ୍ୟାଦା ଅଳ୍ପବହୁତ ପସନ୍ଦ କରୁଥିଲେ; କିନ୍ତୁ ଯୁବକମାନେ ସାଧାରଣତଃ ସମସ୍ତେ ନାପସନ୍ଦ କରୁଥିଲେ ବା ମନେ ମନେ ଅବିଶ୍ୱାସ କରୁଥିଲେ ଏ ପନ୍ଥାର ସାଫଲ୍ୟକୁ । କାରଣ ଯୁବସୁଲଭ ଦୁର୍ଦ୍ଦମନୀୟ ତିତିକ୍ଷା ତୃପ୍ତ ହେବାପାଇଁ ହିଂସାମାର୍ଗର ଯେଉଁ ପ୍ରଚଣ୍ଡତାକୁ ଆମେମାନେ କଳ୍ପନା କରିବସିଥିଲୁଁ ତାହାର ତିଳେମାତ୍ର ଏ ଅହିଂସ ଆନ୍ଦୋଳନରେ ନପାଇ ମନେ ମନେ ନିରତିଶୟ ନିରାଶ ହୋଇପଡ଼ିଥିଲୁ । ରକ୍ତର ଆଦାନ ପ୍ରଦାନ ନଥିଲା, ନଥିଲା ଲୋମହର୍ଷଣକାରୀ କ୍ରିୟା-ପ୍ରତିକ୍ରିୟା; ନଥିଲା ଅନତିକ୍ରାନ୍ତ ବାଧାବିଘ୍ନ କିମ୍ବା ଅନିର୍ବଚନୀୟ ଘାତ-ପ୍ରତିଘାତ । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ପୌରୁଷ ଗଢ଼ିଉଠିଥିଲା, ତାହାପାଇଁ ଟିକିଏ ଗିରଫ ହେବା ବା ଟିକିଏ ଜେଲଯିବା ବା ଟିକିଏ ଅସୁବିଧା ଭୋଗକରିବା ସୈନିକସୁଲଭ ଆମ୍ଭମାନଙ୍କ ମନନ ପକ୍ଷରେ ବାସ୍ତବିକ ମାଇଚିଆ ଓ ଅଲଣା ବୋଧହେଉଥିଲା । ତେଣୁ ଏପ୍ରକାର ମୌଳିକ ଅନାଶ୍ୱସ୍ତି ମଧ୍ୟରେ ମୁଁ ଏକାବେଳେ ବୀତସ୍ପୃହ ହୋଇପଡ଼ିଥିଲି । ରଣଚଣ୍ଡୀଙ୍କ ଭୈରବ ରଡ଼ି ପରିବର୍ତ୍ତେ ସରସ୍ୱତୀଙ୍କ ବୀଣାଝଙ୍କାର ମୋ ମର୍ମେ ମର୍ମେ ଏକ ବିଡ଼ମ୍ବନା ସୃଷ୍ଟିକରିଥିଲା । ମୁଁ କାନଡେରିଥିଲି ନର୍ତ୍ତନର ଗୁଞ୍ଜନ ଶୁଣିବାକୁ ନୁହେଁ– ହତ୍ୟାର ହୁଁକାର । କିନ୍ତୁ ଏ କଣ ହେଲା– ଜୀବନର ଚରମ ଓ ପରମ ଲକ୍ଷ୍ୟ ଆତ୍ମବଳିର ଆହ୍ୱାନ ପରିବର୍ତ୍ତେ ସାହିତ୍ୟ ସେବାର ମୃଦୁସ୍ପର୍ଶ । ନାହିଁ ତହିଁରେ ପୀଡ଼ା, ନାହିଁ ତହିଁରେ ମନ୍ଥନ, ନାହିଁ ତହିଁରେ ବିସର୍ଜନ ବା ନ୍ୟାସ । କାହିଁ ଆତ୍ମନିବେଦନ, ପୁଣି କାହିଁ ଆତ୍ମ ଉଦ୍ଭାବନ ବା ସାହିତ୍ୟିକ ଆତ୍ମସୃଜନ– ଉଭୟେ ବିପରୀତଧର୍ମୀ ।

ତେଣୁ ମୁଁ ଭଲଭାବରେ ଉପଲବ୍ଧି କରିପାରୁଥିଲି ଯେ ଗୋଟିଏ ପଙ୍କିଳ ସ୍ତରରୁ ମୋ ପାଦ ଗୋଟିଏ ପିଚ୍ଛିଳ ସ୍ତରକୁ ଖସିଯାଉ ବୋଲି । କାରାଗାରର ବାତାବରଣ ମଧ୍ୟ ସେଥିପାଇଁ ମୋତେ ଯଥେଷ୍ଟ ଖୋରାକ ଯୋଗାଉଥିଲା । ଯଜ୍ଞବେଦୀର ଧୂପଧୂମ କ୍ରମେ ନିର୍ବାପିତ ହୋଇଆସିଲା ଏବଂ ସେହିଠାରେ ଅଙ୍କୁରିତ ହେଲା, ପଲ୍ଲବିତ ହେଲା ଏକ ସୁରଭି ପୁଷ୍ପାବୃତ କୋମଳ ଲତା– ଖୋଜୁଥିଲା ଏକ ଆଶ୍ରୟ, ଏକ ଅବଲମ୍ବନ ! ପାଠକେ କାମଲୋକର ଦୁର୍ମୋଚ୍ୟ ନାଗଫାଶ ବିଷୟରେ କିଛିନା କିଛି ସନ୍ଧାନ ଜାଣିଥିବେ । ଆର୍ତ୍ତି, କରୁଣାଦି ମର୍ତ୍ତ୍ୟପ୍ରକୃତିଦ୍ୱାରା ଚେତନାହତ ପ୍ରାଣର ଆତ୍ମନିବେଦନ ଓ ହୃତ ଚୈତନ୍ୟ କେବେ ମର୍ମ ମଧ୍ୟରେ ଆବିଷ୍କାର କରିଥିବେ । 'କଣ୍ଟକ କାନନ ହଠାତ୍ ଦିନେ ପୁଷ୍ପ ଉପବନରେ' ପରିବର୍ତ୍ତିତ ହେବାର ବାଜିକରଣ ବିଦ୍ୟା ଠଉରାଇଥିବେ । ଯଦି ଏପରି ଅଭିଜ୍ଞତା ଓ ଅନୁଭୂତି ପାଠକଙ୍କର ଥାଏ– ନିଶ୍ଚୟ କିଛି ନା କିଛି ଥିବ ତ, ତାହାହେଲେ ଅନ୍ତାଧିକେ ମାୟାଦର୍ପଣରେ ମୋ ମ୍ଳାନ ନିରାନନ୍ଦ ରୂପ ଦେଖି ସେତେବେଳେ ମୋର ଯେଉଁ ଲୋମୋଦ୍‌ଗମ ହୋଇଥିଲା, ମୁଁ ଯେଉଁ ସ୍ୱାଭାବିକ ହେଉ ଅସ୍ୱାଭାବିକ ହେଉ ମର୍ତ୍ତ୍ୟ ଶିହରଣର ସ୍ୱପ୍ନାତୁରତାର ସମ୍ମୁଖୀନ ହୋଇଥିଲି ତାହାର କିଞ୍ଚିତ ଧାରଣା କରିପାରିବେ । କିନ୍ତୁ ଧାରଣାଜନିତ କଷ୍ଟ ବରଣ କରିବାକୁ ଆହ୍ୱାନ ଜଣାଇବା ପୂର୍ବରୁ ପାଠକ ମହାଶୟମାନଙ୍କୁ କ୍ଷମା ପ୍ରାର୍ଥନା କରିବି ଯେଉଁ ଅପରାଧପାଇଁ, ତାହା ହେଉଛି ମର୍ମଉଦ୍‌ଘାଟନର ସହଜ ସରଳ ପ୍ରୟାସ ପାଉନାହିଁ ବୋଲି । କାରଣ ସୃଷ୍ଟିହେଲା ସ୍ୱତଃ, ଚିରପ୍ରାଣବନ୍ତ । ସେ ପ୍ରାଣର ପ୍ରେରଣାଦ୍ୱାରା ନିରନ୍ତର ସୃଷ୍ଟି-ସ୍ଥିତି-ଲୟର ପ୍ରକ୍ରିୟାରେ ମୃତ୍ୟୁ ମଧ୍ୟ ପ୍ରତି ପଦକ୍ଷେପରେ ଅମୃତ ହୋଇଉଠୁଛି । ସେହି ବିଶ୍ୱବ୍ୟାପୀ ପରାଶକ୍ତିକୁ, ପ୍ରେମକୁ, ମୂର୍ତ୍ତିମତୀ ଦେଖିବାକୁ ଯେତେବେଳେ ମୋ ପ୍ରାଣ ବ୍ୟାକୁଳ ହୋଇଉଠିଲା, ସେହି ବୈକଲ୍ୟଇ ଜଣାଗଲା ମୋତେ ସାର୍ଥକତା ପରି । ଗୋଟିଏ ଜୀବନ କାଳ ମଧ୍ୟରେ ଜନ୍ମାନ୍ତର ଲାଭକଲେ ଯେଉଁ ଶ୍ଳାଘା ଉପଲବଧି ହୁଏ, ତାହା ସ୍ନେହ, ପ୍ରେମଜନିତ ଆତ୍ମଦାନ ଚିନ୍ତାରେ ଶାଣିତ ଅସ୍ତ୍ରପରି ଉଜ୍ଜ୍ୱଳ ହୋଇଉଠିଲା । ମର୍ତ୍ତ୍ୟଲୋକରେ ପ୍ରାଣହିଁ ଅମୃତ, ପ୍ରାଣଇ ଆନନ୍ଦ– ଯେଉଁ ଆନନ୍ଦରୁ ଜୀବ ଜନ୍ମଲାଭକରେ, ଯେଉଁ ଆନନ୍ଦର ନୃତ୍ୟଚପଳତାରୁ ଆନନ୍ଦର ଜୀବନ୍ତ ପ୍ରତିମୂର୍ତ୍ତି ବା ସାକ୍ଷାତ୍ ନାରୀ ପ୍ରତିମା– ପୂର୍ଣ୍ଣଯୌବନା ନାରୀ ବା ଆରାଧନାର ମୂର୍ତ୍ତିମତୀ ରାଧା ସୃଷ୍ଟିହୁଏ । ଏହି ଅଭୂତପୂର୍ବ ଆତ୍ମଆବିଷ୍କାରରେ ଯେଉଁ ନିଖିଳ ମର୍ତ୍ତ୍ୟପ୍ରକୃତିର ସ୍ପର୍ଶ ଅନୁଭବ କଲି ତାହା ପ୍ରକୃତିର ପ୍ରକୃତ ପ୍ରସାଦ ଓ ଯଥାର୍ଥ ଆଶୀର୍ବାଦ ବୋଲି ବିଶ୍ୱାସ ହେଲା । ପତନଶୀଳ ପଦାର୍ଥର ଗତିବେଗ କ୍ରମଶଃ ବୃଦ୍ଧି ପାଇବାପରି ମୋ ମନୋବୁଦ୍ଧିର କ୍ରମିକ ବିକାଶ ଓ ଅନୁଶୀଳନ ଅଗ୍ରଗତି କଲା ଯୁଗପତ୍ ସାନ୍ଦ୍ରରୁ ସାନ୍ଦ୍ରତର ଏକ ପ୍ରବଣତା ମାଧ୍ୟମରେ, ଜୀବନ-ବିମୁଖତା ଦିଗରେ ନୁହେଁ । ପ୍ରାଣପୂର୍ଣ୍ଣ ପ୍ରତିବାଦ ପୁନଃ ପୁନଃ ଧ୍ୱନିତ ହେଲା ବିଚାରବୁଦ୍ଧି ଅଭିମାନୀ ଶୂନ୍ୟାଭିସାର ବିରୋଧରେ । ଅରଣ୍ୟପର୍ବତ ମରୁବାସୀ ବର୍ବର ଜୀବନରେ ଆଧୁନିକ ଯୁଗର ସଭ୍ୟତା

ସଂସ୍କୃତିର ସଙ୍ଗୀତ, ସେ ସଙ୍ଗୀତରେ ଛନ୍ଦ, ସେ ଛନ୍ଦରେ ମୂର୍ଚ୍ଛନା ଏବଂ ସେ ମୂର୍ଚ୍ଛନାରେ ଅନୁଭୂତି– ଏହିପରି ପ୍ରଗତି ପଥରେ ମନୁଷ୍ୟର ମନୋବୁଦ୍ଧି ଧାବିତ ହୋଇଛି ଯେଉଁ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱସ୍ତରକୁ, ଉତ୍କର୍ଷରୁ ତତୋଧିକ ପରମାଶ୍ଚର୍ଯ୍ୟ ଉତ୍କର୍ଷକୁ, ଏ ସମସ୍ତ ମୂଳରେ ଅଛି ସେହି ଦୁର୍ନିବାର କାମନା, ଯାହା ହୃଦୟ କେନ୍ଦ୍ରକୁ ଉଦ୍‌ବୋଧିତ କରିରଖେ । ଆମ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ିବାବେଳେ ପ୍ରଥମେ ସଚରାଚର ଗୋଟିଏ ଶ୍ଳୋକ ପାଠକରାଯାଏ, ଯାହାର ଅର୍ଥ ହେଉଛି– ''ମୂକକୁ ଯେ ବାଚାଳ କରିପାରେ କିମ୍ୱା ପଙ୍ଗୁକୁ ଗିରିଲଙ୍ଘନ କରାଏ ଯାହାଙ୍କ କୃପା, ସେହି ପରମାନନ୍ଦ ମାଧବଙ୍କୁ ବନ୍ଦନା କରୁଛି ।''

ପ୍ରେମାନୁରାଗର ବଶବର୍ତ୍ତୀ ହେଲେ ମନୁଷ୍ୟ ହୃଦୟରେ ଏହିପରି ଶକ୍ତିର ସଞ୍ଚାର ଘଟେ । ଆଧ୍ୟାତ୍ମିକ ସ୍ତରରେ ଯାହା ଘଟେ, ସାଧାରଣ ସ୍ତରରେ ମଧ୍ୟ ଠିକ୍ ସେହିପରି ଲାଗେ ! ଗୋରୁଗାଡ଼ି ବାଷ୍ପୀୟ ଶକଟରେ ପ୍ରବର୍ତ୍ତି ଆଣବିକ ଇନ୍ଧନରେ ଚାଲିଲେ ମଧ୍ୟ ମୂଳ ଗାଡ଼ି ନିର୍ମାଣକାରୀର ବୁଦ୍ଧି ଆଣବିକ ଶକ୍ତିକୁ ଗାଡ଼ି ଚଳାଇବା କାମରେ ସଦ୍‌ବ୍ୟବହାର କରିବା କାରିଗରଠାରୁ ଯେ ଊଣା ଏହା କଦାପିନୁହେଁ । ପଶୁ-ଶକଟ ବାଷ୍ପ-ଶକଟରେ ବିକାଶଲାଭ କରିବାକୁ ଯେତେ ସମୟ ଆବଶ୍ୟକ କଲା, ବାଷ୍ପଶକଟ ବିଦ୍ୟୁତ୍ ଶକଟରେ ପହଞ୍ଚିବାକୁ ତତୋଧିକ ଅଳ୍ପକାଳ ଲାଗିଲା, ପୁଣି ବିଦ୍ୟୁତ୍‌ଶକଟ ଆଣବିକ ବା ପାରମାଣିକ ଶକଟରେ ପହଞ୍ଚିବାକୁ ତତୋଧିକ ଅଳ୍ପ ସମୟ ଆବଶ୍ୟକ କଲା । କିନ୍ତୁ ଏହା ବୋଲି ଯେ ଏକାଳର କାରିଗର ସେକାଳର କାରିଗରଠାରୁ ବୁଦ୍ଧିଗୁଣରେ ଉନ୍ନତତର, ଏପରି ଭାବିବାର ବିଶେଷ କିଛି ଯୌକ୍ତିକତା ନାହିଁ । ସେହିପରି ପାରମାର୍ଥିକ ପ୍ରେମବିଳାସରେ ବିଚାରବୁଦ୍ଧି ଯେପରି ବିଭୋର ହୋଇଥାଏ ସେହିପରି ଅନୁରାଗ ସ୍ତରରେ ମଧ୍ୟ ସେହିପ୍ରକାରର ଅନୁଭୂତିମାନଙ୍କ ସହିତ ସଂଯୋଗ ଘଟେ ।

ମୋ କ୍ଷେତ୍ରରେ ଯାହାସବୁ ଘଟିଲା ତାହା ବିଶ୍ଳେଷଣ କରିବାପାଇଁ ଏ ଉପଯୁକ୍ତ ସ୍ଥାନ ନୁହେଁ । ତେବେ ଭୂମିକାଟି ଏପରି ହେଲାଣି ଯେ କିଛି ନଲେଖିଲେ ମଧ୍ୟ ଅସମ୍ପୂର୍ଣ୍ଣ ଜଣାଯିବ । କାରାଗାରର ବିସ୍ତୃତ ଅବକାଶ ଭିତରେ ସାହିତ୍ୟ ଆଲୋଚନା ତ ଚାଲିଲା; କିନ୍ତୁ ସାହିତ୍ୟ ଯାହାସବୁ ହସ୍ତଗତ ହେଲା ତହିଁରେ ଆଧ୍ୟାତ୍ମିକ ଚର୍ଚ୍ଚାର ଗନ୍ଧ ତ ନଥିଲା, ଥିଲା ବିରହ, ବିଚ୍ଛେଦ, ମିଳନ ଇତ୍ୟାଦିର ଉନ୍ମାଦନାଭରା ବର୍ଣ୍ଣନା ସବୁ । ଫଳରେ ସେହିସବୁ ସାହିତ୍ୟର ପ୍ରଭାବରେ ମୁଁ ଯେ ନିବିଡ଼ଭାବେ ପ୍ରଭାବିତ ହୋଇଗଲି ବୋଲିବା ବାହୁଲ୍ୟ । ବୟସ ତ ଯଥେଷ୍ଟ ହୋଇଥିଲା । ଆନ୍ଦୋଳନର ସୀମା ଭିତରେ ତ୍ୟାଗର ଆବଶ୍ୟକତା ନଦେଖି ମନର ନିଷ୍କ୍ରିୟତା ମଧ୍ୟରେ ପ୍ରେମ, ଅନୁରାଗର ପ୍ରତିବିମ୍ୱଗୁଡ଼ିକ ଦ୍ୱିଗୁଣ ବଳରେ ଫୁଟିଉଠିଲା । ସେହି ସନ୍ଧିକ୍ଷଣରେ ଯେଉଁ ସିଦ୍ଧାନ୍ତଗୁଡ଼ିକ ଏତାବତ୍‌କାଳ ଆକଟି ଧରିରଖିବାକୁ ହୋଇଥିଲା, ତାହାର ଭିତ୍ତିଭୂମି ଧସିଗଲା ଏବଂ ସେହି ସ୍ଥାନରେ ଅନ୍ୟ ଚିନ୍ତା, ଅନ୍ୟ ଭାବ ଅନ୍ୟ ବିଚାର ମୁଣ୍ଡଟେକିଉଠିଲା । ଜେଲରୁ ମୁକ୍ତିପାଇବାବେଳକୁ ମୁଁ ଯେଉଁ ମାନସିକ ଅବସ୍ଥା ଘେନି ଫେରିଲି ତାହା କାରାବରଣ କରିବା ବେଳଠାରୁ ଯେ ସମ୍ପୂର୍ଣ୍ଣ ପୃଥକ୍ ଏହା ନିଃସନ୍ଦେହଭାବେ ମୁଁ ବୁଝିପାରିଥିଲି ।

# ପରିବର୍ତ୍ତିତ ପରିଣତି

ହଜାରୀବାଗ କେନ୍ଦ୍ର ଜେଲରୁ ମୁକ୍ତହେଲୁଁ ସେଦିନ ଟିକିଏ ସନ୍ଧ୍ୟା ପୂର୍ବରୁ । ଫଗୁଣ ବସନ୍ତର ଚାରିଆଡ଼େ କଅଁଳ ପଲ୍ଲବଶୋଭିତ ବନଭୂଇଁ, ତହିଁରେ ପଡ଼ିଥିଲା ବାସନ୍ତୀ ଅସ୍ତଗାମୀ ରକ୍ତାଭ ରବି କିରଣ । ନାନାଜାତି ବନଫୁଲର ପ୍ରଗାଢ଼ ସୌରଭ ସୁଲଭ ଥିଲେ ମଧ୍ୟ ଅତି ମୃଦୁ ମୃଦୁ ବାରିହେଉଥିଲା ଯାନର ଦୁର୍ଗନ୍ଧରେ ବିକୃତ ହୋଇ । ଏକେତ ମୁଁ ଦୂରେଇ ହୋଇଯାଉଥିବା ଜେଲଖାନାର ସ୍ମୃତିରେ ମ୍ରିୟମାଣ ଥିଲି ଏବଂ ଗତିକରୁଥିଲି ଏକ ଅନାଶ୍ୱସ୍ତି ଦିଗରେ, ଦ୍ୱିତୀୟତଃ ଜେଲରେ ରହିବା ସମୟ ସଂକ୍ଷେପ ହୋଇଯିବା ଯୋଗୁଁ କେତେ କଳ୍ପନାଜଳ୍ପନାର ଗତି ହଠାତ୍ ବଦଳିଗଲା ଓ ମୁଁ ଅନୁଭବ କଲି ଏକ ଅନିଶ୍ଚିତ ଭବିଷ୍ୟତ୍ ଦିଗରେ ଟାଣିହୋଇଯିବାପରି । ସଙ୍ଗୀ ବନ୍ଦୀମାନଙ୍କ ଆନନ୍ଦ କୋଳାହଳରେ ଯୋଗଦେଇପାରିଲିନାହିଁ କିମ୍ବା ବିଜୟ ସ୍ଲୋଗାନ୍ ଉଚ୍ଚାରଣ କରିପାରିଲିନାହିଁ– ଉଚ୍ଚସ୍ୱରରେ ଡାକିବା ତ ଦୂରର କଥା । ସେପର୍ଯ୍ୟନ୍ତ ଶୀତଦିନ ହଜାରୀବାଗ ଅଞ୍ଚଳରେ ଥାଏ ଏବଂ ସଂଧ୍ୟା ପରେ ଦୁରନ୍ତ ଶୀତ ମାଡ଼ିଆସିବାବେଳକୁ ମୋ ପାଖରେ ନିଜର ଯଥେଷ୍ଟ ଲୁଗା ନଥିଲା, ଗରମଲୁଗା ତ ଚିନ୍ତାର ଅତୀତ । ରେଳଷ୍ଟେସନ୍‌ରେ ବସ୍ ଲାଗିଲା ଏବଂ ରେଳ ଧରିବାକୁ ଦୁଇତିନି ଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା । ସେହି ସମୟଟିରେ ସବୁ ବିଶ୍ଳେଷଣ କରି ଚିନ୍ତାକରିବାକୁ ଯଥେଷ୍ଟ ସୁଯୋଗ ପାଇଲି । ଅନ୍ୟମାନେ ଇତ୍ୟବସରରେ ରେଳ ଛାଡ଼ପତ୍ର ଇତ୍ୟାଦି ଆବଶ୍ୟକମତେ ହସ୍ତଗତ କରିନେଲେ, ମୋପାଇଁ ମଧ୍ୟ ।

ପୂର୍ବରୁ ଶ୍ରୀ ଉଦୟନାଥ ମହାନ୍ତିଙ୍କ କଥା ଲେଖିଛି । ମୁଁ ଆସିବା ତାଙ୍କୁ ମଧ୍ୟ କମ୍ ବାଧିନଥିଲା । ସେ ଜେଲଦ୍ୱାରପର୍ଯ୍ୟନ୍ତ ବଳାଇଦେବାକୁ ଆସି ଅଶ୍ରୁପୂର୍ଣ୍ଣ ନେତ୍ରରେ ମୋତେ ବିଦାୟ ଦେବାବେଳେ ମୋ ହାତରେ ଦୁଇଟି ଶହେଟଙ୍କା ନୋଟ ଗୁଞ୍ଜିଦେଇ କହିଲେ, ''କ୍ଷମାକରିବେ, ଆପଣଙ୍କୁ ଖବର ଦେଇପାରିନାହିଁ । ଏ ଟଙ୍କା ଆପଣଙ୍କ ଘରୁ ପଠାଯାଇଥିଲା । ଦରକାର ନଥିବାରୁ ମୁଁ ଖବର ଦେଇନଥିଲି– କାଳେ ଖର୍ଚ୍ଚ କରିପକାଇବେ ବୋଲି ।'' ଅବଶ୍ୟ ମୁଁ ଟିକିଏ ଦ୍ୱିଧା ବୋଧକଲି, କାରଣ ମୁକ୍ତି ଏଡ଼େ ଅତର୍କିତଭାବେ ହେଲା ଯେ ଘରେ ଏ ବିଷୟ ଜାଣିନଥିବେ । ଆଗରୁ ଟଙ୍କା ପଠାଇବାପାଇଁ ମୋର କୌଣସି ନିର୍ଦ୍ଦେଶ ନଥିଲା । ଯାହାହେଉ ସରଳବିଶ୍ୱାସରେ ଟଙ୍କା ଗ୍ରହଣକଲି । କିନ୍ତୁ ଯେତେବେଳେ ଘରେ ଆସି ବୁଝିଲି କେହି ଟଙ୍କା ପଠାଇନାହାନ୍ତି, ତେତେବେଳେ ଏହା ଶ୍ରୀ ଉଦୟବାବୁଙ୍କ କାରସାଜି ବୋଲି ଜାଣିବାକୁ ବାକିରହିଲାନାହିଁ ।

ଏତେଟା କାହିଁକି ? ମାନବିକତା ମଧ୍ୟରେ ଏପରି ଦେବୋପମ ସ୍ନେହ, ଔଦାର୍ଯ୍ୟ ଓ ମମତାର ସୁଲଭତା ଥାଉଁ ଥାଉଁ ମନୁଷ୍ୟ ଏହାର ବିପରୀତ ଦିଗରେ କିପରି ଅଗ୍ରସର ହୋଇପାରେ ? ଏ ପ୍ରଶ୍ନ କଣ ଚିରକାଳ ଏହିପରି ଅମୀମାଂସିତ ରହିବ ? କିନ୍ତୁ ମୀମାଂସା ନହେବାଯାଏ ମାନବର ସାଧନା ଅନିବାର୍ଯ୍ୟ ହୋଇରହିଥିବ । ମାନବର ଏହାହିଁ ସ୍ୱପ୍ନ, ବିଶ୍ୱନିକଟରେ ମାନବର ଏହାହିଁ ଯାଚଞ୍ଚା ।

ଦୀର୍ଘ ରେଳପଥ ଭ୍ରମଣ ମଧ୍ୟରେ ଭାବୀ ଭାରତର ସ୍ୱପ୍ନ ମୋତେ ଘାରିରଖିଥିଲା । ଲର୍ଡ଼ ଆରଉ୍‌ଇନ୍‌ଙ୍କ ସହିତ ଗାନ୍ଧିଜୀଙ୍କର ଯାହା ଯେପରି ବୁଝାମଣା ହେଉନା କାହିଁକି ତହିଁରେ ଆସମୁଦ୍ର ହିମାଚଳ ଭାରତବର୍ଷର ଅଖଣ୍ଡ ଐକ୍ୟ ଓ ଏକାତ୍ମତା କଦାପି ଏ ପରିସ୍ଥିତିରେ ରକ୍ଷାହୋଇପାରିବନାହିଁ । ବିରାଟ ଦେଶ ଭାରତବର୍ଷ, ବିପୁଳ ତାର ଲୋକବଳ, ବିଚିତ୍ର ତାର ବହୁଭାଷୀ ଲୋକସମଷ୍ଟି । ଦୀର୍ଘ ପରାଧୀନତାର ଅଭିଶାପ ଏ ବିରାଟ ଦେଶର ଜନଜୀବନ ମଧ୍ୟରେ ନାନାବିଧ ସମସ୍ୟା ସୃଷ୍ଟିକରିବସିଛି । ଗୋଟିଏ ଦିଗରେ ବୈଦେଶିକ ଶକ୍ତିର ଆକ୍ରମଣାତ୍ମକ ଚାପ, ଅନ୍ୟ ଦିଗରେ ନାନା ପ୍ରାଦେଶିକତା, ମିତ୍ର ରାଜ୍ୟଗୋଷ୍ଠୀ, ସାମ୍ପ୍ରଦାୟିକତା ଇତ୍ୟାଦି ବିଭେଦପ୍ରବଣତାର ପ୍ରବଳ ଖଳ ପ୍ରଚେଷ୍ଟା ଫଳରେ ଜାତୀୟ ଏକାତ୍ମବୋଧର ଶ୍ୱାସରୁଦ୍ଧ ଅବସ୍ଥା ଅଖଣ୍ଡ ଜାତିସତ୍ତାକୁ ବିକଳାଙ୍ଗ କରିରଖିଛି । ତଥାପି ଏହି ସମସ୍ତ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ଭାରତର ମୌଳିକତା ଅବିକୃତ ରହିଛି । ସେହି ମୌଳିକତାକୁ ଆବିଷ୍କାର କରି, ତାକୁଇ ଆଶ୍ରୟ କରିଛି ଗାନ୍ଧିଜୀଙ୍କ ନୈତିକ ସଂକଳ୍ପ । ସେ ସମ୍ପଦ କେବଳ ଭାରତବର୍ଷର ନୁହେଁ– ସମଗ୍ର ଏସିଆ ମହାଦେଶର ସ୍ୱାଧୀନତାର ପ୍ରାଣକେନ୍ଦ୍ରଭାବେ ଭାରତବର୍ଷର ଅଗ୍ରଗତି ପ୍ରଚ୍ଛନ୍ନ । ବିଶ୍ୱରାଷ୍ଟ୍ରପୁଞ୍ଜ ମଧ୍ୟରେ ବୃହତ୍ତମ ଗଣତନ୍ତ୍ରୀ ରାଷ୍ଟ୍ରଭାବେ ଭାରତର ସ୍ଥାନ ସୁପ୍ରତିଷ୍ଠିତ ହେବାରେ ବିଳମ୍ବ ଘଟିପାରେ ସତ; କିନ୍ତୁ ଧନ ଓ ଅସ୍ତ୍ରବଳରେ ବହୁଗୁଣ ଶକ୍ତିଶାଳୀ ଇଂଲଣ୍ଡ ଯେ ସ୍ୱାଧୀନ ଭାରତବର୍ଷର ବନ୍ଧୁତ୍ୱର ମୂଲ୍ୟ ନବୁଝିବ କିମ୍ବା ଆନ୍ତର୍ଜାତିକ କ୍ଷେତ୍ରରେ ଭାରତବର୍ଷର ବିଶିଷ୍ଟ ଭୂମିକା ପ୍ରତି ଅଧିକ କାଳ ଉଦାସୀନ ରହିପାରିବନାହିଁ, ଏ ଆତ୍ମବିଶ୍ୱାସ ଗାନ୍ଧିଜୀଙ୍କର ଥିଲା ଏବଂ ସେହି ସ୍ତରରେ ବହୁ ନିଷ୍ଠାବାନ କର୍ମୀ ବିଶ୍ୱାସ ମଧ୍ୟ କରୁଥିଲେ । ଆର୍ଥିକ ଓ ସାମାଜିକ ତ୍ରୁଟି ବିଷୟରେ ଭାବିବାବେଳକୁ ଚାରିଆଡ଼ ଅନ୍ଧକାରାଚ୍ଛନ୍ନ ଦିଶୁଥିଲା ସତ; କିନ୍ତୁ ଆସନ୍ନ ସ୍ୱାଧୀନତାର ଯେଉଁ ଉଦୟାଲୋକରେ ଚିନ୍ତାଧାରା ଉଦ୍ଭାସିତ ହୋଇଉଠୁଥିଲା, ତହିଁରେ ସେ ଅନ୍ଧକାରର ଅସ୍ତିତ୍ୱ ତିଳେହେଲେ ଉପଲବ୍ଧି ହେଉନଥିଲା ।

ମୁଁ ହଜାରୀବାଗ ଚାଲାଣ ହେଉଥିବାବେଳେ ବର୍ଷାଋତୁର ମଧ୍ୟଭାଗ । ମ୍ରିୟମାଣ ମନର ଜଡ଼ତା ଘେନି ସ୍ୱଦେଶରୁ ବାହାରକୁ ଯାଉଥିଲି । ଆଜି ଫେରୁଚି ବସନ୍ତର ଉଦ୍ଭାସିତ ପ୍ରକୃତି ପରିବେଶ ସାଙ୍ଗକୁ ସ୍ୱାଧୀନତାର (?) ଅଭୂତପୂର୍ବ ଅଭିଜ୍ଞତାର

ବାହକଭାବେ । ତେଣୁ ଯେଉଁଆଡ଼େ ଅନାଇଲେ ଖେଳିଯାଉଚି ହିରଣ୍ମୟ ଜ୍ୟୋତି ରଞ୍ଜିତ ଦିଗ୍‌ବଳୟ ବ୍ୟାପୀ ଲହରୀମାଳା । ଏହା ଯେ ସ୍ୱୀୟ ଚିତ୍ତର ବିଳାସ ଏବଂ ପ୍ରକୃତିର ବିକୃତ ପ୍ରତିଭାସ ମାତ୍ର, ତାହା ବେଶ୍ ବୁଝିହେଉଥିଲେ ମଧ୍ୟ ସାର୍ଥକତା ବା ଚରିତାର୍ଥତା ହୃଦୟଙ୍ଗମ କରିବା ସ୍ତରରୁ ଅବତରଣ କରିହେଉନଥିଲା । କଟକ ଷ୍ଟେସନର ଯେତେ ନିକଟବର୍ତ୍ତୀ ହେଉଥିଲି, ତେତେ ଅଧିକ ଏହି ରାଜନୈତିକ କୃତିତ୍ୱ ମୋତେ ଘାରିରଖିଥିଲା ଏବଂ ରେଳରୁ ଓହ୍ଲାଇଲାବେଳକୁ ଯେତେବେଳେ କଟକ ସହର ଜନତା ଆମ୍ଭମାନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କରିନେଲେ, ତେତେବେଳେ ହଜାରୀବାଗର ସମସ୍ତ ଗ୍ଳାନି ମୋ ପକ୍ଷରେ ମ୍ଳାନ ହୋଇଯାଇଥିଲା ।

କଟକକୁ ଫେରିଆସି ସବୁ କର୍ମୀମାନେ ଏକତ୍ରିତ ହେଲେ । ସାରା ଉତ୍କଳର ମୁଖିଆ କର୍ମୀ ଯେ ଯେଉଁଠି ଥିଲେ ଚଉଧୁରୀବଜାରସ୍ଥ ଜୈନ ମନ୍ଦିରରେ ବସି ଭବିଷ୍ୟତ୍ କର୍ମପନ୍ଥା ନିରୂପଣ କଲେ । ସେତେବେଳେ ସ୍ୱରାଜ୍ୟାଶ୍ରମ ଆମ୍ଭମାନଙ୍କ ହାତରେ ନଥିଲା । ବ୍ୟକ୍ତିଗତ ସମ୍ପତ୍ତିଭାବେ ଜଣେ ବ୍ୟକ୍ତିଙ୍କର ଥିବାରୁ ସେ ଆମ୍ଭମାନଙ୍କ କାରାବାସ କାଳରେ ହସ୍ତଗତ କରିନେଇଥିଲେ । ଅବଶ୍ୟ ପରେ ବହୁ ଘାତ-ପ୍ରତିଘାତ ଓ ଘଟନାବହୁଳ ଉଦ୍ୟମରେ ହସ୍ତରୁ ହସ୍ତାନ୍ତରିତ ହୋଇ ହୋଇ ସର୍ବଶେଷରେ ଦୀର୍ଘ ପାଞ୍ଚ ସାତବର୍ଷ ପରେ ସ୍ୱାଧୀନତା ସମରର ସ୍ମୃତିବିଜଡ଼ିତ ଶିବିରଭାବେ ଏହା ଆମ୍ଭମାନଙ୍କର ହସ୍ତଗତ ହେଲା । କିନ୍ତୁ ଆମ୍ଭେମାନେ ଜେଲରୁ ଫେରିଲାବେଳେ ତାହା ଆଉ ଆଶ୍ରୟସ୍ଥଳ ହୋଇପାରିଲାନାହିଁ । ତଥାପି ଏହି ଐତିହାସିକ ସ୍ଥାନକୁ ଫେରାଇଆଣିବାକୁ ଆମେ ସମସ୍ତେ ଏକମତ ଥିଲୁଁ । କାରଣ ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀ ଏହାର ଗୋଟିଏ ପ୍ରକୋଷ୍ଠରେ ଜନ୍ମଲାଭକରିଥିଲେ । ସ୍ୱର୍ଗୀୟ ଗୋପବନ୍ଧୁ ଦାସ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲାବେଳେ ଏହିଠାରେ ଦଳବଳ ସହ ଅବସ୍ଥାନ କରୁଥିଲେ । ମହାତ୍ମାଗାନ୍ଧିଜୀଙ୍କ ଓଡ଼ିଶାରେ ପ୍ରଥମ ପଦାର୍ପଣ ଥର ଏହି ଐତିହାସିକ ପୀଠରେ ସେ ଗୋଟିଏ ଦିନ ଯାପନ କରିଥିଲେ । ଆଇନଭଙ୍ଗ ତଦନ୍ତ କମିଟିର ସଭ୍ୟଭାବେ ସ୍ୱର୍ଗୀୟ ପଣ୍ଡିତ ମୋତିଲାଲ ନେହେରୁ, ଭିଟଲଭାଇ ପଟେଲ, ରାଜଗୋପାଳାଚାରୀ, ଡକ୍ଟର କିଚଲୁ ଓ ଡାକ୍ତର ସେରଓ୍ୱାନୀ ପ୍ରମୁଖ ନେତୃବୃନ୍ଦ ଏଠାରେ ଦିନଟିଏ ଅବସ୍ଥାନ କରି ଏହାର ଗୁରୁତ୍ୱ ବଢ଼ାଇଥିଲେ । ଆଶ୍ରମବାସୀ ଓ ବାନରସେନାଙ୍କ ଉପରେ ପୁଲିସ ପକ୍ଷରୁ ଅକଥନୀୟ ଅତ୍ୟାଚାର ବହୁବାର କଟକରେ ଉତ୍ତେଜନା ସୃଷ୍ଟିକରିଥିଲା । ତେଣୁ କଟକ ସ୍ୱରାଜ୍ୟାଶ୍ରମ ଓଡ଼ିଶା ସ୍ୱାଧୀନତା ସଂଗ୍ରାମର ତୀର୍ଥଭାବେ ଆମ୍ଭମାନଙ୍କ ନିକଟରେ ଗୁରୁତ୍ୱପୂର୍ଣ୍ଣ । ଜେଲରୁ ଫେରି ସେଠାରେ ସ୍ଥାନ ନପାଇବା ଆମ ସମସ୍ତଙ୍କ ମନରେ ନୈରାଶ୍ୟ ସଞ୍ଚାର କଲା; କିନ୍ତୁ ସାମୟିକ ଉତ୍ତେଜନା ଫଳରେ କାଳେ ଗାନ୍ଧିଜୀଙ୍କ କଳ୍ପିତ ଆବଶ୍ୟକ ହେଉଥିବା ଶାନ୍ତିଶୃଙ୍ଖଳାମୟ

ବାତାବରଣ ଦୂଷିତ ହୋଇଉଠିବ, ସେଥିପାଇଁ ସମସ୍ତେ ଧୈର୍ଯ୍ୟର ସହିତ ସଂଗଠନରେ ଲାଗିଗଲୁ । ସମସ୍ତେ ଏକମତ ହେଲୁଁ ଆଗାମୀ କଂଗ୍ରେସ ଅଧିବେଶନ ଉତ୍କଳରେ ବସାଇବାକୁ ଏବଂ ସେଥିପାଇଁ ଯଥୋଚିତ ଅନୁମତି ଇତ୍ୟାଦି ତୁଙ୍ଗମହଲରୁ ଲାଭକରିବା-ପାଇଁ ଗୋଟିଏ ସମିତି ଗଠନ କରି ସ୍ୱ ସ୍ୱ କର୍ମକ୍ଷେତ୍ରକୁ ଫେରିଗଲୁ ।

କାରାବାସ ସମୟରେ 'କୁଜଙ୍ଗ ଚିତ୍ର' ନାମରେ ଖଣ୍ଡିଏ ଛୋଟ କାବ୍ୟ ଲେଖିଥିଲି । ଶ୍ରୀ ରାଜକୃଷ୍ଣବୋଷଙ୍କ ପରିଚାଳିତ ପ୍ରେସରେ ଯନ୍ତ୍ରସ୍ଥ କରି ମୁଁ ଯଥାସମ୍ଭବ ଶୀଘ୍ର ବଣିକୁଦ ଓ ପାରାଦ୍ୱୀପ ଅଭିମୁଖରେ ଯାତ୍ରାକଲି । ବୋଲିବା ବାହୁଲ୍ୟ ତାହା ନକରିଥିଲେ ମୁଁ ଯେ ଇତ୍ୟବସରେ କବି ପାଲଟିଥିଲି ଓ ସୈନିକସୁଲଭ ନିରସ ହୃଦୟମରୁରେ ରସ ମନ୍ଦାକିନୀର ସୃଷ୍ଟି ହୋଇଥିଲା ଏହା ପ୍ରମାଣିତ କରିବି କିପରି ? ସେ ଯାହାହେଉ, ସେଦିନ ମୋର ଗସ୍ତକ୍ରମ ନିର୍ଦ୍ଦିଷ୍ଟ ହୋଇଥିଲା କଟକରୁ ପାରାଦ୍ୱୀପ, ଆୟୋଜିତ ହୋଇଥିଲା କୁଜଙ୍ଗ କୈବର୍ତ୍ତ ଶ୍ରେଣୀ ପକ୍ଷରୁ । କଟକରୁ ବାହାରିବାକୁ ଟିକିଏ ବିଳମ୍ବ ଘଟିଲା । ତଥାପି ଠିକ୍ ବାରଟା ବେଳେ କଟକ ଛାଡ଼ି ବଣିକୁଦରେ ତିନିଟା ବେଳକୁ ପହଞ୍ଚି ଦେଖିଲି ସମସ୍ତ ଦିନର ଖରା ଭୋଗକରି ଦୁଇତିନିହଜାର ଲୋକ ଅପେକ୍ଷା କରିଛନ୍ତି ମୋତେ ଦେଖିବାକୁ । ମୁଁ ସେଥିପାଇଁ ମୋଟେ ପ୍ରସ୍ତୁତ ନଥିଲି । କାରଣ ମା'ଙ୍କୁ ଦେଖି କୁଜଙ୍ଗ ହାଟ ସଭାରେ ଯୋଗଦେବା ମୋର ଥିଲା ଲକ୍ଷ୍ୟ । ମଟର ଶବ୍ଦ ଶୁଣିବାମାତ୍ରେ କିଏ କେଉଁଠି ଥିଲେ ମାଡ଼ିଆସିଲେ ଓ ମୁଁ ଗାଡ଼ି ବନ୍ଦକରି ଓହ୍ଲାଇବାମାତ୍ରେ ମୋତେ ବିବ୍ରତ କରିପକାଇଲେ ଆଲିଙ୍ଗନଦ୍ୱାରା । ସାଧାରଣତଃ ମୋତେ ଦେଖିଲେ ଆବାଳ-ବୃଦ୍ଧ ସମସ୍ତେ ଭୂମିଷ୍ଠ ପ୍ରଣାମ କରନ୍ତି, କାରଣ ମୁଁ ସେମାନଙ୍କର ପୂଜ୍ୟ ଜମିଦାର । କିନ୍ତୁ ସେଦିନ ଗୋଟିଏ ପ୍ରଣାମ କାହାର ମନେପଡୁନାହିଁ । କୋଳାଗ୍ରତ, ଆଲିଙ୍ଗନ, ବୋଧହୁଏ ହୃଦୟ ଚିରି ତହିଁରେ ମୋତେ ପୂରାଇ ରଖିବାର ପ୍ରବଳ ଚେଷ୍ଟା । ଏତେ ଲୋକଙ୍କୁ ତ ପୁଣି କିଛି କହିବି— କିନ୍ତୁ ବାଷ୍ପରୁଦ୍ଧ କଣ୍ଠ, ଛଳ ଛଳ ଆଖି— ଏ ଦୁର୍ଗତିରେ ମୁଁ ଯେ କେବେ କିଛି କହିଜାଣେନା । ମୁଁ ବିଷୋଦ୍‌ଗାରଣ କରିଜାଣେ, ମୁଁ ବର୍ଣ୍ଣନା କରିଜାଣେ ଭାରତମାତା କାମଧେନୁ ଇଂରେଜ କିପରି ଦୋହନ କରୁଛି । ଭାରତ ଭୂଗର୍ଭରେ କେଉଁଠି ତୈଳ, କେଉଁଠି କୋଇଲା, କେଉଁଠି ମାଇକା, କେଉଁଠି ମାଙ୍ଗାନିଜ, କେଉଁଠି ସୁନା ଇତ୍ୟାଦି ଖୋଜି ଇଂରେଜ କିପରି ଆହରଣ କରେ, ଆମ୍ଭେମାନେ କିପରି ମୂକସାକ୍ଷୀ ହୋଇ ଜୀବନଲକ୍ଷ୍ମୀଙ୍କ ଆରାଧନାରେ ବ୍ୟସ୍ତ ଓ ଭାଗ୍ୟଲକ୍ଷ୍ମୀ ଇଂରେଜଙ୍କ କବଳରେ କବଳିତ; କିନ୍ତୁ ଆଜି ସ୍ୱାଧୀନତା ଆସନ୍ନ ପ୍ରାୟ । ଏତେବେଳେ ସେସବୁ ଆଉ ବର୍ଣ୍ଣନାର ବେଳ ନୁହେଁ । କାରଣ ସ୍ୱାଧୀନତା ସେତେବେଳକୁ ମିଳିନଥିଲେ ମଧ୍ୟ ଲୋକଙ୍କ ମନରେ ବଦ୍ଧମୂଳ ଧାରଣା ହୋଇଛି— ମିଳିଛି ବୋଲି— ନଚେତ୍ ଜେଲଦ୍ୱାର ଖୋଲିଯାନ୍ତା କିପରି ? ଲୋକଙ୍କ ଧାରଣାକୁ ଭାଙ୍ଗିବା ଆମର ମଧ୍ୟ କାମନୁହେଁ, ବରଂ

ଜନତା ଧାରଣାରେ ପ୍ରତିବାଦ ନକରିବା ଆମ କର୍ତ୍ତବ୍ୟ । ସ୍ୱଚ୍ଛ ଧର୍ମବିଷୟ ମନକୁ ଯେପରି ମହତ୍ ଭୟରୁ ତ୍ରାଣକରେ, ସ୍ୱାଧୀନତାର ଯେକୌଣସି ପ୍ରକାର ଧାରଣା ମଧ୍ୟ ଆମ ପକ୍ଷରେ କାମ୍ୟ । ତେଣୁ ଯେଉଁ ପରିପ୍ରେକ୍ଷୀରେ ବ୍ରିଟିଶ ଶାସନର କଠୋର ଓ ନିଷ୍ଠୁର ସମାଲୋଚନା କରାଯାଉଥିଲା, ତାହାର ଧାରା ସ୍ୱତଃ ବଦଳିଗଲା ଏବଂ ତାହାସବୁ ଏଣିକି ଚର୍ବିତଚର୍ବଣ ପରି ବିକୃତ ଲାଗିଲା । ନୂତନଭାବରେ ଉଦ୍‌ବୁଦ୍ଧ କରିବାପାଇଁ ଗ୍ରାମ୍ୟ ସମାଜ ସଙ୍ଗଠନର ନାନାମୁଖୀ ପ୍ରଚେଷ୍ଟା, କୃଷି ଓ ସଭ୍ୟତାବିଷୟକ ବକ୍ତୃତାମାନ ଚାଲିଲା ଏବଂ ଭାରତର ସ୍ୱାଧୀନତା ହେବ ଗ୍ରାମକେନ୍ଦ୍ରୀ ଓ ଦେଶର ସାମାଜିକ ପ୍ରାଣଶକ୍ତିକୁ ଅବ୍ୟାହତ ରଖିବା ହେବ ଭାରତର ଚିରନ୍ତନ ସାଧନା ।

ସେଦିନ କୁଜଙ୍ଗ ହାଟରେ ଖରିଦ ବିକ୍ରିରେ ପ୍ରାୟ କାହାର ମନ ନଥିଲା । ସମସ୍ତେ ଉତ୍‌କର୍ଣ୍ଣ ହୋଇ ରହିଥିଲେ ମଟର ଶବ୍ଦ ଶୁଣିବାକୁ । ଟିକିଏ ଦିନଥାଇଁ ସେଠାରେ ପହଞ୍ଚିଲାବେଳକୁ ଅଗଣିତ ଜନତା ଅପେକ୍ଷା କରି ରହିଥିଲେ । ସମସ୍ତେ ଭାବିଥିଲେ ମୁଁ ଯେପରି ଜେଲକୁ ଗଲାବେଳେ ଅଞ୍ଚଳକୁ ଉତ୍ତେଜିତ କରି ରଖିଥିଲି ଏବଂ ଯେଉଁ ଅବସ୍ଥା ମୋ ଅନୁପସ୍ଥିତି ଯୋଗୁଁ ଶିଥିଳ ହୋଇଯାଇଥିଲା, ତାହା ପୁଣି ଦ୍ୱିଗୁଣିତ ହେବବୋଲି । କିନ୍ତୁ ମୁଁ ଯେତେବେଳେ କହିଲି ଉତ୍ତେଜନାର ଆଉ ସ୍ଥାନ ନାହିଁ କିମ୍ବା ଉତ୍ତେଜନାର ବଶବର୍ତ୍ତୀହେଲେ ଫଳ କ୍ଷଣସ୍ଥାୟୀ ହେବାର ଆଶଙ୍କା ଅଛି, ସେତେବେଳେ ଲୋକେ ବୁଝିଲେ ଦେଶର ଆତ୍ମଶକ୍ତିର ଉଦ୍‌ବୋଧନ ବ୍ୟତୀତ ଗ୍ରାମ୍ୟଜୀବନ ପୁନର୍ଜୀବିତ ହେବନାହିଁ । ଭାରତର ଶକ୍ତିର ଭିତ୍ତି ହେଲା ଗ୍ରାମ । ସେଠାରୁ ଦାରିଦ୍ର୍ୟ, ଅଜ୍ଞାନ, ଅସ୍ୱାସ୍ଥ୍ୟକୁ ନିର୍ବାସିତ ନକଲେ ସ୍ୱାଧୀନତାର ମୂଲ୍ୟ କିଛିନୁହେଁ । ତେଣୁ ସଂଗ୍ରାମ ସ୍ଥାନରେ ସଙ୍ଗଠନ ଓ ଆକ୍ରମଣ ସ୍ଥାନରେ ଆତ୍ମୋନ୍ନତିର ନୂତନ ପ୍ରେରଣା ଲୋକଙ୍କ ମନରୁ ବିପ୍ଳବର ଛାୟା ଲିଭାଇଦେଲା ଏବଂ ଶ୍ରୋତାମାନେ ମୋର ସେହି ସମୟର ସଂଗଠନାତ୍ମକ ଭାଷଣଗୁଡ଼ିକ ସମୟୋପଯୋଗୀ ହୋଇଥିବା ପ୍ରକାଶ କଲେ ।

ସେଦିନ ପାରାଦ୍ୱୀପରେ ପହଞ୍ଚିବାବେଳକୁ ରାତି ଦଶଟା ପାଖପାଖି ହୋଇଥିଲା । ତଥାପି ଯେଉଁମାନେ ଛଅମାଇଲ ଦୂରସ୍ଥ ହାଟ ପାଖକୁ ଆସିପାରିନଥିଲେ ସେପରି ସହସ୍ରାଧିକ ଲୋକ ଅଭ୍ୟର୍ଥନା କରିବାକୁ ସଜାଗ ହୋଇ ରହିଥିଲେ । ତୋରଣାଦି ସାଜସଜ୍ଜା ସାଙ୍ଗକୁ ଏଠାରେ ମହିଳାମାନଙ୍କ ସମାଗମ ନିଶ୍ଚୟ ଅଧିକ ହେବାର କଥା— ପାରାଦ୍ୱୀପ ରାଣୀଙ୍କ ନେତୃତ୍ୱରେ । ଯେଉଁଠି ସ୍ନେହ ସଦ୍‌ଭାବ ବେଶି ଥାଏ, ସେଠାରେ ଶତ୍ରୁତା ମଧ୍ୟ ବେଶି ଥାଏ । ପୂର୍ବର ଚଞ୍ଚଳ, ଚୁଙ୍ଗୁଚୁଙ୍ଗିଆ ସ୍ୱଭାବ ମୋର ଟିକିଏ ଅଭିଜ୍ଞତା, ବହୁଦର୍ଶିତା ଫଳରେ ବିଶେଷତଃ କଥାଭାଷା, ଚାଲିଚଲଣ ବଦଳିଯିବାର କଥା । ଗାମ୍ଭୀର୍ଯ୍ୟ ଉଦାସୀନତା ଇତ୍ୟାଦି ଲକ୍ଷ୍ୟକରି ଲୋକେ ଯେପରି ପ୍ରଶଂସା କଲେ, ଶତ୍ରୁଭାବାପନ୍ନ ଲୋକେ କହିବାକୁ ଛାଡ଼ିଲେନାହିଁ— ଜେଲଖାନାରେ ଯବତ୍ ହୋଇ

ଆସିଛି— ଆଉ ସେ ଦିମାକ୍ ନାହିଁ— ହୁଃ, ବ୍ରିଟିଶ ସରକାର ଖାଲି ହେଇଚି, ଆଉ ପାଟି ଫିଟିବନା ? ଏହିପରି କେତେକଣ ଶୁଣିବାକୁ ମଧ୍ୟ ମିଳିଲା । କେବଳ ଜେମାଙ୍କ ମତିଗତି ବିଷୟରେ ବର୍ଷଣୋନ୍ମୁଖ ମେଘପରି ସମସ୍ତେ କହିବାକୁ ମଧ୍ୟ ବ୍ୟାକୁଳ ଥିଲେ । କେହି କହିବାକୁ ସୁବିଧା ପାଇଲେନାହିଁ କିମ୍ବା ମୁଁ ଶୁଣିବାକୁ ସାହସ କଲିନାହିଁ— କାଳେ ବିପର୍ଯ୍ୟୟକର ସମ୍ବାଦ ହୋଇଥିବ ବୋଲି । କିନ୍ତୁ ମୋ ଧାରଣା ଭୁଲ ଜାଣିଲି ଯେତେବେଳେ ସମସ୍ତଙ୍କ ହର୍ଷୋତ୍‌ଫୁଲ୍ଲ ମୁହଁରେ ଆଶାରେଖା ରଞ୍ଜିତ ଇଙ୍ଗିତମାନ ଖୁବ୍ ସାବଧାନତା ସହିତ ଲକ୍ଷ୍ୟ କରିପାରିଲି । ବିଶେଷତଃ ଜେମାଙ୍କୁ ସମସ୍ତଙ୍କ ସହିତ ସ୍ୱାଭାବିକଭାବେ ଦେଖିବାକୁ ନପାଇ ଖୋଜି ବାହାରକରି ଦେଖିବାକୁପଡ଼ିଲା । ସେ ଯେତେବେଳେ ଆସି ମୋତେ ଭୂମିଷ୍ଟ ପ୍ରଣାମ କଲେ, ତେତେବେଳେ ମୋର ହୃତ୍‌ସ୍ପନ୍ଦନ ଶେଷ ସୀମାରେ ପହଞ୍ଚିଥିଲା; କିନ୍ତୁ ଅନୁକୂଳ ଲକ୍ଷଣମାନ ଠଉରାଇବାକୁ ବେଶି ସମୟ ଲାଗିଲାନାହିଁ । ତେବେ ଏସବୁ ବିଷୟରେ ମୋର ଅଭିଜ୍ଞତା ନଥିବାରୁ ମୋ ଅନୁମାନ ଠିକ୍‌ବୋଲି ମଧ୍ୟ ଧରିନେଇପାରିଲିନାହିଁ । ଏହିପରି ଆଶା ନିରାଶାର ଦ୍ୱନ୍ଦ୍ୱ ଭିତରେ ଅଘଟଣ-ଘଟଣ-ପଟୀୟସୀ ଶକ୍ତିଙ୍କୁ ସ୍ମରଣ କରି କରି ପାରାଦ୍ୱୀପରେ ରାତ୍ରିଯାପନ କଲି ଏବଂ ପରଦିନଟି ସେଠାରେ କଟାଇବି ବୋଲି ସ୍ଥିର କରିବା ଛଡ଼ା ଅନ୍ୟ ଗତି ନଥିଲା । କାରଣ ମୋର ସମସ୍ତ ଅସ୍ତିତ୍ୱ କେନ୍ଦ୍ରୀଭୂତ ହୋଇଯାଇଥିଲା ଗୋଟିଏ ସିଦ୍ଧାନ୍ତ ଉପରେ ଯାହା ଉପରେ ନିର୍ଭର କରୁଥିଲା ମୋ ଜୀବନର ଭବିଷ୍ୟତ୍ ଗତି ।

କାରାମୁକ୍ତି ପରେ ନିଜ ବିଷୟରେ ଭାବିବାକୁ ସମୟ ପାଇଲି । ଆର୍ଯ୍ୟ ସଂସ୍କୃତି ବା ସଂସ୍କାରର ଚାରୋଟି ସୋପାନ ଯଥା— ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଯତିବ୍ରତ । ଯଦିଓ ପ୍ରତି ଗୃହସ୍ଥ ପକ୍ଷରେ ଏହା ପାଳନୀୟ, କିନ୍ତୁ ଏ ଯୁଗରେ ତାହା ପାଳନ କରିବା ହାସ୍ୟାସ୍ପଦ ବ୍ୟତୀତ ଆଉ କିଛି ହୋଇନପାରେ । ଅଭିଜାତ ସଂପ୍ରଦାୟ ସେହି ଲୋକଙ୍କୁ ବୁଝାଇବ ଯେଉଁମାନେ ଅକ୍ଷରେ ଅକ୍ଷରେ ନହେଲେ ମଧ୍ୟ ଏହି ଚାରିଗୋଟି ମଧ୍ୟରୁ ଅନେକଟା ପାଳନ କରୁଥିବେ । ଗାନ୍ଧୀ ଆରଉଇନ୍ ସନ୍ଧି ପରେ ଭାରତ ପକ୍ଷରେ ସ୍ୱାଧୀନତା ଲାଭ ଦିଗରେ କୌଣସି ସମସ୍ୟା ରହିବନାହିଁ— ଏହି ଆତ୍ମବିଶ୍ୱାସ ମୋର ହେଲା; ତେଣୁ ଆର୍ଯ୍ୟସଂସ୍କୃତି ବିଷୟକ ସୋପାନଗୁଡ଼ିକ ପାଳନ କରିବା ମୋର ଏକାନ୍ତ କର୍ତ୍ତବ୍ୟ ବୋଧହେଲା । ସେହିସବୁ ସୋପାନର ସମୟ ସୀମାର ଧାରଣା ହେଉଛି ତିରିଶବର୍ଷ ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ ୫୦ ବର୍ଷ ପର୍ଯ୍ୟନ୍ତ, ପଚସ୍ତରୀ ପର୍ଯ୍ୟନ୍ତ ବାନପ୍ରସ୍ଥ ଓ ତତ୍‌ପରେ ମୃତ୍ୟୁପର୍ଯ୍ୟନ୍ତ ଯତିବ୍ରତ । ଲେଖକର ତିରିଶବର୍ଷ ପୂର୍ଣ୍ଣ ହୋଇଥିବାରୁ ଗାର୍ହସ୍ଥ୍ୟ ଗ୍ରହଣକଲା ବିବାହ କରି । ୧୯୩୧ ମସିହା ଜ୍ୟେଷ୍ଠ ମାସରେ କୁଜଙ୍ଗର ଶେଷ ରାଜା ଜଗଦୀଶ କ୍ଷଣ୍ଡଙ୍କ ସାନଜେମା ରତ୍ନମାଳୀ ଜେମାଙ୍କ ସହ ମୋର ବିବାହ ହେଲା । ରାଜନୀତିରେ ପ୍ରତ୍ୟକ୍ଷ ଭାଗନେବା ପରିବର୍ତ୍ତେ ଗାର୍ହସ୍ଥ୍ୟ ଜୀବନ ଯାପନ ମଧ୍ୟରେ

କୌଣସି କୌଣସି ଅଞ୍ଚଳର ସମସ୍ୟା ସମାଧାନ କଲି କେତେକ ନିର୍ମାଣମୂଳକ କାର୍ଯ୍ୟରେ ହସ୍ତକ୍ଷେପ କରି । ତନ୍ମଧରେ ରୂପାଖଣ୍ଡି ଓ ବାଇଲ ଅଞ୍ଚଳର ଏକ ବିରାଟ ପୋଲ– ଯଦ୍ୱାରା ଗୋଟିଏ ଅଞ୍ଚଳରେ ଚିରସ୍ଥାୟୀ ମରୁଡ଼ି ଲୋପପାଇଲା । ତାପରେ ସେହି ନଦୀର ଉପର ଅଞ୍ଚଳରେ ପଣ୍ଡୁଆ ରାହାମା ପଥ ମଧରେ ସଂଯୋଗ ସଂପନ୍ନ କଲା ଆଉ ଗୋଟିଏ ପୋଲ । ଏହି ସମୟରେ ଗୋଟିଏ ପୁତ୍ର ୧୯୩୪ରେ ଲାଭହେଲା ଏବଂ ଲେଖକ ମନୋନିବେଶ କଲା ଶିକ୍ଷା-ଦୀକ୍ଷାରେ । ଯଦିଓ ରାଜନୀତିରୁ ଦୂରରେ ରହିବାକୁ ଇଚ୍ଛାକଲା କିନ୍ତୁ ରାଜନୀତି ତାକୁ ଛାଡ଼ିଲାନାହିଁ ।

୧୯୩୨ ମସିହାରେ ଗାନ୍ଧିଜୀ ହରିଜନମାନଙ୍କପାଇଁ ଅନଶନ ଆରମ୍ଭକଲେ । ସେଥିରେ ଉଦ୍‌ବୁଦ୍ଧ ହୋଇ ୧୯୩୩ ମସିହାରେ ମୋ ନେତୃତ୍ୱରେ ମୁଁ ପାରାଦ୍ୱୀପରେ ଥିବା ଶିବମନ୍ଦିର 'ପାରେଶ୍ୱର'ଙ୍କ ମନ୍ଦିରରେ ହରିଜନ ପ୍ରବେଶ କରାଇଲି । ଜଣେ ବ୍ରାହ୍ମଣ କଂଗ୍ରେସକର୍ମୀ ସେଥିରେ ପୂଜା କରିବାପାଇଁ ସମ୍ମତ ହେଲେ । ସମଗ୍ର ଭାରତରେ ହରିଜନମାନଙ୍କ ମନ୍ଦିର ପ୍ରବେଶ ଘଟଣାରେ ଏହା ହେଉଛି ପ୍ରଥମ । ଏଥିପାଇଁ ଅବଶ୍ୟ ଉଚ୍ଚଜାତିର ଲୋକଙ୍କଠାରୁ ମତେ ବହୁ ବାଧା ଦିଆହୋଇଥିଲା । ୧୯୩୪ରେ ଓଡ଼ିଶାର ପ୍ରଳୟଙ୍କରୀ ବନ୍ୟାଦ୍ୱାରା ସମସ୍ତ ହରିଜନ ଗୃହ ନଷ୍ଟହୋଇଯାଇଥିବା ସମ୍ବାଦ ଗାନ୍ଧିଜୀଙ୍କୁ ଦିଆଯିବାରୁ ସେ ପଦଯାତ୍ରା କରି ପ୍ରତ୍ୟକ୍ଷରେ ସବୁ ଦେଖିବା ପାଇଁ ସ୍ଥିରକଲେ । ପୁରୀ ମନ୍ଦିର ସମ୍ମୁଖରୁ ତାଙ୍କର ଐତିହାସିକ ପଦଯାତ୍ରା ଆରମ୍ଭ କଲେ ୧୯୩୪ ମସିହା ମେ ମାସ ନଅ ତାରିଖରେ । ମନ୍ଦିରରେ ହରିଜନ ପ୍ରବେଶ, ସୂତାକଟା ଆନ୍ଦୋଳନ, ବିଧବା ବିବାହ ଓ ଲୁଣମରା ଆନ୍ଦୋଳନ ଇତ୍ୟାଦିରେ ମୋର କାର୍ଯ୍ୟାବଳି ଶୁଣି ବହୁତ ଆନନ୍ଦିତ ହେଲେ । କଟକ ଜିଲ୍ଲାରେ ପଦଯାତ୍ରାରେ ଆମେମାନେ ଯୋଗଦାନକଲୁ । ଭଦ୍ରଖରେ ପଦଯାତ୍ରା ଶେଷପର୍ଯ୍ୟନ୍ତ ଆମ୍ଭେମାନେ ଗାନ୍ଧିଜୀଙ୍କ ସାଙ୍ଗରେ ରହିଲୁ । ଏହି ସମୟରେ ବାଳକାଟି ଗ୍ରାମ କଂସାରିମାନେ ତାଙ୍କୁ ଗୋଟିଏ କଂସାପାତ୍ର ଉପହାର ଦେଇଥିଲେ । ଗାନ୍ଧିଜୀଙ୍କ ଅବଶିଷ୍ଟ ପଦଯାତ୍ରା ସମୟରେ ସେହି କଂସାପାତ୍ରରେହିଁ ସେ ଖାଉଥିଲେ । ଗସ୍ତ ପରେ ତାଙ୍କର ବ୍ୟବହୃତ ପଦାର୍ଥ ନିଲାମ କରାହେଲା । ସେ ପାତ୍ରଟି ମହତାବଜୀ ବହୁ ମୂଲ୍ୟରେ କିଣିଲେ ।

୧୯୩୭ ମସିହାରେ ନବବାବୁ ତିର୍ତ୍ତୋଲରୁ ନିର୍ବାଚନ ଲଢ଼ିବାକୁ ସ୍ଥିରକଲେ । ମୁଁ ସେଥିରେ ତାଙ୍କୁ ପୂର୍ଣ୍ଣପ୍ରାଣରେ ସହଯୋଗ କରିଥିଲି । ଢେଙ୍କାନାଳ ପ୍ରଜା ଆନ୍ଦୋଳନରେ ଭାଗନେବାପାଇଁ କୁଜଙ୍ଗର କେତେକ କଂଗ୍ରେସ କର୍ମୀଙ୍କୁ ମୁଁ ପଠାଇଥିଲି । ୧୯୩୯ରେ ମୋର ଗୋଟିଏ କନ୍ୟାସନ୍ତାନ ଲାଭହେଲା । ୧୯୪୦ ପରେ ଯେଉଁ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ହେଲା ତାଦ୍ୱାରା ଲେଖକକୁ କଟକରେ 'ନଜରବନ୍ଦୀ' ହୋଇ ରଖାହେଲା ପ୍ରାୟ ଏକବର୍ଷ । ପାରଳା ମହାରାଜା ମୁଖ୍ୟମନ୍ତ୍ରୀ ଓ ଗୋଦାବରୀଶ

ମିଶ୍ରଙ୍କ ମନ୍ତ୍ରିତ୍ୱ ବେଳେ ମତେ ନିଯୁକ୍ତି ଦିଆହେଲା ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦିତ ଦୈନିକ ପତ୍ରିକା 'ନବଭାରତ'ରେ ଲେଖାଲେଖି କରିବାକୁ ।

ଇତିମଧ୍ୟରେ ଜର୍ମାନ ଯୁଦ୍ଧ ଆରମ୍ଭ ଓ ଶେଷହେବା ପରେ ଭାରତକୁ ସ୍ୱାଧୀନତା ଦେବାପାଇଁ ଇଂରେଜଙ୍କ ଉପରେ ଆମେରିକା ପ୍ରଭୃତି ସହଯୋଦ୍ଧା ଦେଶମାନେ ଚାପ ଦେଲେ । ତେଣୁ ଭାରତର ଆଭ୍ୟନ୍ତରୀଣ ଅବସ୍ଥା ବିଶେଷକରି ରାଜନୀତିରେ ବେଶ୍ ପରିବର୍ତ୍ତନ ଲକ୍ଷ୍ୟକରାହେଲା ।

ଦୁଇବର୍ଷ ପରେ ଏକ ପ୍ରବଳ ବାତ୍ୟାରେ କୁଜଙ୍ଗ ସମେତ ସମଗ୍ର ତଳମାଳର ଜମିବାଡିର ଫସଲ ଠିକ୍ କାର୍ତ୍ତିକ ପୂର୍ଣ୍ଣିମା ସମୟରେ ସମ୍ପୂର୍ଣ୍ଣ ନଷ୍ଟହୋଇଗଲା ଏବଂ ଦୁର୍ଭିକ୍ଷର କରାଳ କବଳରେ କୁଜଙ୍ଗ କବଳିତ ହୋଇଗଲା— ଯାହାର ପ୍ରତିକାରପାଇଁ ଧାବିତ ହେଲେ ଭାରତବର୍ଷର ସହାୟକ ଅନୁଷ୍ଠାନମାନ ଏବଂ ଗୋଟିଏ ଅନୁଷ୍ଠାନ ପକ୍ଷରୁ ରତ୍ନମାଳୀଜେମାଙ୍କୁ ଦାୟିତ୍ୱ ଦିଆଗଲା ସେ କାମରେ ସାହାଯ୍ୟ କରିବାକୁ । ପିଲାମାନଙ୍କୁ ନେଇ ଜେମା ଗଡ଼କୁଜଙ୍ଗରେ ରହି ରିଲିଫ୍ କାମ ଚଳାଇଲେ ବର୍ଷବ୍ୟାପୀ । ପିଲାମାନଙ୍କ ପାଠପଢ଼ାପାଇଁ ଆମ ଭିତରେ ଆଲୋଚନା ହେଲା— କାରଣ ଗ୍ରାମରେ ସ୍କୁଲ ନଥିଲା । ସିଦ୍ଧାନ୍ତ ଗୃହୀତ ହେଲା ଲବଣ ସତ୍ୟାଗ୍ରହର ସର୍ବଶ୍ରେଷ୍ଠକର୍ମୀ ବୃନ୍ଦାବନ ପାତ୍ରଙ୍କ ସହାୟତାରେ ସେ ଅଞ୍ଚଳରେ ଗୋଟିଏ ମାଇନର ସ୍କୁଲ ଖୋଲାଯିବ ଏବଂ ଯେଉଁ ବେଢ଼ିମଠରେ ସତ୍ୟାଗ୍ରହୀମାନେ ରହି ଲୁଣମାରିଥିଲେ ସେହି ଐତିହାସିକ ପୀଠରେ ଆମ ପରିବାର ଗୋଟିଏ କୁଡିଆ ଘରେ ବାସକରି ପିଲାମାନେ ପାଠ ପଢ଼ିବେ । ବୃନ୍ଦାବନବାବୁ ନିଜେ ଅଞ୍ଚଳବାସୀ ଥିବାରୁ ପ୍ରତ୍ୟେକଟି ସମସ୍ୟା ସେ ସମାଧାନ କରି ମାଇନର ସ୍କୁଲ ପ୍ରତିଷ୍ଠାକଲେ ଆମ ପରିବାରକୁ ଅଞ୍ଚଳବାସୀଙ୍କ ତ୍ୟାଗପୂତ ଋଣରୁ ମୁକ୍ତ କରିବାକୁ । ଏହିପରି ଶିକ୍ଷା ପ୍ରସାର ଦିଗରେ ମନୋନିବେଶ କରାହେଲା ।

ସେ ସମୟରେ ପାରାଦ୍ୱୀପ ଗଡ ଗ୍ରାମରେ ମଧ୍ୟ କପା ଚାଷ କରାଯାଇ ଘରେଘରେ ଅରଟରେ ସୂତାକଟା କେନ୍ଦ୍ର ପ୍ରତିଷ୍ଠା ହେଲା । ଘରର ସମସ୍ତେ ପ୍ରାୟତଃ ଆଶ୍ରମ ଜୀବନ ଯାପନ କରୁଥିଲେ । ନିଜ ହାତରେ ସୂତାକାଟି ସେଇଥିରେ ବୁଣାହୋଇଥିବା ଲୁଗା ପିନ୍ଧୁଥିଲେ । ବିଧବା ବିବାହ ଇତ୍ୟାଦି କେତେକ ସାମାଜିକ ସଂସ୍କାର କାମରେ ମୁଁ ମୁଖ୍ୟ ଭୂମିକା ଗ୍ରହଣକରୁଥିଲି ।

—

# ଉପସଂହାର

୧୯୪୭ ମସିହାରେ ଭାରତବର୍ଷର ସ୍ୱାଧୀନତାଲାଭ ପରେ ରାଜନୈତିକ ପରିସ୍ଥିତି ସଂପୂର୍ଣ୍ଣ ବଦଳିଗଲା ଏବଂ ବିଧାନସଭା ଦଖଲ ରାଜନୀତିର ମୁଖ୍ୟ କାମ ଭାବେ ଗୃହୀତହେଲା । ଆମ ନିର୍ବାଚନମଣ୍ଡଳୀରୁ ଛିଡାହେଲେ ସ୍ୱର୍ଗୀୟ ସାରଙ୍ଗଧର ଦାସ ମୋ ସମର୍ଥନରେ । ତାଙ୍କ ଜୀବନୀ ବିଷୟରେ ସାମାନ୍ୟ ଆଲୋଚନା କରାଯାଉ । ସେ ଢେଙ୍କାନାଳ ବାସିନ୍ଦା ଥିବାରୁ ରାଜାଙ୍କ ସହାୟତାରେ ସେ ଆମେରିକା ପ୍ରେରିତ ହୋଇଥିଲେ ଚିନି ଶିଳ୍ପ ବିଷୟରେ ବଶେଷଜ୍ଞ ହୋଇ ଆସିବାକୁ; କିନ୍ତୁ ଫେରିବା ପରେ ରାଜାଙ୍କ ସହିତ ମତଦ୍ୱିଧ ହେବାରୁ ଢେଙ୍କାନାଳ ଛାଡ଼ି କଟକରେ ରହିଲେ । ସେହି ଅବସରରେ ମହତାବବାବୁ, ନବବାବୁ, ନିତ୍ୟାନନ୍ଦ କାନୁନଗୋ ଓ ଅନ୍ୟମାନେ ତାଙ୍କ ନିକଟକୁ ପ୍ରତ୍ୟେକଦିନ ସଂଧ୍ୟାରେ ଯାଇ ଆମେରିକା ଅନୁଭୂତି ବିଷୟରେ ସବୁକଥା ଶୁଣନ୍ତି ଏବଂ ଜଣେ ବିଶେଷଜ୍ଞଙ୍କ ନିକଟରେ ଶିଷ୍ୟ ପରି ଆଚରଣ କରନ୍ତି– ଆମେରିକା ଅଭିଜ୍ଞତା ବର୍ଣ୍ଣନା ଶୁଣିବାକୁ । ରାଜନୈତିକ ଘନଘଟା ମଧ୍ୟରେ ଏହି ଛାତ୍ରତୁଲ୍ୟ ଶ୍ରୋତାମାନେ କଲେଜ ଛାଡ଼ିବା ପରେ ଦାସଙ୍କ ନିକଟକୁ ଯିବା ଏକାବେଳେ ବନ୍ଦ ହୋଇଗଲା ଏବଂ ସେ ମଧ୍ୟ ସମୟ ପାଇଲେ ଚିନି ଶିଳ୍ପ ସନ୍ଧାନରେ ସମୟ ଦେବାକୁ । ସେହି ଅବସରରେ ମୋ ସହିତ ସାକ୍ଷାତ ଘଟିବାରୁ କୁଜଙ୍ଗ ଅଞ୍ଚଳରେ ଏ ଶିଳ୍ପ ସମ୍ଭାବନା ବିଷୟରେ ତାଙ୍କର ପ୍ରତ୍ୟକ୍ଷ ପ୍ରଦକ୍ଷିଣଦ୍ୱାରା ସିଦ୍ଧାନ୍ତ ଗ୍ରହଣ କରିବାକୁ ମୁଁ ସବୁପ୍ରକାର ଦାୟିତ୍ୱ ଗ୍ରହଣ କରି କୁଜଙ୍ଗର ସମଗ୍ର ବନ୍ୟାଞ୍ଚଳ ବୁଲାଇ ଦେଖାଇଲି । ବନ୍ୟାବିଧୌତ ପଟୁ ପଡ଼ିଥିବା ବ୍ୟାପକ ମହା ଉର୍ବର ଅଞ୍ଚଳ ଦେଖି ସେ କେବଳ ବିସ୍ମିତ ହେଲେନାହିଁ; ଦେଶରେ ଏପରି ସୁଯୋଗ ଥାଉ ଥାଉ ସେ ଯେ କେତୋଟି ବର୍ଷ ନୀରବରେ ସମୟ କଟାଇଛନ୍ତି, ସେଥିପାଇଁ ଘୋର ଅନୁତାପ କଲେ । ମହାନଦୀ ମୁହାଣ ଅଞ୍ଚଳ ପରିଦର୍ଶନ ପରେ ଏ ଅଞ୍ଚଳରେ ଏକ ପହିଲା ନମ୍ବର ବନ୍ଦର ହେବାର ଯେଉଁ ଭବିଷ୍ୟତ ବାଣୀ ସେ କହିଥିଲେ, ତାହାହିଁ ମୋଦ୍ୱାରା ସମ୍ବାଦପତ୍ରମାନଙ୍କ ମାଧ୍ୟମରେ ଆଲୋଚିତ ହୋଇ ପାରାଦ୍ୱୀପ ବନ୍ଦର ରୂପାୟିତ ହେଲା । ସାରଙ୍ଗଧରବାବୁଙ୍କ ଉଦ୍ୟମରେ କୁଜଙ୍ଗ ଅଞ୍ଚଳରେ ଚିନିକଳ ବସାଇବାକୁ, ତାଙ୍କୁ ସେ ଅଞ୍ଚଳରୁ ବିଧାନସଭାକୁ ନିର୍ବାଚିତ କରାଇବାରେ ମୁଁ ସମସ୍ତ ଦାୟିତ୍ୱ ବହନକଲି ଏବଂ ସେ ନିର୍ବାଚିତ ହେବା ପରେ ଅନ୍ତତଃ ଗୋଟିଏ ବର୍ଷ ବିଧାନସଭା ସଭ୍ୟ ରହି ଇସ୍ତଫା ଦେଲେ । ଅବଶ୍ୟ କାରଣ କିଛି କେହି ଜାଣିପାରିଲେନାହିଁ ସତ, କିନ୍ତୁ ଅନୁମିତ ହେଲା ଯେଉଁମାନେ ମନ୍ତ୍ରିମଣ୍ଡଳରେ

ଯୋଗଦେଲେ ମହତାବବାବୁଙ୍କ ନେତୃତ୍ୱରେ ସମସ୍ତେ ତାଙ୍କର ଶିଷ୍ୟୋପମ, ଅଥଚ ତାଙ୍କ ପରି ଜଣେ ଆମେରିକା ଶିକ୍ଷାପ୍ରାପ୍ତ ବ୍ୟକ୍ତିଙ୍କ ପ୍ରତି ଗୁରୁତ୍ୱ ପ୍ରଦାନ କଲେନାହିଁ । ସେ ଯାହାହେଉ, ମୋ ସମର୍ଥନରେ ତାଙ୍କୁ ସଭ୍ୟଭାବେ ଗ୍ରହଣ କରାଯାଇଥିବାରୁ ମୋତେ ବାଧ୍ୟକରାଗଲା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ । ଦାସେ ସମାଜବାଦୀ-ଦଳରେ ଯୋଗଦେବାରୁ ସମାଜବାଦୀଦଳର ସେ ଅଞ୍ଚଳର ବିଶିଷ୍ଟ କର୍ମୀ ନିଶାମଣି ଖୁଣ୍ଟିଆ ନିର୍ବାଚନରେ ଛିଡ଼ାହେଲେ । ଯଦିଓ ଗାନ୍ଧିଜୀଙ୍କ ନୀତିଦୃଷ୍ଟିରୁ ମୁଁ ନିର୍ବାଚନ ଇତ୍ୟାଦିରେ ସମୟ ନଦେବାକୁ ଦୃଢ଼ପ୍ରତିଜ୍ଞ ଥିଲି କିନ୍ତୁ ଦାସେ ଆପଣେଙ୍କ ନିର୍ଦ୍ଦେଶକୁ ମାନି ବିହାର-ଓଡ଼ିଶା କାଉନ୍‌ସିଲକୁ ଛିଡ଼ାହୋଇଥିଲି ଏବଂ ଏଥର କଂଗ୍ରେସର ନେତୃବୃନ୍ଦଙ୍କର ନିର୍ଦ୍ଦେଶ ମାନିବାକୁ ବାଧହେଲି ଜଣେ କଂଗ୍ରେସର ଶୃଙ୍ଖଳା ମାନୁଥିବା କର୍ମୀଭାବେ । ସମାଜବାଦୀଦଳ ସଭ୍ୟଙ୍କର ସୁଦୃଢ଼ ସଂଗଠନ ସତ୍ୱେ ଖୁଣ୍ଟିଆଙ୍କୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଲା ସତ, କିନ୍ତୁ ଗାନ୍ଧିଜୀଙ୍କ ସର୍ବୋଦୟ ସଂଗଠନର ଚେତନା ମୋ ପକ୍ଷରେ ଶିଥିଳ ହୋଇଗଲା । ତଥାପି ମୋତେ ସ୍ୱୀକାର କରିବାକୁ ହେବ ଯେ ସାରଙ୍ଗଧର ଦାସଙ୍କ ପ୍ରଦର୍ଶିତ ଗଠନମୂଳକ କାର୍ଯ୍ୟରେ ମୋତେ ମନୋନିବେଶ କରିବାକୁ ପଡ଼ିଲା ପାରାଦ୍ୱୀପ ବନ୍ଦର ପ୍ରଭୃତି କାମରେ । ଦୀର୍ଘ ପାଞ୍ଚ ସାତବର୍ଷ ବ୍ୟାପୀ ଖବରକାଗଜ ମାଧ୍ୟମରେ ପାରାଦ୍ୱୀପ ବନ୍ଦର ଅନୁକୂଳରେ ମୋତେ ଲେଖିବାକୁ ପଡ଼ିଲା ଏବଂ ବହୁ ଦ୍ୱିଧାମତ ଖଣ୍ଡନ ପରେ ପାରାଦ୍ୱୀପ ବନ୍ଦର ପ୍ରସ୍ତାବ ଓଡ଼ିଶା ସରକାରଙ୍କଦ୍ୱାରା ଗୃହୀତ ହୋଇଗଲା ମହତାବଜୀ ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଥିବାବେଳେ । କିନ୍ତୁ ପାରାଦ୍ୱୀପ ବନ୍ଦରର ପ୍ରାଥମିକ ସଂଗଠନରେ ଯେଉଁସବୁ ବିଭ୍ରାଟ ଘଟିଲା ତାହା ମୋ ଜୀବନ କାଳରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିବାରୁ ସେ ବିଷୟରେ ସମ୍ୟକ୍ ଆଲୋଚନା ନକଲେ ବହୁବିଷୟ ଲୋକଲୋଚନରୁ ଅଜ୍ଞାତ ରହିଯିବ । ତେଣୁ ସେ ଦିଗରେ ବିଶଦ ନହେଲେ ମଧ ଯଥାସମ୍ଭବ ପାଠକମାନଙ୍କ ଗୋଚରାର୍ଥେ ସ୍ୱତନ୍ତ୍ର ଏକ ପରିଚ୍ଛେଦ ଲେଖିବାକୁ ସ୍ଥିରକଲି । ଇତି ମଧରେ ୧୯୫୯ ମସିହାରେ ମୋର ଝିଅ ପ୍ରତିଜ୍ଞାର ପରିଣୟ ବାଲେଶ୍ୱର ଜିଲ୍ଲା ଶଙ୍ଖାରି ନିବାସୀ ଶ୍ରୀ ମଧୁସୂଦନ ଦାସଙ୍କ କନିଷ୍ଠ ପୁତ୍ର ସୁସାହିତ୍ୟିକ ମନୋଜ ଦାସଙ୍କ ସହ ସଂପାଦିତ ହେଲା ।

---

# ପାରାଦ୍ୱୀପ ବନ୍ଦର

ପୂର୍ବରୁ ଲେଖାଯାଇଛି ସାରଙ୍ଗଧର ଦାସ ଚିନିକଳ ସମ୍ଭାବନା ସଂପର୍କରେ ମହାନଦୀ, ପାଇକା, ଚିତ୍ରୋତ୍ପଳା ଓ ଲୁଣା ନଦୀମାନଙ୍କ ତୀରବର୍ତ୍ତୀ ଅଞ୍ଚଳ ପରିଦର୍ଶନ ସମୟରେ ମହାନଦୀ ମୁହାଣର ଅକଳ୍ପନୀୟ ସୁଯୋଗ ସବୁ ଲକ୍ଷ୍ୟକରି ବାରମ୍ବାର କହୁଥିଲେ– 'ହାୟ, ଏସବୁ ସୁଯୋଗ ଥାଇ ଏଠାରେ କିଛି ହୋଇନାହିଁ, ପୁଣି ଏ ଯୁଗରେ !' ମୁଁ ତାଙ୍କ ସହିତ ବରାବର ରହି ଯେଉଁ ପ୍ରେରଣା ପାଇଥିଲି ତାଙ୍କ ମୃତ୍ୟୁ ପରେ ମହତାବଜୀଙ୍କୁ ମୁଁ ସବୁକଥା ଶୁଣାଇଥିଲି ଏବଂ ମହାନଦୀ ମୁହାଣର ଭବିଷ୍ୟତ୍ ବିଷୟରେ କେତୋଟି ପ୍ରବନ୍ଧ ଲେଖିଥିଲି ସମ୍ବାଦପତ୍ରମାନଙ୍କରେ, ଅବଶ୍ୟ ମହତାବଜୀଙ୍କ ପ୍ରେରଣାରେ । କିନ୍ତୁ ହଠାତ୍ କିଛି ହୋଇପାରିନଥିଲା, ସେ ବମ୍ବେର ଗଭର୍ଣ୍ଣରଭାବେ ଅନୁପସ୍ଥିତ ଥିବାରୁ । ସେ ଫେରିଆସି ଯେଉଁ କେତେ ସମୟ ମୁଖ୍ୟମନ୍ତ୍ରୀ ହେଲେ ସେହି ସମୟରେ ପାରାଦ୍ୱୀପ ବନ୍ଦର ପ୍ରସ୍ତାବ ଆଗେଇଗଲା । ଅବଶ୍ୟ ତତ୍‌ପୂର୍ବରୁ ନବବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ଦୁଇଜଣ ବିଶେଷଜ୍ଞ କ୍ରମାନ୍ୱୟେ ତିନିବର୍ଷ ତଦନ୍ତ ପରେ ଗୋଟିଏ ମୁହାଣିଆ ବନ୍ଦର ସୁପାରିସ କରିଗଲେ ମୁହାଣସ୍ଥିତ 'ବୋଇତରାକୁଦ' ନାମକ ପାଞ୍ଚଶହ ଏକରବିଶିଷ୍ଟ ଗୋଟିଏ ଦ୍ୱୀପରେ ବନ୍ଦର ପ୍ରତିଷ୍ଠିତ ହେବାକୁ । ଏ ଦ୍ୱୀପର ବୈଶିଷ୍ଟ୍ୟ ହେଉଛି ସେପର୍ଯ୍ୟନ୍ତ ଜାହାଜସବୁ ଅନାୟାସରେ ଗତିକରିପାରିବ ଏବଂ ଯେଉଁ ଗଭୀରତା ତିନିବର୍ଷ ମଧ୍ୟରେ ତିଳେମାତ୍ର ପରିବର୍ତ୍ତିତ ହୋଇନଥିଲା । ମହତାବଜୀ ଦ୍ୱିତୀୟବାର ମୁଖମନ୍ତ୍ରୀ ହେବା ମାତ୍ରେ ତାହାକୁ କାର୍ଯ୍ୟକାରୀ କରାଇଲେ । କଟକରେ ବୋଇତ ବନ୍ଦାଣ ଉତ୍ସବ ପାଳିତ ହେବା ସହିତ ତାଳଦଣ୍ଡା କେନାଲର ଲକ୍‌ଗୁଡ଼ିକର ଶକ୍ତି ଦ୍ୱିଗୁଣିତ କରାଗଲା । ବୃହଦାକାର ଡଙ୍ଗାମାନଙ୍କରେ ଲୁହାପଥର ବୋଝେଇ ହୋଇ ମହାନଦୀ ମୁହାଣ ପର୍ଯ୍ୟନ୍ତ ପହଞ୍ଚାଇବାକୁ ଏବଂ ସମୁଦ୍ର ଉପକୂଳରେ ବନ୍ଦାଣ ଉତ୍ସବ ପାଳିତ ହୋଇ ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା ସରକାରୀସ୍ତରରେ ଘୋଷିତ ହୋଇଗଲା । ତାଳଦଣ୍ଡା କେନାଲର ଶେଷ ଲକ୍‌ଟିର ନାମ ପାରାଦ୍ୱୀପ ଲକ୍ ପରେ ମହାନଦୀର ସୁଗଭୀର ମୁହାଣ ଏବଂ ସେହି ଲକ୍ ନିକଟରେ ବିରାଟ ଲଞ୍ଚସବୁ ଅପେକ୍ଷା କରି ରହିଲେ, ବଡ଼ ବଡ଼ ଡଙ୍ଗାରେ ଲୁହାପଥର ଅଣାଯାଇ ଲଞ୍ଚମାନଙ୍କ ସହାୟତାରେ ସାତ ଆଠମାଇଲ ମୁହାଣ ଅତିକ୍ରମ କରି ସମୁଦ୍ରରେ ଅପେକ୍ଷା କରିଥିବା ଜାହାଜ ଉପରେ ପହଞ୍ଚାଇଦେବେ । ବୋଇତରାକୁଦରେ ପ୍ରସ୍ତାବିତ ବନ୍ଦର ଗଢ଼ିଉଠିବା ପର୍ଯ୍ୟନ୍ତ ଜାହାଜରେ ପଥର ବୋଝାଇ କାମ ଏହିପ୍ରକାର ଚାଲୁରହିଲା ।

ଇତ୍ୟବସରେ ଓଡ଼ିଶା ରାଜନୀତିରେ ଘୋର ପରିବର୍ତ୍ତନ ଘଟିଲା । ପ୍ରାଦେଶିକ କଂଗ୍ରେସ କମିଟିରେ ଅଧିକାଂଶ ସଂଖ୍ୟକ ସଭ୍ୟ ମହାତାବଜୀଙ୍କ ମୁଖ୍ୟମନ୍ତ୍ରିତ୍ୱ ବିରୋଧରେ ମତ ଦେବାରୁ ମହତାବଜୀ ଓହରିଗଲେ ଏବଂ ବିଜୁବାବୁ ହେଲେ ମୁଖ୍ୟମନ୍ତ୍ରୀ । କିନ୍ତୁ ଏପ୍ରକାର ଜାହାଜ ବୋଝେଇ ବନ୍ଦର କାମକୁ ବିଜୁବାବୁ ପସନ୍ଦ କଲେନାହିଁ ଏବଂ ମୁଁ ଜଣେ ବନ୍ଦର ସମର୍ଥକଭାବେ ମୋତେ କହିଲେ, 'ପ୍ରତ୍ୟେକଟି ଜାହାଜ ବୋଝେଇ ହୋଇ ଲୁହାପଥର ପଠାଇବାଦ୍ୱାରା ଖୁବ୍ କମ୍‌ରେ ତିରିଶହଜାର କ୍ଷତି ଘଟୁଛି । ଏପରି ବନ୍ଦର କେତେଦିନ ଚଳିବ ?' ମୁଁ ଉତ୍ତରଦେଲି– ଏପରି ବହୁ ବନ୍ଦର କ୍ଷତିରେ ଚାଲନ୍ତି । ପ୍ରଧାନମନ୍ତ୍ରୀ ନେହେରୁଜୀଙ୍କ ସହିତ ଆଶାତୀତ ଘନିଷ୍ଠତା ଥିବା ବିଜୁବାବୁ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଏପରି କ୍ଷତିଗ୍ରସ୍ତ ବନ୍ଦର ମଧ୍ୟ ମଞ୍ଜୁର କରାଇପାରିଲେ କେନ୍ଦ୍ର ପକ୍ଷରେ ଏ କ୍ଷତି ବଡ଼କଥା ହେବନାହିଁ । ବୋଇତରାକୁଦ ବଛାହୋଇଥିବା ବନ୍ଦର ସ୍ଥାନରେ ନିର୍ମାଣମୂଳକ କାମ ଯଥାସମ୍ଭବ ଶୀଘ୍ର ଆରମ୍ଭ ଓ ଶେଷହୋଇଗଲେ ଜାହାଜମାନେ ସେଠାରେ ଲାଗିବେ ଓ ଲୁହାପଥର ଆଦି ବୋଝାଇ ହେବ । ତା'ପରେ ଜାହାଜ ବୋଝାଇରେ କ୍ଷତି ତିରିଶହଜାର ପରିବର୍ତ୍ତେ ପ୍ରତିଟି ଉଦ୍ୟମରେ ଲକ୍ଷାଧିକ ଲାଭଦେଖାଇବ ।

ବିଜୁବାବୁ ଦିଲ୍ଲୀ ଧାଇଁଲେ ଏବଂ ପ୍ରଧାନମନ୍ତ୍ରୀଙ୍କୁ ଜଣାଇବାରୁ ଇଞ୍ଜିନିୟରମାନଙ୍କ ଅଭିମତ ଜାଣିବାକୁ ସଂପୃକ୍ତ କାଗଜପତ୍ର ମଗାଇଲେ । ଯେଉଁ ଦୁଇଜଣ ବିଶେଷଜ୍ଞ ଇଞ୍ଜିନିୟର ତିନିବର୍ଷକାଳ ପରୀକ୍ଷା-ନିରୀକ୍ଷା କରି ମତଦେଇଥିଲେ ତନ୍ମଧ୍ୟରୁ ଜଣେ ଫ୍ରେଞ୍ଚ ଓ ଅନ୍ୟ ଜଣେ ଜାପାନୀ । କାଗଜପତ୍ରରେ ସେମାନଙ୍କ ନାମ ଦେଖିବା ମାତ୍ରେ ପ୍ରଧାନମନ୍ତ୍ରୀ କାଗଜପତ୍ର ପାଠନକରି ଫିଙ୍ଗିଦେଇ କହିଲେ– ''ଏସବୁ ଦେଶର ଇଞ୍ଜିନିୟର ମାନଙ୍କ ନିଦାନ ଉପରେ ମୁଁ ଗୁରୁତ୍ୱ ଦେବିନାହିଁ । ଯଦି ଇଂରେଜ କିମ୍ବା ଆମେରିକାନ ଇଞ୍ଜିନିୟର ମତ ଦିଅନ୍ତି,ମୁଁ ଅବଶ୍ୟ ଗୁରୁତ୍ୱ ଦେବି ।''

ଏହା ଶୁଣିବା ପରେ ବିଜୁବାବୁ ନିରାଶାରେ ଫେରିଆସିଲେ ଏବଂ ମୋତେ ସବୁକଥା କହିବା ସହିତ କହିଲେ ଯେ 'ସ୍ୱାଧୀନତା ପରେ ସେମାନେ ସମସ୍ତେ ଭାରତ ଛାଡ଼ି ନିଜ ନିଜ ଦେଶକୁ ଚାଲିଯାଇଛନ୍ତି ।' ତଥାପି ଅନୁସନ୍ଧାନରୁ ନିବୃତ୍ତ ନହେବାପାଇଁ ମୁଁ ଅନୁରୋଧ କଲି । ଦୈବାତ୍ କଲିକତା ବା ଅନ୍ୟ କେଉଁ ସ୍ଥାନରେ ଜଣେ ଇଂରେଜ ବିଶେଷଜ୍ଞଙ୍କ ସନ୍ଧାନ ପାଇଲେ ଏବଂ ତାଙ୍କୁ ଦେଖାକରିବା ପରେ ହସ୍ତଗତ ହୋଇଥିବା ଇଞ୍ଜିନିୟରଙ୍କ ମତକୁ ସମର୍ଥନ କରିଦେବାକୁ ଅନୁରୋଧ କରି କେତେଦିନ ପରେ କାଗଜପତ୍ର ଦେଖାଇଲେ । ଦୁଇଦିନ ପରେ ଦେଖା କରିବାକୁ କହିବାରୁ ଦୁଇଦିନ ପରେ ବିଜୁବାବୁ ଦେଖାକଲେ ସତ, କିନ୍ତୁ ଇଞ୍ଜିନିୟର କହିଲେ, ଏସବୁ ମୁହାଣିଆ ବନ୍ଦରର ଦିନ ଚାଲିଯାଇଛି । କଲିକତା ବନ୍ଦର ବନ୍ଦହେବାକୁ ବସିଲାଣି । ତେଣୁ

ସମୁଦ୍ର କୂଳରୁ ମାଇଲିଏ ଦୂରରେ ଏପରି ଶହେ ଏକର ଜମି ମିଳିବା ଆବଶ୍ୟକ ଯେଉଁ ଜମିରେ ଅନ୍ତତଃ ତିରିଶଫୁଟ ଗଭୀର ପର୍ଯ୍ୟନ୍ତ ବାଲି, ପଥର କିମ୍ବା କସ୍ତୁରା (ବଡ଼ ଶାମୁକା) ନପଡ଼ିବ । ସେପରି ସ୍ଥାନରେ ଆଧୁନିକ (Modern) ବନ୍ଦର ନିର୍ମାଣର ଯୋଜନା ଦିଆଯିବ ।

ବିଜୁବାବୁ ନିରାଶହୋଇ ଫେରିଆସି ମୋତେ ସବୁବିଷୟ ବ୍ୟକ୍ତ କରିବାରୁ ମୁଁ ପୂର୍ବରୁ ଅନ୍ୟ ଏକ ଯୋଜନାପାଇଁ ଦେଖିଥିବା ଏହି ସ୍ଥାନରେ ଖନନ ଇତ୍ୟାଦିର ଆବଶ୍ୟକୀୟ ବ୍ୟବସ୍ଥା କରିବାକୁ କହିଲି । ଫଳରେ ଦେଖାଗଲା ଷାଠିଏ ଫୁଟ ପର୍ଯ୍ୟନ୍ତ ଖନନ କାର୍ଯ୍ୟରେ ବାଧା ଉପୁଜାଇବା ଭଳି ବାଲି, ପଥର କିମ୍ବା କସ୍ତୁରା ନାହିଁ ଏବଂ ଶହେ ଏକର ଏପରି ଜମି ଅପେକ୍ଷା ଢେର୍ ଅଧିକ ଜମି ଅଛି । ସେହି ରିପୋର୍ଟ ପାଇବା ପରେ ସଂପୃକ୍ତ ଇଞ୍ଜିନିୟର କହିଲେ, 'ଭାରତରେ ଯେତେ ଯେଉଁଠି ବନ୍ଦର ଅଛି, ସର୍ବାପେକ୍ଷା ଏ ବନ୍ଦରର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହେବ ଦିନେ ନା ଦିନେ, ବରଂ ଅଦୂର ଭବିଷ୍ୟତ୍‌ରେ ବୋଲି ଭବିଷ୍ୟତବାଣୀ ଲେଖିଦେଇ ଯିବି ।'

ଦୁଇମାସ ପରେ ବନ୍ଦର ଯୋଜନା ରିପୋର୍ଟ ମିଳିବା ପରେ ପ୍ରଧାନମନ୍ତ୍ରୀ ସାଗ୍ରହେ ପାରାଦ୍ୱୀପ ଗସ୍ତକରି, ଶୁଭାରମ୍ଭ କରିବେ ବନ୍ଦର ନିର୍ମାଣ ଉଦ୍ୟମର ଶିଳାନ୍ୟାସ କରି ଏବଂ ସ୍ୱୟଂ ଆଭିମୁଖ୍ୟ ଗ୍ରହଣକରି ବର୍ଷର ପ୍ରଥମ ଦିନଟି ନିରୂପଣ କରିଦେଲେ ଗସ୍ତକ୍ରମ ସ୍ଥିର ହେବାକୁ । ଅଘଟଣ-ଘଟଣ-ପଟିୟସୀଙ୍କ କୃପାରେ ସେହି ଜନମାନବଶୂନ୍ୟ, ପଥଘାଟ ବିବର୍ଜିତ ସ୍ଥାନରେ ପ୍ରଧାନମନ୍ତ୍ରୀଙ୍କ ବାସୋପଯୋଗୀ ଦ୍ୱିତଳସୌଧ ନିର୍ମିତ ହୋଇଗଲା ଫୋନ, ବିଦ୍ୟୁତ୍ ଆଲୋକ ଇତ୍ୟାଦିର ସଂଯୋଗ ସ୍ଥାପନ ସହିତ । କେହି ବିଶ୍ୱାସ କରନ୍ତୁ ନ କରନ୍ତୁ, ପଚାଶ ଷାଠିଏ ମାଇଲ ଫୋନ ଓ ବିଦ୍ୟୁତ୍ ସଂଯୋଗ ଏବଂ ଦ୍ୱିତଳ ପ୍ରାସାଦ ଇତ୍ୟାଦି ନିର୍ମାଣମୂଳକ ବ୍ୟାପାର ଆଖିପିଛୁଳାକେ ହେଉଥିଲା ବୋଲି ଜଣାଯାଉଥିଲା । କେବଳ ସେତିକି ନୁହେଁ, ପଥପ୍ରାନ୍ତରେ ତିନୋଟି ସଭାମଣ୍ଡପ ନିର୍ମିତ ହେଲା— ପ୍ରତ୍ୟେକଟି ପଞ୍ଚପାବଛ ଉଚ୍ଚରେ । ପ୍ରଥମଟି ରଘୁନାଥପୁରରେ, ଦ୍ୱିତୀୟଟି ତିର୍ତ୍ତୋଲ ଏବଂ ତୃତୀୟଟି କୁଜଙ୍ଗ ହାଇସ୍କୁଲ ପ୍ରାଙ୍ଗଣରେ । ସବୁସତ୍ତ୍ୱେ ସମୟ-ନିର୍ଘଣ୍ଟ ସ୍ଥିର ରଖାଯାଇପାରିଲାନାହିଁ ଅକଳ୍ପନୀୟ ଜନସମାଗମ ଯୋଗୁଁ । ଦିଲ୍ଲୀ ଛାଡ଼ିବା ଓ ଭୁବନେଶ୍ୱରରେ ପହଞ୍ଚିବା ବାୟୁଯାନର ସମୟସୀମା ଠିକ୍ ରଖିବା ପ୍ରଧାନମନ୍ତ୍ରୀଙ୍କ କର୍ତ୍ତୃତ୍ୱ, କିନ୍ତୁ ବାୟୁଯାନରୁ ଅବତରଣ ପରେ ଗସ୍ତ ସମୟସୀମା ଚାଲିଗଲା ଜନସ୍ତୂପ ହାତକୁ । ପ୍ରତ୍ୟେକଟି ସ୍ଥାନରେ ଜନସମାଗମକୁ ସଂଖୋଳିବାରେ ଯଦି ପାଞ୍ଚମିନିଟ ବିଳମ୍ବ କରାଯାଏ ଷାଠିଏ ମାଇଲ ପଥ ଅତିକ୍ରମ କରିବାକୁ ଅନ୍ତତଃ ପାଞ୍ଚ ଘଟିକା ବିଳମ୍ବ କ୍ଷମଣୀୟ, ତଥାପି ଶେଷ ଜନସମାଗମ କୁଜଙ୍ଗ ସଭାରେ ପ୍ରବେଶ କଲାବେଳକୁ ମାତ୍ର ତିନିଘଣ୍ଟା ବିଳମ୍ବ ବରଂ ପ୍ରଶଂସନୀୟ ଅଟେ । ପୌଷ ଶୀତ ରାତ୍ରିକୁ ଖାତିର ନକରି

ଦଶହଜାର ନରନାରୀ କୁଜଙ୍ଗ ଶେଷସଭା ମଣ୍ଡନ କରିଥିଲେ । ସ୍ଥାନୀୟ ଏମ୍.ଏଲ୍.ଏ. ଶ୍ରୀମତୀ ରତ୍ନମାଳୀ ଜେମା ତତ୍‌ପୂର୍ବରୁ ଧୈର୍ଯ୍ୟହରା ନହେବାପାଇଁ ଥରେ ଦୁଇଥର ପ୍ରବୋଧନା ଦେଇଥିଲେ ମଧ୍ୟ ଜନଜାଗରଣ ଦୃଷ୍ଟିରୁ ତାହାର ଆବଶ୍ୟକତା ନଥିଲା । ସଂକଳ୍ପବଦ୍ଧ ଜନସ୍ତୂପପାଇଁ ପ୍ରଧାନମନ୍ତ୍ରୀଙ୍କୁ ଦର୍ଶନ କରିବାକୁ ସମୟସୀମା ଆଦୌ ବିଚାର୍ଯ୍ୟନଥିଲା । ସଂଧ୍ୟା ଠିକ୍ ଆଠଟାରେ ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ଗହଣରେ ମହାମନ୍ତ୍ରୀ ଜବାହାର ଲାଲ ନେହେରୁଜୀ ସଭାମଣ୍ଡପ ଆରୋହଣ କଲେ ଯେଉଁଠି ଆଗରୁ ଏମ୍.ଏଲ୍.ଏ. ଜେମା ଅପେକ୍ଷାରେ ଅବସ୍ଥିତ ଥିଲେ । ଜୟଧ୍ୱନି ପ୍ରକମ୍ପିତ ହେଲା ପାଞ୍ଚମିନିଟବ୍ୟାପୀ । ନିଜର ମର୍ଯ୍ୟାଦା ରକ୍ଷାପାଇଁ ଜେମା ରୁପା ତାରକସି କାମରେ ଗ୍ରଥିତ ଗୋଟିଏ କ୍ଷୁଦ୍ର ଜାହାଜ ଭେଟିଦେଲେ ଏବଂ ବ୍ୟାଟେରୀ ଖଚିତ ବିଭିନ୍ନ ରଙ୍ଗର ଆଲୋକମାଳା ଚିପିବାଦ୍ୱାରା ଆଲୋକିତ ହେବା ଦେଖି ମହାମନ୍ତ୍ରୀ ମହୋଦୟ ମୁଗ୍ଧ ହୋଇଗଲେ । ବନ୍ଦର ନିର୍ମାଣର ପ୍ରଥମ ଭେଟି ଜାହାଜଟି ସମୟୋପଯୋଗୀ ହୋଇଥିଲା । ଜେମା ନିଜ ବକ୍ତବ୍ୟ ସର୍ବପ୍ରଥମେ ପାଠକଲା ପରେ ବିଜୁବାବୁଙ୍କ ଭାଷଣ ସଂକ୍ଷେପରେ ଶେଷକରାଗଲା– ମହାମନ୍ତ୍ରୀଙ୍କ ଭାଷଣପାଇଁ ଆବଶ୍ୟକୀୟ ସମୟ ଦେବାକୁ । ପ୍ରଧାନମନ୍ତ୍ରୀଙ୍କ ଭାଷଣ ଲୋକମାନଙ୍କଦ୍ୱାରା ଆଶାତୀତଭାବେ ଆଦୃତ ହୋଇଥିଲା– ଅତି ସରଳ ହିନ୍ଦୀ ଭାଷା ଯୋଗୁଁ । ତଥାପି ଲୋକସ୍ତୂପର ଘନଘନ କରତାଳି ବର୍ଷଣଦ୍ୱାରା ମହାମନ୍ତ୍ରୀଙ୍କ ଭାଷଣରେ ଯତ୍‌ସାମାନ୍ୟ ବାଧା ଉପୁଜିଥିଲା । ସେ ମଞ୍ଚରୁ ଅବତରଣ କଲେ ଜେମାଙ୍କ କନ୍ଧରେ ହସ୍ତ ନ୍ୟସ୍ତ କରି । ଖଦିବିଭୂଷିତ ସ୍ଥାନୀୟ ସରପଞ୍ଚମାନେ ଧାଡ଼ିବାନ୍ଧି ସଙ୍ଖୋଳିବା ସମୟରେ ବଳରାମପୁର ଗ୍ରାମର ଗୋପନ ଭୋଳି ପଲେଇ ଦର୍ଶନ ସହିତ ସ୍ପର୍ଶନ କଲା ମହାମନ୍ତ୍ରୀଙ୍କ ପାଦରେ ହସ୍ତ ନ୍ୟସ୍ତ କରି । ପାରାଦ୍ୱୀପ ଲକ୍ ଛଅ ମାଇଲ ପଥରେ ମଧ୍ୟ ପ୍ରତି ଗ୍ରାମବାସୀ ନରନାରୀ ଜାଗ୍ରତଭାବେ ଜଗିରହିଛନ୍ତି ଶୃଙ୍ଖଳାବାନ୍ଧି । ଠିକ୍ ଦଶଟା ସମୟରେ ସେ ଜଳଯାନରେ ଆରୋହଣକଲେ ଏବଂ ଏଗାରଟା ରାତ୍ରିରେ ନବନିର୍ମିତ ନେହେରୁ ବଙ୍ଗଳା ଦ୍ୱିତଳ ପ୍ରାସାଦର ପ୍ରତିଷ୍ଠାପୂର୍ବକ ତହିଁ ଅବସ୍ଥାନକଲେ । ସେ ସମୟରେ ମୁଁ କୁଜଙ୍ଗ ଅଞ୍ଚଳର Chairman ଥିଲି ।

୧୯୬୨ ଜାନୁଆରୀ ତିନି ତାରିଖ ପ୍ରଭାତ ଶିଳାନ୍ୟାସର ସମୟ । ଅଥଚ ପୌଷ ରାତ୍ରିର ଶୀତକୁ ଖାତିର ନକରି ଢିଙ୍କିଆ, ନୂଆଗାଁ ପଞ୍ଚାୟତମାନଙ୍କ ନରନାରୀ ସେମାନଙ୍କ ଭୂଖଣ୍ଡର ଅନ୍ୟପ୍ରାନ୍ତରେ ବନ୍ଦର ସ୍ଥାପନ ହେଉଥିବା ଓ ଶିଳାନ୍ୟାସପାଇଁ ପ୍ରଧାନମନ୍ତ୍ରୀଙ୍କ ଶୁଭାଗମନକୁ ସ୍ୱାଗତ କରିବାକୁ ସମୁଦ୍ର ତୀରେ ତୀରେ ସହସ୍ର ସହସ୍ର ସଂଖ୍ୟାରେ ଚାଲିଛନ୍ତି ଶୈତ୍ୟ, ଅନ୍ଧକାର ସତ୍ତ୍ୱେ । ସୂର୍ଯ୍ୟୋଦୟ ପୂର୍ବରୁ ସଭାସ୍ଥଳୀ ବିମଣ୍ଡିତ ହୋଇଥିଲା ଏହି ବିରାଟ ଜନସମାଗମଦ୍ୱାରା ଯାହା ସେହି ଅଗମ୍ୟ, ସୁଦୂର ସ୍ଥଳୀ ପକ୍ଷରେ ବିସ୍ମୟକର । ବିଶେଷତଃ ଡଙ୍ଗା ପ୍ରଭୃତି ଜଳଯାନ ସାହାଯ୍ୟରେ କୁଜଙ୍ଗର

କୈବର୍ତ୍ତ ବାହିନୀର ଓ ନଦୀତୀରସ୍ଥ ଗ୍ରାମବାସୀ ସଭାସ୍ଥଳୀକୁ କଳ୍ପନାତୀତଭାବେ ସଂଖ୍ୟାତୀତ ସ୍ତରରେ ମଣ୍ଡନ କରିଥିଲେ । ବିଜୁବାବୁଙ୍କ ସହକର୍ମୀ ବୀରେନ ମିତ୍ର ଏ ବିରାଟ ଜନସମାଗମ ସେହି ଅପ୍ରତ୍ୟାଶିତ ସ୍ଥାନରେ ଦର୍ଶନ କରି ମନ୍ତ୍ରମୁଗ୍ଧ ହେବାପରି ଆନନ୍ଦବିଭୋର ହୋଇଥିଲେ ଏବଂ ସଭା ଆରମ୍ଭ ପୂର୍ବରୁ ଜନସମାଗମକୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ ନିଜ କଟକୀ ଭାଷାରେ– ଯାହା ଶ୍ରୁତିମଧୁର ବୋଧହେଉଥିଲା ସଭାପକ୍ଷରେ । ସୂର୍ଯ୍ୟୋଦୟର ସମଗ୍ର ପୂର୍ବଦିଗ ବ୍ୟାପୀ ରକ୍ତିମ ଆଭା ସର୍ବୋପରି ସୌନ୍ଦର୍ଯ୍ୟମୟ ବୋଧ ହେଉଥିଲା ଏକ ଅଭିନବ ଉତ୍ସବମୟ ସ୍ତରରେ । ସମୁଦ୍ରର ଉତ୍ତାଳ ତରଙ୍ଗ ଭଙ୍ଗ, ସେଥିସହିତ ସଂଯୋଗ ସ୍ଥାପନ କରୁଥିଲା ପ୍ରତ୍ୟେକଟି ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରି । ନେହେରୁ ବଙ୍ଗଳାଠାରୁ ଶିଳାନ୍ୟାସ ସ୍ଥାନ ଅର୍ଦ୍ଧାଧିକ ଏକମାଇଲ ଦୂର ଗୋଟିଏ ଚଳନୀୟ ପକ୍କାରାସ୍ତା ନିର୍ମିତ ହୋଇଥିଲା ମଟର ଚାଳନାପାଇଁ ।

ଠିକ୍ ଆଠଟା ସମୟରେ ପ୍ରଧାନମନ୍ତ୍ରୀଙ୍କୁ ଘେନି ବିଜୁବାବୁ ସଭାରେ ପ୍ରବେଶକଲେ ଏବଂ ପ୍ରଧାନମନ୍ତ୍ରୀ ଯୁକ୍ତକରରେ ଲୋକସ୍ତୂପକୁ ପ୍ରଣାମ ଜଣାଇ ହସହସ ମୁଖରେ ଜନସମାଗମକୁ ଅତିକ୍ରମ କରି ଉପବେଶନ କଲେ ସଭାମଞ୍ଚରେ । ସେହି ଅଗମ୍ୟ ସ୍ଥାନରେ ବିରାଟ ଲୋକସମାଗମକୁ ସେ ଦେଖୁଥିଲେ ଅନେକଟା ବିସ୍ମୟବିଭୋର ଦୃଷ୍ଟିରେ ବୋଲି ତାଙ୍କ ମୁଖଭଙ୍ଗୀରୁ ଜଣାଯାଉଥିଲା । ଆମ ଦେଶର କେବଳ ନୁହେଁ, ସାରା ଭାରତବର୍ଷର ଏକ ଆନ୍ତର୍ଜାତୀୟ ସମ୍ବନ୍ଧ ସ୍ଥାପନ ହେବ ପ୍ରସ୍ତାବିତ ବନ୍ଦରଦ୍ୱାରା ଏବଂ ସେହି ବନ୍ଦର ନିର୍ମାଣର ଶୁଭ ପ୍ରଦାନକରିବାକୁ ଭାରତର ପ୍ରଧାନମନ୍ତ୍ରୀ ନେହେରୁଜୀ ଏ ସ୍ଥାନରେ ଆପଣମାନଙ୍କ ସମ୍ମୁଖରେ ବିରାଜିତ ଇତ୍ୟାଦି ପ୍ରାରମ୍ଭିକ ଭାଷଣ ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ପ୍ରଦାନ କରିବା ପରେ କଳିଙ୍ଗ କର୍ଣ୍ଣଧାର ସଂଘର ମାନପତ୍ର ପଢ଼ାଯିବା ପରେ ନେହେରୁଜୀଙ୍କ ଭାଷଣ ଆରମ୍ଭ ହୋଇଥିଲା ।

ତନ୍ମଧ୍ୟରେ ଯେଉଁସବୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା ତାହା ହେଉଛି ''ଭାରତବର୍ଷ ପରି ଏକ ବିରାଟ ଦେଶ ବ୍ୟତୀତ ପୃଥିବୀ ପୃଷ୍ଠସ୍ଥ ଦେଶମାନଙ୍କ ମଧ୍ୟରେ ଏପରି କୌଣସି ଗୋଟିଏ ଦେଶ ନାହିଁ ଯେଉଁ ଦେଶ କି ଆମ ଓଡ଼ିଶା ସହିତ ସମକକ୍ଷ ହୋଇପାରିବ ନାନାବିଧ ଖଣିଜ ସଂପଦରେ ପରିପୂର୍ଣ୍ଣଭାବେ । ତେଣୁ ମୁଁ କହିଲିନାହିଁ 'ତମ ଦେଶ' ବୋଲି– 'ଆମ ଦେଶ' କହିଲି । ଭାରତବର୍ଷର ସବୁରାଜ୍ୟ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ଏ ରାଜ୍ୟର ବିଭବଦ୍ୱାରା ଉପକୃତ ହେବେ ବହିର୍ବାଣିଜ୍ୟ ମାଧ୍ୟମରେ– ଆଶାନୁରୂପ ନୁହେଁ, ଆଶାତୀତଭାବେ ବୈଦେଶିକ ସ୍ୱର୍ଣ୍ଣମୁଦ୍ରା ହାସଲ କରିବାକୁ ସକ୍ଷମ ହେବେ ବୋଲି । ଆଜି ସେହି ଦ୍ୱାର ଉନ୍ମୋଚନର ଯେଉଁ ବିରାଟ ନିର୍ମାଣମୂଳକ କାମଚାଲିବ ତାହାର ଶୁଭାରମ୍ଭ ମୋ ଦ୍ୱାରା ଅନୁଷ୍ଠିତ ହେଉଛି ବୋଲି ମୁଁ ଭାରତର ପ୍ରଧାନମନ୍ତ୍ରୀଭାବେ କେବଳ ଧନ୍ୟ ନୁହେଁ, ଜବାହରଲାଲଭାବେ ମଧ୍ୟ ଧନ୍ୟ । କାରଣ ମନ୍ଦିରମାଳିନୀ ଏ

ଦେଶର ଧର୍ମସଂପର୍କୀୟ ନୈତିକ ଚେତନା ସହିତ ସାମୁଦ୍ରିକ ଅକଳନ୍ତା ବିଭବ ସହିତ ଖଣିଜ ସଂପଦର ପରିପୂର୍ଣ୍ଣତା ଜଣେ ସମୁଦ୍ର ସଂପର୍କରୁ ବଞ୍ଚିତ ଉତ୍ତରପ୍ରଦେଶଜନ୍ମା ଜବାହରଲାଲ ପକ୍ଷରେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ଅନିର୍ବଚନୀୟ ଅଟେ । କଳିଙ୍ଗ କର୍ଣ୍ଣଧାର ସଂଘର ମାନପତ୍ର ସଂପର୍କରେ ମୁଁ ଏତିକି କହିବି ଯେ ପୃଥିବୀର ସପ୍ତସିନ୍ଧୁ ମନ୍ଥନ କରିବାପାଇଁ ପୋତ ନିର୍ମାଣାଦି ସମସ୍ତପ୍ରକାର ସୁଯୋଗ ସ୍ୱତଃସ୍ଫୂର୍ତ୍ତ ଭାବେ ବନ୍ଦର ନିର୍ମାଣ ପରେ ହସ୍ତଗତ ହେବ ଏହି ସଂଘର । ରାଜ୍ୟର ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ପରି ଜଣେ ଦୁଃସାହସିକ କର୍ମୀଙ୍କଠାରେ ମୁଁ ଜୀବନବ୍ୟାପୀ ଋଣୀ ଯେହେତୁ ସେ ସୁମାତ୍ରା ଯାତ୍ରା ସମନ୍ୱିତ ଇଣ୍ଡୋନେସିଆ ପ୍ରଧାନମନ୍ତ୍ରୀଙ୍କୁ ବୈଦେଶିକ ଶକ୍ତି ହାତରୁ ଉଦ୍ଧାରକରି ଆଣିଥିଲେ ମୋ ପ୍ରେରଣାରେ । ଆଜି ତାଙ୍କ ରାଜ୍ୟର ଏକ ସୁବୃହତ୍ ପୋତାଶ୍ରୟ ନିର୍ମାଣର ଶୁଭଦେବା ଭଳି ଶତ ଶତ ଅନୁଷ୍ଠାନରେ ପୌରୋହିତ୍ୟ କରି ମଧ୍ୟ ମୁଁ ସେ ଋଣରୁ ମୁକ୍ତ ହୋଇପାରିବିନାହିଁ ।'' ଏହି ମର୍ମରେ ମହୋତ୍କୃଷ୍ଟ ଭାଷଣଦ୍ୱାରା ବିରାଟ ଜନସମାଗମକୁ ମନ୍ତ୍ରମୁଗ୍ଧ କଲା ପରେ ଶିଳାନ୍ୟାସ କର୍ତ୍ତବ୍ୟ ଦିଗରେ ଅଗ୍ରସର ହେଲେ ପ୍ରଧାନମନ୍ତ୍ରୀ ।

ଲେଖକର ଜୀବନୀର ଲେଖା ସହିତ ଏହିସବୁ ବର୍ଣ୍ଣନାର ପ୍ରତ୍ୟକ୍ଷ ସଂପର୍କ କିଛି ନଥିଲେ ମଧ୍ୟ ପରୋକ୍ଷ ସଂପର୍କ ଏତେ ଘନିଷ୍ଠ ଯେ ଏହା ପାଠକମାନଙ୍କୁ ଜଣାଇବା ଏକାନ୍ତ ବାଞ୍ଛନୀୟ । କାରଣ ପାରାଦ୍ୱୀପ ବନ୍ଦର ବିଷୟରେ ମୋର ଧାରଣା ସବୁ ଫଳବତୀ ହୋଇଥିବାରୁ ନିଜକୁ କୃତାର୍ଥ ମନେକରେ ।

କୁଜଙ୍ଗ ଅଞ୍ଚଳରେ କୈବର୍ତ୍ତମାନେ ସଂଖ୍ୟାଧିକ । ସେ ଅଞ୍ଚଳରେ ଜୁଆରିଆ ନଦୀମାନଙ୍କରୁ ମାଛଧରି ସେମାନେ ଚଳୁଥିଲେ । ସେମାନଙ୍କର ନଦୀରୁ ମାଛ ଧରିବାର ସ୍ୱତ୍ୱ ସରକାରଙ୍କଦ୍ୱାରା ଗୃହୀତ ହେବାପାଇଁ 'କଳିଙ୍ଗ କର୍ଣ୍ଣଧାର' ସମିତି ନାମକ ଏକ ସମିତି ଗଠନ କଲି ୧୯୬୩ ମସିହାରେ । ଏହା ସରକାରୀ ଭାବରେ ପଞ୍ଜିକାଭୁକ୍ତ (Registration) ହୋଇ ଅଦ୍ୟାବଧି ଚାଲିଆସୁଅଛି ।

ଏହିବର୍ଷ ମୋର ପୁତ୍ର ବିଶ୍ୱମ୍ଭର, ଜାମାତା ମନୋଜ ଏବଂ କନ୍ୟା ପ୍ରତିଜ୍ଞା ଶ୍ରୀ ଅରବିନ୍ଦ ଆଶ୍ରମରେ ସ୍ଥାୟୀଭାବେ ରହିବାପାଇଁ ସ୍ଥିର କରି ପଣ୍ଡିଚେରୀ ଚାଲିଗଲେ ।

ଏହିପରି ଯତିବ୍ରତର ପ୍ରକୃଷ୍ଟ ସମୟ ଉପସ୍ଥିତ ହେବାକୁ ଯାଉଥିବା ସମୟରେ ପୁନଶ୍ଚ କେତେକ ରାଜନୈତିକ କାରଣରୁ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ହେଲା । ୧୯୭୧ ମସିହାରେ କଂଗ୍ରେସ (ଇ) ବିରୋଧରେ ନିର୍ବାଚନରେ ପ୍ରତିଯୋଗିତା କରିବାକୁ ଯେଉଁ ଅନୁଷ୍ଠାନ ଗଢ଼ାହେଲା ତାର ନାମ ରଖାହେଲା 'ଉତ୍କଳ କଂଗ୍ରେସ' । ଉତ୍କଳ ନାମ ପ୍ରଥମେ ଆବିଷ୍କୃତ ହେଲା 'ମହାଭାରତ'ରେ ବ୍ୟାସଙ୍କଦ୍ୱାରା । ମହାଭାରତ ଯୁଦ୍ଧରେ 'ଉତ୍କଳ'ର ରାଜା ଦୁର୍ଯ୍ୟୋଧନଙ୍କ ପକ୍ଷରେ ଲଢୁଥିଲେ । ଓଡ଼ିଶା ସେହି ଉତ୍କଳର ଅଂଶ ଥିଲା । ଉତ୍କଳମାନେ ଉନ୍ନତ କଳା । ଏହି ଉନ୍ନତ କଳାକୁ ପ୍ରକୃତ ରୂପଦେବାପାଇଁ

ସ୍ଥିରହେଲା ମାନବିକତାହିଁ ସୃଷ୍ଟିର ଚରମ ଓ ପରମ ପରିଣତି । ଏହି ମାନବିକତାକୁ ପ୍ରକୃତ ରୂପଦେଇ ମନ୍ଦିରରେ ପୂଜାପାଇଲା 'ଚତୁର୍ଦ୍ଧାମୂର୍ତ୍ତି' । କକେସୀୟାନମାନଙ୍କର ପ୍ରତିନିଧିତ୍ୱ କଲେ ଶ୍ୱେତ ବିଗ୍ରହ 'ବଳରାମ', ମଙ୍ଗୋଲୀୟମାନଙ୍କର ପୀତବର୍ଣ୍ଣ ବିଗ୍ରହ 'ସୁଭଦ୍ରା' ଓ ନିଗ୍ରୋମାନଙ୍କର କୃଷ୍ଣ ବର୍ଣ୍ଣର 'ଜଗନ୍ନାଥ' । ନିର୍ଦ୍ଦିଷ୍ଟ ବର୍ଣ୍ଣକୁ ଛାଡ଼ି ବର୍ଣ୍ଣହୀନ ଗୋଷ୍ଠୀଙ୍କୁ ସୁଦର୍ଶନ ପ୍ରତିନିଧିତ୍ୱ କଲେ ।

'ଉତ୍କଳ କଂଗ୍ରେସ' ନାମ ଗୃହୀତହେଲା ପରେ ବିଜୁବାବୁଙ୍କ ଅନୁରୋଧକ୍ରମେ ମତେ ଏରସମାମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ହେଲା ଏବଂ ବିଜୟଲାଭ ପରେ ମତେ ଡେପୁଟି ସ୍ପିକର ସ୍ଥାନରେ ଅଧିଷ୍ଠିତ କରାହେଲା । ସାମାନ୍ୟ କେତେବର୍ଷ ପରେ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା ଏବଂ ମୋର ଯତିବ୍ରତରେ ଯେଉଁ ବ୍ୟତିକ୍ରମ ଘଟିଥିଲା ତାହାର ସମାପ୍ତି ଘଟିଲା ।

ରାଜନୀତିରୁ ଅବସର ଗ୍ରହଣ କଲା ପରେ ଲେଖାଲେଖିରେ ସମୟ କଟାଇଲି । ମୋର ପ୍ରକାଶିତ ପୁସ୍ତକଗୁଡ଼ିକ ହେଲା 'କୁଜଙ୍ଗ ଚିତ୍ର', 'ପୂଜାପୁଷ୍ପ', 'ପରମାତ୍ମାଙ୍କ ପ୍ରତି ସ୍ତୁତି', 'ଉଦ୍ଧବଙ୍କ ଦୌତ୍ୟ' । ଅନୁବାଦ ଗ୍ରନ୍ଥଗୁଡ଼ିକ ହେଲା, 'ଯୋଗବାଶିଷ୍ଠ ରାମାୟଣ', 'କପାଳକୁଣ୍ଡଳା', 'ଆନନ୍ଦମଠ' । ବର୍ତ୍ତମାନ ପ୍ରଭୁଙ୍କ ଚରଣରେ ନିଜକୁ ସମର୍ପଣ କରି ପ୍ରଭୁ ଚିନ୍ତାରେ ସମୟ ଅତିବାହିତ କରୁଛି । ବର୍ତ୍ତମାନ ମୋର ବୟସ ନବେ ବର୍ଷରେ ପଦାର୍ପଣ କରିଛି ଏବଂ ମୃତ୍ୟୁକୁ ମୁଁ ଯତିବ୍ରତଦ୍ୱାରା ଆଲିଙ୍ଗନ କରିବି କି ମୃତ୍ୟୁ ମୋତେ ତାର କରାଳକବଳରେ ଗ୍ରାସ କରିବ ତାହା ଭବିଷ୍ୟତ୍ ପ୍ରମାଣ କରିବ ଅନତିଦୂରରେ ।

— ବନ୍ଦେ ମାତରଂ

—

# ମାମା : ଏକ ଅସାଧାରଣ ଜୀବନର ରେଖାଚିତ୍ର

– ବିଜୟିନୀ ସିଂହଦେଓ

ଆଶ୍ୱିନ କୃଷ୍ଣ ଦଶମୀ, ଇଂରାଜୀ ୧୯୧୬ ମସିହା ସେପ୍ଟେମ୍ବର ୨୦ ତାରିଖ କୁଜଙ୍ଗ ରାଜ୍ୟ ପାରାଦ୍ୱୀପଗଡ଼ ରାଜନଅରରେ ପୂର୍ଣ୍ଣିମା ଚନ୍ଦ୍ରପରି ଅପରୂପା କନ୍ୟାଟିଏ ଭୂମିଷ୍ଠ ହେଲା । କିନ୍ତୁ ମାତା କୁଜଙ୍ଗରାଣୀ ଭାବବତୀ ପାଟମହାଦେଈ ବା ପିତା ରାଜା ଜଗଦୀଶ କ୍ଷେତ୍ର ନରେନ୍ଦ୍ର ବାହାଦୁର ଏଥିରେ ଆନନ୍ଦିତ ହେବା ପରିବର୍ତ୍ତେ ବିମର୍ଷ ବୋଧକଲେ । ସେମାନଙ୍କର ବାରବର୍ଷର କନ୍ୟାଟିଏ ଥିଲା, ଅନେକ ଆଶା ଥିଲା ଏଇଟି ହେଲେ ପୁତ୍ର ସନ୍ତାନ ହୋଇଥାନ୍ତା । ଆଜକୁ ପ୍ରାୟ ଏକ ଶତାବ୍ଦୀ ପୂର୍ବେ ସମାଜରେ, ବିଶେଷକରି ରାଜବଂଶରେ, ପୁତ୍ରସନ୍ତାନର ସ୍ଥାନ କେତେ ଦୁର୍ମୂଲ୍ୟ ସହଜରେ ଅନୁମାନ କରିହୁଏ ।

'ଏକଶ୍ଚନ୍ଦ୍ରସ୍ତମୋହନ୍ତି ନ ଚ ତାରା ଗଣେପିଚ' ପରି ଏହି କନ୍ୟାରତ୍ନଟି ଶତପୁତ୍ରର ଗୌରବକୁ ମଳିନ କରି କେବଳ ପରିବାର ନୁହେଁ, ଦେଶ ଓ ଜାତିର ମୁଖ ଉଜ୍ଜ୍ୱଳ କରିଥିଲେ । ଅବିଭକ୍ତ କଟକ ଜିଲ୍ଲାର ପୁରପଲ୍ଲୀରେ ସେ ନିଜ ନାମ ରତ୍ନମାଳି ଜେମା ଅପେକ୍ଷା ସାର୍ବଜନୀନ 'ମାମା' ଭାବରେ ବେଶି ପରିଚିତା କେବଳ କେତେଜଣ ସୀମିତ ବୟୋଜ୍ୟେଷ୍ଠ ବ୍ୟକ୍ତି ତାଙ୍କୁ ଶ୍ରଦ୍ଧାରେ 'ଜେମା' ବୋଲି ସମ୍ବୋଧନ କରିଥାନ୍ତି ।

ପ୍ରତିକୂଳ ପରିବେଶରେ ତାଙ୍କର ଶିକ୍ଷାଗତ ଯୋଗ୍ୟତା ଯଥେଷ୍ଟ ନଥିଲେ ମଧ୍ୟ ସେ ନାରୀଶିକ୍ଷା, ନିର୍ଯାତିତା ମହିଳାମାନଙ୍କର ରକ୍ଷଣାବେକ୍ଷଣ ଏବଂ ଉନ୍ନତି, ସମାଜର ଅବହେଳିତ ଲୋକମାନଙ୍କର ନ୍ୟାଯ୍ୟଦାବୀ, ରାଜନୀତି, ଆଧ୍ୟାତ୍ମିକତା ଇତ୍ୟାଦି ସବୁ ସ୍ତରରେ ନିଜର ନିଷ୍ଠା ଏବଂ ପାରଦର୍ଶିତାର ପରିଚୟ ପ୍ରଦାନ କରିଛନ୍ତି । ଜନ୍ମରୁ ପିତାମାତାଙ୍କର ପୁତ୍ରସନ୍ତାନର ଅଭାବବୋଧ ବୋଧହୁଏ ତାଙ୍କର ଚେତନା ସ୍ତରରେ ଆଲୋଡ଼ନ ସୃଷ୍ଟିକରି ଏକ ବୈପ୍ଳବିକ ଚିନ୍ତାଧାରାର ଆରୋପ କରିଥିଲା । ରାଜବଂଶରେ ଜାତ ହୋଇଥିବାରୁ ସେ ସାଧାରଣ ଶିଶୁମାନଙ୍କ ସହିତ ବିଦ୍ୟାଳୟ ଯିବା ସମ୍ଭବ ନଥିଲା । ଘରେ ଶିକ୍ଷକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପ୍ରାୟ ତୃତୀୟଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । କିନ୍ତୁ ପରବର୍ତ୍ତୀ ଜୀବନରେ ନିଜର ଆଗ୍ରହ ଏବଂ ପ୍ରଚେଷ୍ଟା ଦ୍ୱାରା ବଙ୍ଗଳା

---

[ଲେଖିକା ଅଧ୍ୟାପିକା ଶ୍ରୀମତୀ ବିଜୟିନୀ ସିଂହଦେଓ ସାମନ୍ତଙ୍କ ଭାଣିଜୀ ଏବଂ ଗୁମୁସରର ଶେଷ ରାଜା ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ପୁତ୍ରବଧୂ । ]

ପଢ଼ିପାରୁଥିଲେ, ଚଳିପାରିଲା ଭଳି ଇଂରାଜୀ ବୁଝିପାରୁଥିଲେ, ଅଳ୍ପ ଅଳ୍ପ ହିନ୍ଦୀ ଏବଂ ଇଂରାଜୀ ମଧ୍ୟ ପଢ଼ିପାରୁଥିଲେ । କେବଳ ପାଠନୁହେଁ, ଅନେକ କ୍ଷେତ୍ରରେ ତାଙ୍କର ଶିଖିବାର ପ୍ରବୃତ୍ତି ଅନନ୍ୟ ସାଧାରଣ । ସେଇଥିପାଇଁ ହୁଏତ ଜୀବନର ପ୍ରତ୍ୟେକ ସୋପାନରେ ସେ ସଫଳତା ଲାଭକରିପାରିଛନ୍ତି ।

ରତ୍ନମାଳି ଜେମାଙ୍କର ଜେଜେବାପା ବିଦ୍ୟାଧର ଷଣ୍ଢ ପ୍ରଚଣ୍ଡ ପରାକ୍ରମୀ ରାଜା ଥିଲେ । ସେତେବେଳେ ଦେଶ ଇଂରେଜମାନଙ୍କର ଅଧୀନରେ ଥିଲା । ଇଂରେଜ ସରକାରଙ୍କ ଖଜଣା ସାଙ୍ଗକୁ ରାଜ୍ୟରେ ବନ୍ୟାମରୁଡ଼ି ପରି ପ୍ରାକୃତିକ ଦୁର୍ବିପାକ ବିଦ୍ୟାଧରଙ୍କୁ ବିବ୍ରତ କରିପକାଇଥିଲା । ତାଙ୍କର ଅଧସ୍ତନ ଜଣେ କର୍ମଚାରୀଙ୍କ ଚକ୍ରାନ୍ତ ହେତୁ ଠିକ୍ ସମୟରେ ଇଂରେଜ ସରକାରଙ୍କ ନିକଟରେ ଖଜଣା ପଇଠ ହୋଇପାରିଲା ନାହିଁ । "ସାନ୍ଧ୍ୟ ଆଇନ୍" (Sunset Act)ବଳରେ କୁଜଙ୍ଗ ରାଜ୍ୟ ନିଲାମ ହୋଇଗଲା, ବର୍ଦ୍ଧମାନର ରାଜାଙ୍କ ଅଧୀନକୁ ନିଲାମରେ କୁଜଙ୍ଗରାଜ୍ୟ ହସ୍ତାନ୍ତରୀତ ହୋଇଗଲା । ଘୋର ଅପମାନ ଏବଂ ହତାଶାରେ ବିଦ୍ୟାଧର ଷଣ୍ଢ ଆତ୍ମହତ୍ୟାକଲେ । ସେତେବେଳକୁ ତାଙ୍କ ପୁତ୍ର ଜଗଦୀଶ ଷଣ୍ଢ ନରେନ୍ଦ୍ର ବାହାଦୁର ନାବାଳକ । ସାବାଳକ ହେବା ପରେ ମଧ୍ୟ ତାଙ୍କର ରାଜ୍ୟରେ କୌଣସି ଅଧିକାର ରହିଲା ନାହିଁ । ରାଜ୍ୟରେ ବର୍ଦ୍ଧମାନ ରାଜାଙ୍କର ପ୍ରଜାଙ୍କ ଉପରେ ଅତ୍ୟାଚାର ସାଙ୍ଗକୁ ଇଂରେଜମାନଙ୍କର ଷଡ଼ଯନ୍ତ୍ର ତାଙ୍କୁ ବ୍ୟଥିତ କଲା । ଅକାଳରେ କର୍କଟ ରୋଗାକ୍ରାନ୍ତ ହୋଇ ସେ ଇହଧାମ ତ୍ୟାଗ କଲେ । ତାଙ୍କର ବିଧବା ରାଣୀ ଭାବବତୀ ପାଟମହାଦେଈ ଦୁଇଟି କନ୍ୟା, ନକ୍ଷତ୍ରମାଳି ଓ ରତ୍ନମାଳିଙ୍କୁ ଧରି ନିତାନ୍ତ ଅସହାୟ ହୋଇପଡ଼ିଲେ । ରତ୍ନମାଳିଙ୍କର ବୟସ ସେତେବେଳକୁ ମାତ୍ର ଚାରିବର୍ଷ ।

ଶୈଶବରୁ ହିଁ ରତ୍ନମାଳି ଜେମାଙ୍କର ବିକଶିତ ବ୍ୟକ୍ତିତ୍ୱର ପରିଚୟ ମିଳିଥିଲା । ଗତାନୁଗତିକତା, ନୀତି ନିୟମର ବନ୍ଧନ, ଅଯଥା କଟକଣା ବିରୋଧରେ ସେ ଆଦ୍ୟରୁ ହିଁ ସ୍ୱର ଉତ୍ତୋଳନ କରିଆସିଛନ୍ତି । ତଥାକଥିତ ରାଜପରିବାରରେ ସ୍ନାନ, ଭୋଜନ, ମର୍ଦ୍ଦନ, ଶୟନ ଇତ୍ୟାଦି କାଳରେ ଦାସଦାସୀଙ୍କର ସହାୟତା ସେ ଆଦୌ ଗ୍ରହଣ କରୁନଥିଲେ । ଦାସଦାସୀଙ୍କ ସାହଚର୍ଯ୍ୟରେ ପଙ୍ଗୁପ୍ରାୟ ଜୀବନଚର୍ଯ୍ୟା ତାଙ୍କ ପକ୍ଷରେ ଅତ୍ୟନ୍ତ ହାସ୍ୟାସ୍ପଦ ଥିଲା । ସେ ଗୃହର ସୀମିତ ପରିଧି ମଧ୍ୟରୁ ବାହାରିଯାଇ ସାଧାରଣ ଜୀବନସ୍ରୋତରେ ମିଶିଯିବାକୁ ଭଲପାଉଥିଲେ । ସେ କେତେବେଳେ ନିସ୍ତବ୍ଧ ଦ୍ୱିପ୍ରହରରେ ସମାଜରେ ଅସ୍ପୃଶ୍ୟ ପାଲୁଣୀକୁ ଛୁଇଁ କିଛି ଅଘଟଣ ନ ଘଟିବାରେ ଆଶ୍ୱସ୍ତ ହେଲେଣି ତ କେତେବେଳେ ଆଖପାଖର ଶିଶୁମାନଙ୍କର ନେତା ସାଜି ବାଡ଼ି ବଗିଚାରେ କିଛି ଗୋଟାଏ ଆବିଷ୍କାର କରିବାରେ ପ୍ରବୃତ୍ତ ହେଲେଣି । ସେଥିପାଇଁ ପରିବାରରେ ବୟୋଜ୍ୟେଷ୍ଠମାନଙ୍କ ପାଖରୁ ତାଙ୍କୁ ବହୁ ଆକଟ ଶୁଣିବାକୁ ହୋଇଛି, ସେ କିନ୍ତୁ ସେଥିପ୍ରତି କେବେହେଲେ କର୍ଣ୍ଣପାତ କରିନାହାନ୍ତି ।

ନେତୃତ୍ୱ ନେବା ତାଙ୍କର ଜନ୍ମଗତ କଳା । ଅତି ଅଳ୍ପ ବୟସରୁ ସେ ରାଜନୀତି ସଂସ୍ପର୍ଶରେ ଆସିଥିଲେ । ଆଠଗଡ଼ ରଜାଙ୍କର ନାତି ନାରାୟଣ ବୀରବର ସାମନ୍ତଙ୍କର କୁଜଙ୍ଗ ରାଜପରିବାର ସହ ଘନିଷ୍ଠ ସଂପର୍କ ଥିଲା । ସେ ଇନ୍ଦୁପୁର ଜମିଦାର ବଂଶରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ତାଙ୍କ ମାମୁଁ ବଳରାମ ସାମନ୍ତଙ୍କର ପୋଷ୍ୟପୁତ୍ର ହୋଇ ଯାଇଥିଲେ । ୧୯୨୦ ମସିହାରେ କଟକର ରେଭେନ୍ସା କଲେଜ୍‌ରେ ଅଧ୍ୟୟନ କରୁଥିବା ସମୟରେ ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନ ଆହ୍ୱାନରେ ସେ କଲେଜ୍‌ପଢ଼ା ତ୍ୟାଗକରିଥିଲେ । ଭବିଷ୍ୟତର ସମସ୍ତ ଆଶା ଆକାଂକ୍ଷାକୁ ଜଳାଞ୍ଜଳି ଦେଇ, ପାଠପଢ଼ା ପରିତ୍ୟାଗକରି, ଗାନ୍ଧୀଜୀଙ୍କର ଅସହଯୋଗ ଆନ୍ଦୋଳନରେ ଯୋଗଦେବାରେ ସେ ଥିଲେ ଭାରତର ପ୍ରଥମ ଛାତ୍ର । ତାଙ୍କର ପ୍ରୋତ୍ସାହନରେ କୁଜଙ୍ଗ ରାଣୀ ଭାବବତୀ ପାଟମହାଦେଈ ଭାରତର ସ୍ୱାଧୀନତା ଆନ୍ଦୋଳନରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିଲେ । ସମଗ୍ର କୁଜଙ୍ଗ ଅଞ୍ଚଳରେ ରାଜନୈତିକ ତତ୍ପରତା ଦେଖାଦେଇଥିଲା । ପାଟମହାଦେଈଙ୍କ ବାସଗୃହ ଥିଲା ସମସ୍ତ କାର୍ଯ୍ୟପନ୍ଥା ନିର୍ଣ୍ଣୟ କରିବାର ପୀଠସ୍ଥଳୀ । ସେଠାକୁ ରମାଦେବୀ, ମାଳତୀ ଦେବୀ, ସରଳାଦେବୀ, ଅନ୍ନପୂର୍ଣ୍ଣା ଦେବୀ ପ୍ରଭୃତି ବାରମ୍ବାର ଆସୁଥିଲେ ଏବଂ ସେ ଅଞ୍ଚଳର ଲୋକଙ୍କୁ ଦେଶପ୍ରେମରେ ଉଦ୍‌ବୋଧିତ କରୁଥିଲେ । ହାଟବଜାର ପରି ଜନସମାଗମ ସ୍ଥାନରେ ସଭା ଅନୁଷ୍ଠିତ ହେଉଥିଲା । ସେଠାକୁ ନବକୃଷ୍ଣ ଚୌଧୁରୀଙ୍କ ଭଳି ନେତାମାନେ ମଧ୍ୟ ଯାଉଥିଲେ ।

ଅସହଯୋଗ ଆନ୍ଦୋଳନ ଯେତେବେଳେ ପ୍ରବଳ ଆକାର ଧାରଣକଲା ଇଂରେଜ ସରକାରଙ୍କ କୋପଦୃଷ୍ଟି ସେହିଠାରେ କେନ୍ଦ୍ରୀଭୂତ ହେଲା । ଦୁର୍ଯ୍ୟୋଧନ ପଟ୍ଟନାୟକ, ମାଗୁଣି ରଥ, ଜଗନ୍ନାଥ ଶତପଥୀ ଓ ଆହୁରି ଅନେକ ନିଷ୍ଠାପର କର୍ମୀଙ୍କର ସ୍ୱାଧୀନ ଭାବରେ ଆନ୍ଦୋଳନ କରିବା ବାଧାପ୍ରାପ୍ତ ହେଲା । ସେତେବେଳେ ରତ୍ନମାଳି ଜେମାଙ୍କର ବୟସ ତୁଳନାରେ କାର୍ଯ୍ୟଭାର ଗ୍ରହଣ କରିବାର ଦକ୍ଷତାରେ ସମସ୍ତେ ଅଭିଭୂତ ହୋଇପଡ଼ିଥିଲେ । ସେ ଆନ୍ଦୋଳନକାରୀମାନଙ୍କର ରହିବା, ଖାଇବାର ସମସ୍ତ ବନ୍ଦୋବସ୍ତ କରୁଥିଲେ । ସେମାନଙ୍କୁ ଗିରଫଦାରିରୁ ରକ୍ଷାକରିବାକୁ ସେଠାକୁ ଆସୁଥିବା ଇଂରେଜ ସିପାହୀମାନଙ୍କୁ କୌଶଳରେ ଅନ୍ୟତ୍ର ବିଦା କରି ଦେଉଥିଲେ । ସେ ପ୍ରଖର ପ୍ରତ୍ୟୁତ୍ପନ୍ନମତି-ସମ୍ପନ୍ନା ଥିଲେ । ଗୋପନରେ ଲୁଚି ବୁଲୁଥିବା ଆନ୍ଦୋଳନକାରୀମାନଙ୍କର ଚିଠିର ଠାରଭାଷାକୁ ସେ ବୁଝିପାରୁଥିଲେ ଏବଂ ସମୟୋଚିତ ସାହାଯ୍ୟ ସହଯୋଗ କରୁଥିଲେ । ପ୍ରତ୍ୟକ୍ଷଭାବେ ରାଜନୀତିରେ ଯୋଗଦେବାର ବୟସ ତାଙ୍କର ହୋଇନଥିଲେ ସୁଦ୍ଧା ସେ ତାଙ୍କ ମାମାଙ୍କ ସହ ସଭାସମିତିରେ ଯୋଗ ଦେବାପାଇଁ ଏବଂ ଲୁଣମରା ଆନ୍ଦୋଳନରେ ଯିବାପାଇଁ ଉତ୍କଣ୍ଠା ପ୍ରକାଶ କରୁଥିଲେ ।

ନାରାୟଣ ବୀରବର ସାମନ୍ତ ତାଙ୍କ ଜୀବନୀରେ ଉଲ୍ଲେଖ କରିଛନ୍ତି, 'ଗଉଡ଼ଗୁଆଳୀ' ପ୍ରଧାନ କୁରୁକ୍ଷେତ୍ରରେ ଅନ୍ତତଃ ଦଶହଜାର ଲୋକ ଏକତ୍ରିତ

ହୋଇଥିଲେ । ''କାଳିଆପାଟ କେନ୍ଦ୍ରର ବିଶେଷତ୍ୱ ହେଲା, ସେଠାରେ ପାରାଦ୍ୱୀପର ବିଧବା ରାଣୀ ଭାବବତୀ ପାଟମହାଦେବୀଙ୍କ ନେତୃତ୍ୱରେ କେବଳ କୈବର୍ତ୍ତ ରମଣୀମାନେ ଶତ ସହସ୍ର ସଂଖ୍ୟାରେ ବାହାରି ଆସିଲେ । ପାରାଦ୍ୱୀପ କେନ୍ଦ୍ରର ବିଶେଷତ୍ୱ ହେଉଛି, ସେଠାରେ ଭାବବତୀଙ୍କ କନିଷ୍ଠା କନ୍ୟା ମାତ୍ର ତେରବର୍ଷ ବୟସ୍କା ରତ୍ନମାଳି ଜେମା ନେତୃତ୍ୱ ପ୍ରଦାନ କରୁଥିଲେ ଓ ସେଠାରେ ଆବାଳ ବୃଦ୍ଧବନିତା ମଧ୍ୟରେ ଭେଦାଭେଦ ରହିଲା ନାହିଁ ।''

ସ୍ୱାଧୀନତା ଆନ୍ଦୋଳନରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିବା ପାଇଁ ରାଜନବରରୁ ରାଜରାସ୍ତାକୁ ଓହ୍ଲେଇ ଆସିବାରେ ଏବଂ ଲବଣ ସତ୍ୟାଗ୍ରହରେ ନେତୃତ୍ୱ ନେବାରେ ଭାବବତୀ ପାଟମହାଦେଈ ଭାରତର ପ୍ରଥମ ରାଜବଂଶୀୟା ମହିଳା । ରାଜବଂଶର ସମସ୍ତ ଅହମିକାକୁ ପଦାନତ କରି ସେ ନିଜ ମସ୍ତକରେ ଲୁଣବୋଝ ଧରି ଲବଣ ସତ୍ୟାଗ୍ରହରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଏପରି ମହନୀୟ ତ୍ୟାଗପୂତ ଜୀବନର କୌଣସି ପଟାନ୍ତର ନାହିଁ ।

ଇତି ମଧ୍ୟରେ ରତ୍ନମାଳି ଜେମାଙ୍କର ଜ୍ୟେଷ୍ଠା ଭଗିନୀ ନକ୍ଷତ୍ରମାଳି ଜେମାଙ୍କର ବିବାହ ଘୁମୁସରର କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ବଂଶଜ ରାଜା ପଦ୍ମନାଭ ଭଞ୍ଜଙ୍କ ଜ୍ୟେଷ୍ଠପୁତ୍ର ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ସହିତ ସମ୍ପନ୍ନ ହୋଇସାରିଥିଲା ।

ରତ୍ନମାଳିଙ୍କର ବୟସ ବଢ଼ିବା ସହିତ ସେ ପରାଧୀନ ଭାରତର ଦୁରବସ୍ଥା ଦେଖି ମର୍ମାହତ ହୋଇପଡୁଥିଲେ । ସେ ପୁରପଲ୍ଲୀର ନାରୀମାନଙ୍କ ସହିତ ସୌହାର୍ଦ୍ଦ୍ୟ ସ୍ଥାପନ କରି ସେମାନଙ୍କୁ ସେମାନଙ୍କ କର୍ତ୍ତବ୍ୟବୋଧ ସଂପର୍କରେ ସଚେତନ କରୁଥିଲେ, ଜାଗ୍ରତ କରୁଥିଲେ । ଗୃହକୋଣରେ ରହି ସେମାନଙ୍କ ପ୍ରତିଭାକୁ ବ୍ୟର୍ଥ ହେବାକୁ ନଦେଇ କାର୍ଯ୍ୟକାରୀ କରିବାକୁ ଚେଷ୍ଟାକରୁଥିଲେ । ସୂତା କାଟିବା, ଖଦଡ଼ ପିନ୍ଧିବା, ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ଇତ୍ୟାଦି ବିଷୟରେ ସେମାନଙ୍କୁ ପ୍ରାଞ୍ଜଳ ଭାବରେ ବୁଝେଇପାରୁଥିଲେ । ପୁଅ ହେଉ ବା ଝିଅ ହେଉ ସମାଜରେ ସେମାନଙ୍କର ସମାନ ଅଧିକାର ଅଛି ବୋଲି ସେ ମନେକରୁଥିଲେ । ପରବର୍ତ୍ତୀ କାଳରେ ବିଧାନସଭା ଅଧିବେଶନଠାରୁ ଆରମ୍ଭକରି ବିଭିନ୍ନ ସଭାସମିତିରେ ସେ ଏହି ବିଷୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ତାଙ୍କର କଥନଶୈଳୀ, ଦୃପ୍ତ ଠାଣି ସହିତ ସୁକୋମଳ ସ୍ୱର ଶ୍ରୋତାମାନଙ୍କୁ ପ୍ରଭାବିତ କରିପାରୁଥିଲା ।

ଏହି ସମୟରେ ଅକସ୍ମାତ ରାଣୀ ଭାବବତୀ ପାଟମହାଦେଈ ଅସୁସ୍ଥ ହୋଇ ପଡ଼ିଲେ । ନାନାପ୍ରକାର ଚିକିତ୍ସା ପରେ ଦୁଃସାଧ୍ୟ କର୍କଟ ରୋଗରେ ଆକ୍ରାନ୍ତ ବୋଲି ଜଣାପଡ଼ିଲା । ରୋଗମୁକ୍ତ ହେବାର ଆଶା କ୍ଷୀଣ ଜାଣିପାରି ସେ କନିଷ୍ଠା କନ୍ୟା ରତ୍ନମାଳିଙ୍କୁ ପାତ୍ରସ୍ଥ କରିବାକୁ ବ୍ୟାକୁଳ ହୋଇପଡ଼ିଲେ । ପରିବାରର ସହାୟକ ଏବଂ

ବନ୍ଧୁ ନାରାୟଣ ବୀରବର ସାମନ୍ତଙ୍କୁ ଏ ଦିଗରେ ସାହାଯ୍ୟ କରିବାକୁ ଅନୁରୋଧ କଲେ । ସାମନ୍ତ ମଧ୍ୟ ନିଜର ପରିଚିତ ମହଲରେ ଏଥିପାଇଁ ଯୋଗାଯୋଗ ସ୍ଥାପନକଲେ । ତାଙ୍କର ଜଣେ ବନ୍ଧୁ ରଘୁନାଥ ମହାନ୍ତି ନିଜେ ବୀରବର ସାମନ୍ତ ରତ୍ନମାଳିଙ୍କୁ ବିବାହ କରନ୍ତୁ ବୋଲି ପ୍ରସ୍ତାବ ଦେଲେ । ତେଣେ ଉଭୟ ପରିବାରର ବନ୍ଧୁ ଜୟକୃଷ୍ଣ ନାମକ ଜଣେ ବ୍ୟକ୍ତି ମଧ୍ୟ ଏହିପରି ଏକ ପ୍ରସ୍ତାବ ଉତ୍‌ଥାପନ କଲେ । ସୁତରାଂ ଉଭୟ ପରିବାରରେ ଏ ବିଷୟରେ ଆଲୋଚନା ହୋଇ ବିବାହ ପ୍ରାୟ ସ୍ଥିର ହୋଇସାରିଥିଲା । ନାରାୟଣ ବୀରବର ସାମନ୍ତ ମଧ୍ୟ ମାନସିକ ଭାବରେ ଏଥିପାଇଁ ପ୍ରସ୍ତୁତ ହୋଇସାରିଥିଲେ । ଭାବବତୀ ପାଟମହାଦେଈଙ୍କର ଏପରି ଏକ ପ୍ରସ୍ତାବରେ ସମ୍ମତ ନ ହେବାର ପ୍ରଶ୍ନହିଁ ନଥିଲା । କିନ୍ତୁ ବିବାହ ଏବଂ ସାଂସାରିକ ଜୀବନପ୍ରତି ବିମୁଖ ଜେମା ବିବାହ ନିମନ୍ତେ ରାଜି ହୋଇନଥିଲେ, ସ୍ପଷ୍ଟ ମନାକରିଦେଇଥିଲେ । ତତ୍କାଳୀନ ରକ୍ଷଣଶୀଳ ପରିବେଶରେ ଜେମାଙ୍କର ଏପରି ଏକ ସିଦ୍ଧାନ୍ତ ତୁମୁଳ ଆଲୋଡ଼ନ ସୃଷ୍ଟିକରିଥିଲା ।

ପାଟମହାଦେଈଙ୍କର ଦୁରାରୋଗ୍ୟ ବ୍ୟାଧି କ୍ରମଶଃ ବୃଦ୍ଧିପାଇବାକୁ ଲାଗିଲା । ରୋଗଯନ୍ତ୍ରଣା ସହିତ କନିଷ୍ଠା ଜେମାଙ୍କ ପାଇଁ ତାଙ୍କର ଦୁଶ୍ଚିନ୍ତାର ଅନ୍ତ ନଥିଲା । ସେତେବେଳେ ନାରାୟଣ ବୀରବର ସାମନ୍ତ କାରାଗାରରେ । ଏପରି ଅସହାୟ ଅବସ୍ଥାରେ ବେଳକୁ ବେଳ ଶାରୀରିକ ତଥା ମାନସିକ ଦୁର୍ଭୋଗରେ ସେ କାତର ହୋଇପଡ଼ିଲେ । ପରିଶେଷରେ ମାଆଙ୍କର କଷ୍ଟ ଦେଖି ଜେମା ବିବାହ ନିମନ୍ତେ ସମ୍ମତ ହେଲେ । ଉଭୟ ପରିବାର ଏଥିରେ ଆଶ୍ୱସ୍ତ ହେଲେ । ଜେମାଙ୍କର ବିବାହ ନିମନ୍ତେ ଅସମ୍ମତି ନାରାୟଣ ବୀରବର ସାମନ୍ତଙ୍କର ଲୌହ ସଦୃଶ ଦୃଢ଼ ବ୍ୟକ୍ତିତ୍ୱକୁ ଦୋହଲାଇଦେଇଥିଲା । କାରାଗାର ମଧ୍ୟରେ ଏହି ଆଘାତ ତାଙ୍କୁ ବାରମ୍ବାର ବିଚଳିତ ଏବଂ ବିବ୍ରତ କରୁଥିଲା ବୋଲି ସେ ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଦଶମାସ ପରେ କାରଗାରରୁ ମୁକ୍ତ ହୋଇ ଫେରିଲାବେଳକୁ ସେ ଏକ ଭିନ୍ନ ବ୍ୟକ୍ତିରେ ପରିଣତ ହୋଇସାରିଥିଲେ । ତାଙ୍କ ନିଜସ୍ୱ ଭାଷାରେ, ‘‘ମୁଁ ଯେତେ଼ କର୍ମୀ ଥିଲି ତେତେ଼ ଭାବୁକ ନଥିଲି । ମୋର ହୃଦୟ ଥିଲା, କିନ୍ତୁ ଭାବ ନଥିଲା । ଦାନ ଥିଲେ କଣ ହେବ ଦୟା ନଥିଲା । ମୋଟ ଉପରେ ମୁଁ ବୀରହୋଇ ବନ୍ଦୀଶାଳାକୁ ଯାଇଥିଲି, ଫେରିଲି ଗୋଟେ କବି ହୋଇ– କେଉଁ ପରଶ ପଥର ସ୍ପର୍ଶରେ ପାଠକେ ବିଚାରକରିବେ ।’’

୧୯୩୧ ମସିହା ଜ୍ୟେଷ୍ଠ ମାସରେ ରତ୍ନମାଳି ଜେମା ଓ ନାରାୟଣ ବୀରବର ସାମନ୍ତଙ୍କର ବିବାହ ସମ୍ପନ୍ନ ହେଲା । କିନ୍ତୁ ପରିତାପର ବିଷୟ ସେମାନଙ୍କ ବିବାହର ଏକବର୍ଷ ମଧ୍ୟରେ ପାଟମହାଦେଈଙ୍କର ବିୟୋଗ ହେଲା । ଯଦିଓ ପୂର୍ବରୁ ଜଣାଥିଲା, ତଥାପି ମାଆଙ୍କ ମୃତ୍ୟୁରେ ଜେମା ଶୋକାଭିଭୂତ ହୋଇପଡ଼ିଲେ । ତାଙ୍କୁ ସାନ୍ତ୍ୱନା ଦେବାପାଇଁ ବା ତାଙ୍କ ଦୁଃଖରେ ସମଭାଗୀ ହେବାପାଇଁ ଆପଣାର ବୋଲି କେହି

ନଥିଲେ । ବହୁଜନ ପରିବେଷ୍ଟିତ ହେଲେ ମଧ୍ୟ ସେ ନିଜକୁ ଏକାକିନୀ ମନେକଲେ । ଗୋଟିଏ ପାଖରୁ ସମସ୍ତ ବନ୍ଧନ ଛିନ୍ନ ହୋଇଯିବାଦ୍ୱାରା ସାମନ୍ତଙ୍କ ସହ ମିଳିତ ହୋଇ ସଂପୂର୍ଣ୍ଣ ରୂପେ ନିଜକୁ ଦେଶସେବାରେ ନିୟୋଜିତ କରିଦେଲେ ।

ଅଧିକାଂଶ ସମୟ ସେ ଗାଁର ଝିଅବୋହୂଙ୍କୁ ସୂତାକାଟି ଲୁଗା ବୁଣିବାପାଇଁ ଉତ୍ସାହିତ କରୁଥିଲେ । ଅବସର ସମୟ ବୃଥାରେ ଅଳସରେ ନ କଟେଇ କିପରି ସେମାନେ ରୋଜଗାରକ୍ଷମ ଏବଂ ଆତ୍ମନିର୍ଭରଶୀଳ ହୋଇପାରିବେ ସେଥିପ୍ରତି ସେ ଦୃଷ୍ଟିଦେଉଥିଲେ । ଗୃହକୋଣରୁ ବାହାରିଆସି ସେମାନଙ୍କର ଦୃଷ୍ଟିକୋଣ ଓ ଚିନ୍ତାଧାରା ପ୍ରସାରିତ ହେଉବୋଲି ସେ ସର୍ବଦା ଚେଷ୍ଟାକରୁଥିଲେ ।

୧୯୩୮ ମସିହାରେ ଯେତେବେଳେ ମହାତ୍ମା ଗାନ୍ଧୀ ଡେଲାଙ୍ଗ ବେରବୋଇ ଆଶ୍ରମରେ ମାର୍ଚ୍ଚ ୨୫ରୁ ୩୧ ତାରିଖ ଯାଏ ଅବସ୍ଥାନ କରୁଥିଲେ ସେତେବେଳେ ଓଡ଼ିଶାର କୋଣଅନୁକୋଣରୁ ସ୍ୱାଧୀନତା ସଂଗ୍ରାମୀମାନେ ଆସି ତାଙ୍କ ସହ ଯୋଗ ଦେଲେ । ପୁରୁଷ ଓ ମହିଳା କଂଗ୍ରେସ କର୍ମୀମାନେ ଏକତ୍ରିତ ହୋଇ ସ୍ୱାଧୀନତାର ବାଣୀ ପୁରପଲ୍ଲୀରେ ପ୍ରଚାର କରିବାକୁ ଲାଗିଲେ । ସେମାନଙ୍କ ମଧ୍ୟରେ ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ନାରାୟଣ ବୀରବର ସାମନ୍ତ, ନବକୃଷ୍ଣ ଚୌଧୁରୀ, ରମାଦେବୀ, ମାଳତୀ ଦେବୀ, ସରଳା ଦେବୀ, ଅନ୍ନପୂର୍ଣ୍ଣା ମହାରଣା ପ୍ରମୁଖ ଅନ୍ୟତମ । ସେତେବେଳେ ସେହି ବିରାଟ ଜନ ସମାଗମରେ ଚାରିବର୍ଷର ଶିଶୁପୁତ୍ରଟି ସହ ରତ୍ନମାଳି ଜେମା ସାମିଲ ହୋଇଯାଇଥିଲେ । ଗାନ୍ଧୀଜୀଙ୍କର ଭାଷଣ ଓ ଆଦର୍ଶରେ ସେ ଗଭୀର ଭାବରେ ଅନୁପ୍ରାଣିତ ହୋଇପଡ଼ିଲେ । ଗାନ୍ଧୀଜୀ ତାଙ୍କ ଭାଷଣରେ କହିଲେ ଯେ ଯେଉଁ ଦେଶରେ ଲୋକମାନେ ପେଟପୂରା ମୁଠାଏ ଖାଇବାକୁ ପାଆନ୍ତି ନାହିଁ, ସେ ଦେଶରେ ସ୍ତ୍ରୀଲୋକମାନେ ଅଳଙ୍କାର ପରିଧାନ କରିବା ଉଚିତ୍ ନୁହେଁ । ଗାନ୍ଧୀଜୀଙ୍କର ଏହି କଥା ଜେମାଙ୍କର କୋମଳ ହୃଦୟକୁ ଏତେ ବେଶି ଆନ୍ଦୋଳିତ କଲା ଯେ ସେ ସେହି ମୁହୂର୍ତ୍ତରୁ ଗହଣାପିନ୍ଧିବା ପରିତ୍ୟାଗ କରିଥିଲେ ଏବଂ ଆଜିପର୍ଯ୍ୟନ୍ତ ସେ ଶୁଦ୍ଧ ଖଦଡ଼ ବସ୍ତ୍ର ବ୍ୟତୀତ ଅନ୍ୟ କିଛି ପରିଧାନ କରିନାହାନ୍ତି । ସେହି ଅବସ୍ଥାରେ ସେ ଏରସମା, ରାହାମା, ତିର୍ତ୍ତୋଲ ଅଞ୍ଚଳରେ ବୁଲି ବୁଲି ଗାନ୍ଧୀଜୀଙ୍କ ବାଣୀ ଓ ଆଦର୍ଶ ପ୍ରଚାର କରୁଥିଲେ । ରାହାମାର ଭୀମବାବାଜୀଙ୍କ ଆଶ୍ରମ ତାଙ୍କ ଭ୍ରମଣର କେନ୍ଦ୍ରସ୍ଥଳୀ ଥିଲା । ଭୀମବାବାଜୀ ଜଣେ ନିଷ୍ଠାପର କର୍ମୀ ଥିଲେ ଏବଂ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଯଥାସାଧ୍ୟ ସାହାଯ୍ୟ କରୁଥିଲେ ।

ରତ୍ନମାଳି ଜେମା ପ୍ରଥମ ସନ୍ତାନ ପୁତ୍ର ବିଶ୍ୱମ୍ଭରଙ୍କ ପରେ ପ୍ରତିଜ୍ଞା ଓ ବାଣୀ ଦୁଇ କନ୍ୟାଙ୍କର ଜନନୀ ହେବାର ଗୌରବ ଲାଭକରିଥିଲେ । ସେ କେବଳ ତିନୋଟି

ସନ୍ତାନଙ୍କର ଜନନୀ ନଥିଲେ– ସେ ମାଆପରି ସମଗ୍ର ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି କାମନା କରୁଥିଲେ । ସେ ମାଳତୀ ଦେବୀ ଓ ରମାଦେବୀଙ୍କ ସହିତ ଗାଁକୁ ଗାଁ ପାଦରେ ଚାଲି ଚାଲି ସୂତାକଟାର ପ୍ରଚାର କରୁଥିଲେ । ସେତେବେଳେ ଏବକା ପରି ରାସ୍ତାଘାଟର ସୁବିଧା ନଥିଲା । କେତେବେଳେ ନଈ ପାରିହୋଇ, କେତେବେଳେ କାଦୁଅରେ ପଶି, କେତେବେଳେ ମାଟି ଗୋଡ଼ି କି ହଳ ରାସ୍ତାରେ ଯିବାକୁ ପଡୁଥିଲା । ସେ କିନ୍ତୁ ଏସବୁ ବାଧାବିଘ୍ନକୁ ଖାତିର କରୁନଥିଲେ । ରାହାମାର ସାଇଲୋ ଗ୍ରାମରେ ଅଭାବୀ ଲୋକମାନଙ୍କୁ ସେ ଲୁଗା ବାଣ୍ଟିବାକୁ ଯାଇଥିଲେ । ସବୁ ଲୁଗା ବଣ୍ଟା ସରିବା ପରେ ଗରିବ ବୁଢ଼ୀଟିଏ ଆସି ପହଞ୍ଚିଲା । ଶତଛିନ୍ନ ବସ୍ତ୍ରଟିରେ ସେ ଉଲଗ୍ନ ପ୍ରାୟ ମନେହେଉଥିଲା । ବ୍ୟଥାତୁରା ଢେମା ଛୋଟିଆ ମଇଳା ଲୁଗାଟିଏ ପାଲଟିପକେଇ ନିଜେ ପିନ୍ଧିଥିବା ଶାଢ଼ୀଟିକୁ ବୁଢ଼ୀକୁ ଦେଇଦେଲେ । କଂଗ୍ରେସ କର୍ମୀ ପ୍ରଭାକର କଟକ ଯାଇ ଶାଢ଼ୀ କିଣି ଆଣିବା ପରେ ସେ ପଦାକୁ ବାହାରିଲେ । ସେତେବେଳେ ରାହାମାରେ ଆଜିକାଲି ପରି ବଜାର ନ ଥିଲା କି ଲୁଗାପଟା ମିଳୁ ନଥିଲା । ଅଧିକାଂଶ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ପାଇଁ କଟକ ଉପରେ ନିର୍ଭର କରିବାକୁ ପଡୁଥିଲା ।

ଆଉ ଥରକର ଘଟଣା । ୧୯୪୭ ମସିହା ଅଗଷ୍ଟ ୧୫ତାରିଖରେ ଭାରତ ସ୍ୱାଧୀନ ହେବାର ଖବର ପାଇ ସେ ଏତେ ବିହ୍ୱଳ ହୋଇପଡ଼ିଲେ ଯେ ତାଙ୍କ ପାଖରେ ଥିବା ସବୁ ଲୁଗାପଟା ଗରିବ ଲୋକମାନଙ୍କ ମଧ୍ୟରେ ବାଣ୍ଟିଦେଲେ । ଦେଖିବାବେଳକୁ ଘରେ ଖଣ୍ଡିଏ ବୋଲି ଆଉ ଲୁଗା ନାହିଁ । ବଜାରରୁ ଲୁଗା କିଣାହୋଇ ଆସିବା ପରେ ସେ ଗାଧୋଇବାକୁ ଗଲେ । ଏହିପରି ଅନେକ ଅନେକ ଅଭାବିତ ଘଟଣା ତାଙ୍କ ଜୀବନରେ ଘଟିଯାଇଛି ।

୧୯୫୫ ମସିହାରେ ଦଳେଇଘାଇ ଭାଙ୍ଗିବା ଫଳରେ ପ୍ରଳୟଙ୍କରୀ ବନ୍ୟା ପରେ ମହାମାରି ଓ ଦୁର୍ଭିକ୍ଷ ଦେଖାଦେଇଥିଲା । ସେ ନିଜ ଅମାରରେ ଯାହା ଧାନ ଥିଲା ବନ୍ୟା ପ୍ରପୀଡ଼ିତଙ୍କ ମଧ୍ୟରେ ବାଣ୍ଟିଦେଇଥିଲେ । ଓଡ଼ିଶାର ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ବସନ୍ତମଞ୍ଜରୀ ଦେବୀଙ୍କ ପ୍ରସ୍ତାବକ୍ରମେ ଦୁର୍ଗମ ଅଞ୍ଚଳକୁ ରିଲିଫ୍ ବାଣ୍ଟିବାକୁ ଯାଉଥିଲେ । ଚାଷୀମାନଙ୍କର ଖଜଣା ଛାଡ଼ କରିବା ପାଇଁ ସେ ସରକାରଙ୍କ ନିକଟରେ ଦାବୀକରି ସଫଳ ହୋଇଥିଲେ । ପାଖରେ ଯାହା କିଛି ଆୟ ଅଳଙ୍କାର ଥିଲା ବିକିଭାଙ୍ଗି ଲୋକଙ୍କ ପାଇଁ ଖର୍ଚ୍ଚକରିଦେଇଥିଲେ ।

ପ୍ରଥମ ପଞ୍ଚାୟତ ନିର୍ବାଚନରେ ଢେମା ପ୍ରତିଦ୍ୱନ୍ଦ୍ୱିତା କରି ଜୟଲାଭକଲେ । ସିଧାସଳଖ ରାଜନୀତି ମଧ୍ୟକୁ ତାଙ୍କର ଏହା ପ୍ରଥମ ପଦପାତ ହେଲେ ହେଁ, ପଦପାତର ଶୈଳୀ ଥିଲା ରାଜକୀୟ । ସମାଲୋଚନାକୁ ଭୃକ୍ଷେପ ନ କରି ନିଜସ୍ୱ ନିଷ୍ଠା ଏବଂ ଆନ୍ତରିକତା ସହ ସେ ନିଜକୁ ଜନସାଧାରଣଙ୍କ ସେବାରେ ସମର୍ପଣ କରିଦେଇଥିଲେ ।

ନାରୀଜାତିର ଉନ୍ନତିପାଇଁ ସେ ବିଶେଷ ସଜାଗ ଥିଲେ । ସେମାନଙ୍କୁ ସାକ୍ଷର କରିବା, ସେମାନଙ୍କର ଅଧିକାର ସଂପର୍କରେ ସେମାନଙ୍କୁ ସଚେତନ କରାଇବା, ବିଭିନ୍ନ କାର୍ଯ୍ୟଦ୍ୱାରା ରୋଜଗାର କରି ଆତ୍ମନିର୍ଭରଶୀଳ ହେବା, ସୁଚାରୁ ରୂପେ ପରିବାର ପରିଚାଳନା କରିପାରିବା ଇତ୍ୟାଦି ବିଷୟ ପ୍ରତି ସେ ବିଶେଷ ଦୃଷ୍ଟି ଦେଉଥିଲେ । ମହିଳାମାନେ କିପରି ଦାୟିତ୍ୱଶୀଳ ହୋଇ ସବୁ କ୍ଷେତ୍ରରେ ପାରଦର୍ଶିତା ଲାଭ କରିପାରିବେ ସେ କଥା ସେ ସବୁବେଳେ ସେମାନଙ୍କୁ ବୁଝାଉଥିଲେ । ସଭାସମିତିକୁ ଗଲାବେଳେ ଗାଁଗହଳରେ ସ୍ତ୍ରୀଲୋକମାନଙ୍କୁ ସାଙ୍ଗରେ ନେଇ ଯାଉଥିଲେ । ଗୃହକୋଣର ଆବଦ୍ଧ ପରିବେଶରୁ ମୁକ୍ତହୋଇ ସେମାନେ ପାଞ୍ଚଜଣଙ୍କ ସହ ମିଶି ପାଞ୍ଚକଥା ଶିଖନ୍ତୁ ବୋଲି ସେ ଚାହୁଁଥିଲେ । ଗ୍ରାମର ନିରକ୍ଷର ପ୍ରୌଢ଼ମାନଙ୍କୁ ମଧ୍ୟ ସାକ୍ଷର କରିବା ଦିଗରେ ସେ ପ୍ରଚେଷ୍ଟା କରିଥିଲେ । ଗ୍ରାମାଞ୍ଚଳରେ ରାସ୍ତାଘାଟ ଭଲ ନଥିବାରୁ ଯାତାୟାତର ସୁବିଧା ନଥିଲା । ରାସ୍ତା ନିର୍ମାଣ ପାଇଁ ସେ ବାରମ୍ବାର ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ ।

ରତ୍ନମାଳି ଜେମା ପଦପଦବୀରେ ଥାନ୍ତୁ ବା ନଥାନ୍ତୁ, ରାଜାରାଜୁଡ଼ାଙ୍କ ଶାସନ ଲୋପପାଇଯାଇଥାଉ ପଛେ, ତାଙ୍କ ବାସଗୃହ ପ୍ରାଙ୍ଗଣରେ ପ୍ରତିଦିନ ସଂଧ୍ୟାରେ 'ଦରବାର' ବସିବା ନିଶ୍ଚିତ । ଏକ ବିରାଟ ଦରି ବିଛାହୋଇଥିବ, ଆଖପାଖର ଲୋକମାନେ ନିଜର ଅଭାବ ଅସୁବିଧା ଓଜର ଆପତ୍ତି ନେଇ ଆସିଥିବେ, ଦର୍ଶକ ଏବଂ ଶ୍ରୋତା ମଧ୍ୟ ସମସଂଖ୍ୟାରେ ଏକତ୍ରୀତ ହୋଇଥିବେ । ଜେମା ଓ ସାମନ୍ତ ଗୋଟାଏ ପଟକୁ ବସିଥିବେ, ମାନ୍ୟଗଣ୍ୟ ଲୋକମାନେ ମଧ୍ୟ ସେଠାରେ ଉପସ୍ଥିତ ଥିବେ । ଆରମ୍ଭ ହବ ଦରବାର । କିଏ କାହା ଜମି ମାଡ଼ିବସିଛି, କିଏ କାହାର ନ୍ୟାଯ୍ୟଜମି ଅଧିକାର କରିବାକୁ ଦେଉନାହିଁ, ଭାଇଭାଗ ହୋଇପାରୁନାହିଁ, ଶାଶୁବୋହୂରେ ମନାନ୍ତର କଳିକଜିଆ, ଝିଅ ଶାଶୁଘରୁ ଚାଲିଆସିଛି, ସାଇପଡ଼ିଶାରେ ଗୋଳମାଳ, କାହା ଗୋରୁ କାହା ବାରିରେ କି ଜମିରେ ପଶିଗଲାଣି, ଗାଁ ଭିତରେ କାହା ପୁଅ କାହା ଝିଅକୁ ନେଇ ଚାଲିଗଲାଣି– ଇମିତି କୌଣସି ସମସ୍ୟା ନାହିଁ ଯାହା ଦରବାରରେ ପଡ଼େନାହିଁ । ସବୁ ବିଷୟ ସେଠାରେ ଆଲୋଚିତ ହୁଏ, ଖାଲି ଆଲୋଚିତ ହୁଏନାହିଁ, ସବୁ ସମସ୍ୟାର ଯଥାଯୋଗ୍ୟ ସମାଧାନ ମଧ୍ୟ ହୁଏ । ଅନେକ ଗରିବ ଲୋକ ମାଲିମକଦ୍ଦମାର ଅଯଥା ଖର୍ଚ୍ଚ ତଥା ମାନସିକ ଦୁର୍ଭୋଗରୁ ରକ୍ଷାପାଇଯାଆନ୍ତି । ଜେମାଙ୍କର ନ୍ୟାୟୋଚିତ ସିଦ୍ଧାନ୍ତକୁ ଏଡ଼େଇଦେବା ସେମାନଙ୍କ ପକ୍ଷରେ କଳ୍ପନାତୀତ । ସୁତରାଂ ସେହି ଅଞ୍ଚଳରେ ସଦାସର୍ବଦା ଏକ ଶାନ୍ତିପୂର୍ଣ୍ଣ ପରିବେଶ ତିଷ୍ଠିରହିଥାଏ । ସଂଧ୍ୟାବେଳେ ଦରବାର ବସିବାର ଦୃଶ୍ୟ ବେଶ୍ ଆମୋଦଦାୟକ । ଦରବାରରେ ବ୍ୟକ୍ତିଗତ ସମସ୍ୟାସବୁ ଆଲୋଚିତ ହେବା ପରେ ସେ ଅଞ୍ଚଳର ଅଭାବ ଅସୁବିଧା କଥା ପଡ଼େ । କୋଉ ସରକାରୀ

କାର୍ଯ୍ୟାଳୟକୁ ଯିବାକୁ ହେବ କି କେଉଁ ସ୍ଥାନକୁ ଦରଖାସ୍ତ କରିବାକୁ ହେବ ସେ ସବୁ ବିଷୟ ସେହିଠାରେ ହିଁ ନିର୍ଦ୍ଧାରିତ ହୁଏ । ଅନେକ ଅଭାବୀଲୋକ ଦରବାର ଶେଷହେବା ପରେ ଏକାନ୍ତରେ ମାମା(ଜେମା)ଙ୍କୁ ସାକ୍ଷାତ୍‌କରି କିଛି ସାହାଯ୍ୟ ନେଇ କୃତାର୍ଥ ହୋଇଥାନ୍ତି । ଏହି ଅବସରରେ କେତେକ ଧୂର୍ତ୍ତବ୍ୟକ୍ତି ମଧ ମାମାଙ୍କଠୁ କିଛି ସୁବିଧା ସୁଯୋଗ ହାସଲ କରିନେଇଥାନ୍ତି । ବେଳେବେଳେ ଦରବାର ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ବି ଚାଲିଥାଏ ।

ଅନ୍ୟ ଏକ ଘଟଣା କିପରି ଜେମାଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା, ତାହା ସେ 'Her Story'ର ଲେଖିକା ଇନ୍ଦିରା ଜେନାଙ୍କ ଆଗରେ ବର୍ଣ୍ଣନା କରିଛନ୍ତି । ଲୋକମାନଙ୍କର ହାନିଲାଭ ବୁଝିବାକୁ ତାଙ୍କୁ ସବୁବେଳେ ଦୂରଦୂରାନ୍ତରକୁ ଯିବାକୁ ପଡୁଥାଏ । ଅଗମ୍ୟ ରାସ୍ତାଘାଟରେ ବେଳେବେଳେ ଯେଉଁଠାରେ ସଂଧ୍ୟା ହୋଇଯାଏ ସେହି ନିକଟବର୍ତ୍ତୀ ଗ୍ରାମରେ ରାତ୍ରିଯାପନ କରିବାକୁହୋଇଥାଏ – ସମୟସମୟରେ ବିନା ଖାଦ୍ୟ ଏବଂ ବିନା ଶଯ୍ୟାରେ । ଏହିପରି ଏକ ରାତ୍ରୀରେ ସହକର୍ମୀମାନଙ୍କ ସହିତ ତାଙ୍କୁ ଜଣେ ଗ୍ରାମବାସୀଙ୍କ ବାରଣ୍ଡାରେ ରାତ୍ରି ଯାପନ କରିବାକୁ ହୋଇଥିଲା । ଅଦୂରରେ ନିରନ୍ଧ୍ର ଅନ୍ଧକାରରେ ଆଚ୍ଛନ୍ନ ବିସ୍ତୃତ ଧାନକ୍ଷେତ । ଆଖିକୁ ନିଦ ଆସୁନଥାଏ । ହଠାତ୍ ଦୂରରେ ବିନ୍ଦୁଏ ଆଲୋକ ସେ ଦେଖିବାକୁ ପାଇଲେ । ବିନ୍ଦୁଟି ନିକଟତର ହେବାରୁ ସେ ଜାଣିପାରିଲେ ଜଣେ ଲୋକ ଲଣ୍ଠନଟିଏ ଧରି ଦୌଡ଼ି ଦୌଡ଼ି ଆସୁଛି । ଜେମା ସେଠାରେ ରାତିରେ ଅଛନ୍ତି ଜାଣି ବ୍ୟାକୁଳ ଭାବେ ଛୁଟି ଆସିଛି । ଘରେ ତା'ର ସ୍ତ୍ରୀର ପ୍ରସବ ଯନ୍ତ୍ରଣାରେ ମୃତପ୍ରାୟ ଅବସ୍ଥା । ଜେମା ତୁରନ୍ତ ଚିକିତ୍ସକଙ୍କ ପାଖକୁ ଦୌଡ଼ାଦୌଡ଼ିକରି ସ୍ତ୍ରୀଲୋକଟିକୁ ସାହାଯ୍ୟ କରିପାରିଥିଲେ । କିନ୍ତୁ ଘଟଣାଟି ତାଙ୍କ ମନରୁ ଲିଭିନଥିଲା । ସେ ସମାଜରେ ଅନେକ ଅସହାୟା ବିଧବାଙ୍କୁ ଧାଇ ବା ମିଡ୍‌ୱାଇଫ ଟ୍ରେନିଂ ନେବାପାଇଁ ପ୍ରବର୍ତ୍ତାଇଥିଲେ । ପ୍ରତି ଗ୍ରାମରେ ଜଣେ ଧାଇ ରହିଲେ ସେ ଗ୍ରାମର ସ୍ୱାସ୍ଥ୍ୟାବସ୍ଥାରେ ନିଶ୍ଚୟ ଉନ୍ନତି ହୋଇପାରିବ– ବିଶେଷକରି ପ୍ରସୂତିମାନେ ବହୁଭାବରେ ଉପକୃତ ହୋଇପାରିବେ । ଯେ କୌଣସି ବିଷୟରେ ହେଲେ ବି ଜେମା ଅତ୍ୟନ୍ତ ଅଭିନିବେଶ ସହକାରେ ଚିନ୍ତାକରୁଥିଲେ । ବିଧବାମାନଙ୍କୁ ଧାଇଟ୍ରେନିଂ ଦେବା ସପକ୍ଷରେ ସେ କହିଛନ୍ତି ଯେ, ସଧବା ସ୍ତ୍ରୀଲୋକମାନଙ୍କର ସଂସାର ଜଞ୍ଜାଳ ରହିଛି । ସେମାନେ ଏ କାମ କରିବାକୁ ଆଗ୍ରହ ପ୍ରକାଶ କରିବେ ନାହିଁ । ଅବିବାହିତା ଝିଅମାନଙ୍କର ଅଭିଜ୍ଞତା ତ ନାହିଁ, ତା'ଛଡ଼ା ସମାଜରେ ଚଳପ୍ରଚଳ ହେବାରେ ସେମାନଙ୍କର କଟକଣା ରହିଛି । ବିଧବା ସ୍ତ୍ରୀଲୋକଟିଏ ପ୍ରାୟତଃ ପରିବାର ମଧ୍ୟରେ ଅପାଙ୍‌କ୍ତେୟ ଅବହେଳିତ ହୋଇ ରହିଥାଏ । ତା'ର ଜୀବନର ମୂଲ୍ୟବୋଧ ଆସ୍ତେ ଆସ୍ତେ ହଜିଯାଉଥାଏ । ସେ ଯଦି କିଛି କାମ ଦ୍ୱାରା ଅନ୍ୟର ଉପକାର

କରିପାରିବା ସହିତ ନିଜ ଗୋଡ଼ରେ ନିଜେ ଠିଆହୋଇପାରିଲା ତେବେ ତା'ର ଆତ୍ମପ୍ରତ୍ୟୟ ନିଶ୍ଚୟ ବୃଦ୍ଧିପାଇବ । ଜେମାଙ୍କର ଏହି ଦୂରଦର୍ଶିତା ପଲ୍ଲୀଅଞ୍ଚଳର ଅନେକ ନାରୀଙ୍କ ଜୀବନରେ ବିପୁଳ ପରିବର୍ତ୍ତନ ଆଣିଦେଇଥିଲା ।

ବିଧବାମାନଙ୍କ ପାଇଁ କେବଳ କର୍ମସଂସ୍ଥାନର ବ୍ୟବସ୍ଥା କରି ସେ ସ୍ଥିର ହୋଇ ନଥିଲେ, ଅଳ୍ପବୟସର ବିଧବାମାନଙ୍କର ପୁନର୍ବିବାହ କରାଇ ସେମାନଙ୍କ ଆଗରେ ଏକ ନୂତନ ଜୀବନର ମାର୍ଗ ଉନ୍ମୋଚନ କରିଦେଇଥିଲେ । ସମାଜରେ ସ୍ୱାମୀ ପରିବାର ପରିତ୍ୟକ୍ତା ମହିଳାମାନଙ୍କୁ ବିଭିନ୍ନ କର୍ମ ଯୋଗାଇବା ସହିତ ସମ୍ଭବହେଲେ ସେମାନଙ୍କୁ ଅନ୍ୟତ୍ର ବିବାହ ଦେବାର ବନ୍ଦୋବସ୍ତ କରୁଥିଲେ । ଏହି ସବୁ କାରଣରୁ ସମାଜର ନାନା ଦିଗରୁ ତାଙ୍କୁ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡୁଥିଲା । ସେ କିନ୍ତୁ ତାଙ୍କର ସ୍ୱଭାବସୁଲଭ ରୀତିରେ ସେ ସବୁକୁ ଖାତିର୍ କରୁନଥିଲେ । ସେ ଭଲଭାବେ ଜାଣିଥିଲେ ଯେ ଆମର ରକ୍ଷଣଶୀଳ ସମାଜରେ ନାରୀଟିଏ ପରିବାର ବାହାରେ ଆଦୌ ସୁରକ୍ଷିତ ନୁହେଁ । ସେଥିପାଇଁ ଯେ କୌଣସି ଉପାୟରେ ହେଉ ସେ ବିଧବା ବା ପରିତ୍ୟକ୍ତା ନାରୀମାନଙ୍କୁ ପରିବାରଭୁକ୍ତ କରିବାପାଇଁ ଚେଷ୍ଟାକରୁଥିଲେ । ବାଲ୍ୟବିବାହର ସେ ଥିଲେ ଘୋର ବିରୋଧୀ । ତାଙ୍କର ରାଜବଂଶୀୟ ଆଭିଜାତ୍ୟ ଓ ପ୍ରଭାବ ଯୋଗୁ ସମାଜର ପ୍ରତିକୂଳ ପରିସ୍ଥିତିକୁ ସମ୍ଭାଳିବା ତାଙ୍କ ପକ୍ଷରେ ସହଜସାଧ୍ୟ ଥିଲାବୋଲି ସେ ନିଜେ ସ୍ୱୀକାର କରିଛନ୍ତି ।

ସେ କୁଆଡ଼େ ଯିବା ଆସିବା କରିବା ସମୟରେ ରେଳଷ୍ଟେସନ୍ କି ବସ୍‌ଷ୍ଟାଣ୍ଡରେ କୌଣସି ଅସହାୟ ନାରୀ ବା ପୁରୁଷଙ୍କୁ ଭେଟିଲେ ଆଗପଛ ନ ଭାବି ସେମାନଙ୍କୁ ସାଙ୍ଗରେ ଘରକୁ ନେଇ ଆସୁଥିଲେ, ପରେ ବୁଝିବିଚାରି ସେମାନଙ୍କର ଥଇଥାନ କରୁଥିଲେ । ଏଭଳି କେତେଜଣ ଲୋକ ସର୍ବଦା ତାଙ୍କର କଟକର ଜୋବ୍ରାସ୍ଥିତ କୁଜଙ୍ଗକୁଟୀରରେ ଏବଂ ପାରାଦ୍ୱୀପ ନଅରରେ ଦେଖିବାକୁ ମିଳୁଥିଲେ । ସେ କେତେ ସମ୍ବଳହୀନ ଝିଅଙ୍କର ବିବାହ କରାଇଦେଇଛନ୍ତି ତାର ହିସାବନାହିଁ । ପଦ୍ମାନାନୀ, ଅନ୍ନପୂର୍ଣ୍ଣା, କେଳି, ସୁମତି, ଶୁକ, ପ୍ରମିଳା, ଚନ,ବାସନ୍ତୀ, ଗୋକୁଳଚନ୍ଦ୍ର ରାୟ, ଧଡ଼ି, ଅଜଗର ବାବାଜୀ, ହେମନ୍ତ, ଆହୁରି ଅନେକ– ସେ ଏକ ଲମ୍ବା ତାଲିକା । ସମାଜର ଦୁର୍ଗତ ଅସହାୟମାନଙ୍କ ପାଇଁ ତାଙ୍କର ବାସଗୃହ ଏବଂ ହୃଦୟର ଦ୍ୱାର ଅହର୍ନିଶ ଉନ୍ମୁକ୍ତ ରହିଥିଲା ।

୧୯୫୭ ମସିହାରେ କଂଗ୍ରେସରୁ ମନୋନୀତହୋଇ ସେ ତିର୍ତ୍ତୋଲରୁ ବିଧାନସଭା ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ପରାଜିତ ହୋଇଥିଲେ । ସେଥିପାଇଁ ତାଙ୍କ ମନରେ କୌଣସି କ୍ଷୋଭ ନଥିଲା । ରାଜନୀତିର ପଦବୀ ନ ଥାଇ ମଧ୍ୟ ସେ ତାଙ୍କ ଅଞ୍ଚଳର ଜନନେତ୍ରୀ ଥିଲେ । ନିର୍ବାଚନ ସଭାରେ ବିପକ୍ଷଦଳର ନିନ୍ଦାଗାନରେ ସେ ବିଚଳିତ ହୋଇନଥିଲେ ।

ପ୍ରତ୍ୟୁତ୍ତର ଦେବାପାଇଁ ସୁଯୋଗ ଅପେକ୍ଷାରେ ଥିଲେ । ୧୯୬୧ ମସିହାରେ ସେ ପୁନର୍ବାର କଂଗ୍ରେସରୁ ମନୋନୟନ ପାଇ ଏରସମା ନିର୍ବାଚନ ମଣ୍ଡଳୀରୁ ବିଧାନସଭା ପାଇଁ ପ୍ରତିଦ୍ୱନ୍ଦ୍ୱିତା କଲେ । ସେ ବିରୋଧୀଦଳକୁ କହିଥିଲେ— ସେମାନେ ସାମାନ୍ୟ ନିର୍ବାଚନରେ ଜୟଲାଭ କରିବେ ବୋଲି ତାଙ୍କ ନିଜ ଅଞ୍ଚଳର ଝିଅର ନିନ୍ଦାଗାନ କରୁଛନ୍ତି— ସେଥିପାଇଁ ସେମାନେ ଲଜ୍ଜିତ ହେବା ଉଚିତ । ପ୍ରକୃତରେ ଜେମାଙ୍କର ଏହି ଉତ୍ତରରେ ପ୍ରତିବାଦୀ ପକ୍ଷ କୌଣସି ଉଚ୍ଚବାଚ ନ କରି ନୀରବ ରହିଥିଲେ । ସେହି ସମୟରେ ସେ ଗାଁଗହଳରେ ବୁଲି ସାଧାରଣ ସ୍ତ୍ରୀଲୋକମାନଙ୍କ ସହିତ ମିଶି ସେମାନଙ୍କର ଅଭାବ ଅସୁବିଧା କଥା ବୁଝିଥିଲେ । ସେମାନଙ୍କ ଘରେ ଏକତ୍ର ରହିବା ଫଳରେ ସେମାନଙ୍କ ସହିତ ଏକ ଅନ୍ତରଙ୍ଗ ସଂପର୍କ ଗଢ଼ିଉଠିଥିଲା । ଜେମାଙ୍କର ଉଦାର ସ୍ନେହଶୀଳ ବ୍ୟକ୍ତିତ୍ୱ ପଲ୍ଲୀର ପୁରନାରୀମାନଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ଆବାଳ ବୃଦ୍ଧ ପୁରୁଷ ସମାଜ ମଧ୍ୟ ସେ ପ୍ରଭାବରୁ ମୁକ୍ତ ନ ଥିଲେ । ବିପୁଳ ଭୋଟରେ ସେଥର ରତ୍ନମାଳୀ ଜେମା ବିଧାନସଭାକୁ ନିର୍ବାଚିତ ହେଲେ ।

ପ୍ରତିଶୃତିକୁ ପୁଞ୍ଜିକରି ଲୋକମାନସକୁ ଜୟକରିବାର କଳା ସେ ଜାଣିନଥିଲେ । ବିଧାନସଭାକୁ ନିର୍ବାଚିତ ହେବା ପରେ ଜନହିତକର କାର୍ଯ୍ୟ କରିବା ପାଇଁ ତାଙ୍କର ପଥ ଆହୁରି ସୁଗମ ହୋଇଗଲା । ବିଧାନସଭାରେ ତାଙ୍କୁ ମିଶେଇ ସେତେବେଳେ ଚାରିଜଣ ମହିଳା ସଦସ୍ୟା ଥିଲେ । ସମସ୍ତଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା ନାରୀଶିକ୍ଷା ଏବଂ ସେମାନଙ୍କର କର୍ମନିଯୁକ୍ତି । ସେ ନିଜର ନିର୍ବାଚନ ମଣ୍ଡଳୀରେ ମହିଳା ସମିତିମାନ ଗଠନକରି ସେମାନଙ୍କୁ ନାନାପ୍ରକାର ଶିକ୍ଷାଦାନ କରିବାର ବନ୍ଦୋବସ୍ତ କରିଥିଲେ । ଗର୍ଭବତୀ ମହିଳାମାନେ କିପରି ପୁଷ୍ଟିକର ଖାଦ୍ୟ ପାଇପାରିବେ, ସେମାନଙ୍କର କିପରି ଉପଯୁକ୍ତ ଯତ୍ନ ନିଆଯାଇପାରିବ, ସେ ବିଷୟରେ ସେ ବ୍ଲକ୍‌ମାନଙ୍କୁ ନିର୍ଦ୍ଦେଶ ଦେଉଥିଲେ । ତାଙ୍କରି ସମୟରେ ତିର୍ତ୍ତୋଲ ଓ ଏରସମା ଅଞ୍ଚଳକୁ ବିଦ୍ୟୁତ୍ ସରବରାହ କରାଯାଇଥିଲା । ପାରାଦ୍ୱୀପ ଗଡ଼ରେ ଶିକ୍ଷାର ଉନ୍ନତି କଳ୍ପେ ସେ ଶ୍ରୀମା ବିଦ୍ୟାପୀଠ (ହାଇସ୍କୁଲ) ପ୍ରତିଷ୍ଠା କରିଥିଲେ ।

ବିଧାନସଭାର ସଦସ୍ୟା ଭାବରେ ରତ୍ନମାଳି ଜେମାଙ୍କର କାର୍ଯ୍ୟକାଳ ସମୟରେ ବିଜୁପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ସେତେବେଳେ ୧୯୬୨ ମସିହା ଜାନୁୟାରୀରେ ଦେଶର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ଅଧିନାୟକତ୍ୱରେ ପାରାଦ୍ୱୀପ ବନ୍ଦରର ଶିଳାନ୍ୟାସ ହୋଇଥିଲା । ପଣ୍ଡିତ ନେହେରୁଙ୍କୁ ସ୍ୱାଗତ ଅଭ୍ୟର୍ଥନା ଜଣାଇବା ନିମନ୍ତେ କୁଜଙ୍ଗ ବନବିହାରୀ ହାଇସ୍କୁଲ ପ୍ରାଙ୍ଗଣରେ ଏକ ସଭାର ଆୟୋଜନ ହୋଇଥିଲା । ଲୋକ ଥାଟପଟାଳି ଭାଙ୍ଗୁଥାନ୍ତି । ବୀରେନ୍ ମିତ୍ର, ନୀଳମଣି ରାଉତରାୟ, ନାରାୟଣ ବୀରବର ସାମନ୍ତ, ରତ୍ନମାଳି ଜେମା ପ୍ରମୁଖ ସେ ସଭାସ୍ଥଳରେ ଉପସ୍ଥିତ

ଥିଲେ । ନେହେରୁ ଓ ବିଜୁବାବୁଙ୍କ ଭାଷଣ ପରେ ରତ୍ନମାଳି ଜେମାଙ୍କ ଭାଷଣ ଆରମ୍ଭ ହେଲା । ଏତେ ବିରାଟ ଜନସମାଗମ ସ୍ଥାନରେ ଅବିଚଳିତ ଏବଂ ସ୍ପଷ୍ଟଭାବରେ ଜେମା ବକ୍ତୃତା ଦେଇଥିଲେ । ସେ କହିଥିଲେ ଯେ ରାମଚନ୍ଦ୍ରଙ୍କ ପଦସ୍ପର୍ଶରେ ପାଷାଣୀ ଅହଲ୍ୟା ମୁକ୍ତିଲାଭ କଲାପରି ନେହେରୁଙ୍କ ପଦାର୍ପଣରେ ସେ ଅଞ୍ଚଳ ଦାରିଦ୍ର୍ୟରୁ ମୁକ୍ତିଲାଭ କରିବ । ବିପୁଳ କରତାଳି ଧ୍ୱନିରେ ସଭାସ୍ଥଳ କମ୍ପିଉଠିଲା । ସଂପୂର୍ଣ୍ଣଭାଷା ବୁଝିପାରୁ ନଥିଲେ ମଧ ନେହେରୁଙ୍କ ଆଖିରେ ବାରିହୋଇପଡୁଥିଲା ଗୁଣଗ୍ରାହୀତାର ସପ୍ରଶଂସଭାବ । ସେ ଯେଉଁ ସ୍ଥାନରେ ଶିଳାନ୍ୟାସ କରିଥିଲେ ପରବର୍ତ୍ତୀ କାଳରେ ସେଠାରେ ନିର୍ମିତ ବଙ୍ଗଳାର ନାମ 'ନେହେରୁ ବଙ୍ଗଳା' ବୋଲି ରଖାଯାଇଛି । ଆଜିର ଏହି ବିରାଟ ବନ୍ଦର ଓ ତତ୍ ସନ୍ନିକଟ ପ୍ରକାଣ୍ଡ ସୌଧମାଳା ସମ୍ବଳିତ ଅଞ୍ଚଳ ଗଠନ ପାଇଁ ଜେମାଙ୍କର ଅବଦାନ ଯେ ମୁଖ୍ୟ, ଏକଥା ଏବେ ମଧ ସେ ଅଞ୍ଚଳବାସୀ ମୁକ୍ତକଣ୍ଠରେ ଘୋଷଣା କରନ୍ତି ।

ବନ୍ଦର ନିର୍ମାଣ ପାଇଁ ଜେମାଙ୍କ ଗ୍ରାମ ପାରାଦ୍ୱୀପଗଡ଼ ଏବଂ ପାର୍ଶ୍ୱବର୍ତ୍ତୀ କେତେକ ଗ୍ରାମ ଚାଲିଯିବ ବୋଲି ସ୍ଥିରହୋଇସାରିଥାଏ । ସେଦିନ ବିଧାନସଭାର ୧୪୦ଜଣ ସଭ୍ୟଙ୍କ ସମେତ ବହୁ ପଦସ୍ଥ କର୍ମଚାରୀ ଜେମାଙ୍କ ପାରାଦ୍ୱୀପ ବାସଭବନରେ ଏକତ୍ରିତ ହୋଇଥିଲେ । ଅତିଥିବତ୍ସଳ ଜେମା ବହୁପ୍ରକାର ସୁସ୍ୱାଦୁ ଖାଦ୍ୟପେୟର ବନ୍ଦୋବସ୍ତ କରିଥିଲେ । ଭୋଜନ ଶେଷରେ ସେହି ଅଞ୍ଚଳର ଅଧିବାସୀମାନଙ୍କ ଅନୁରୋଧ କ୍ରମେ ଜେମା ପାରାଦ୍ୱୀପଗଡ଼ ଏବଂ ତା'ର ପାଖଆଖ ଗ୍ରାମଗୁଡ଼ିକର ସୁରକ୍ଷାପାଇଁ ମୁଖ୍ୟମନ୍ତ୍ରୀଙ୍କ ନିକଟରେ ପ୍ରସ୍ତାବ ଉପସ୍ଥାପନ କଲେ । ମୁଖ୍ୟମନ୍ତ୍ରୀ ଜେମାଙ୍କ ଚାତୁରୀ ବୁଝିପାରିଥିଲେ ମଧ ସେ ଭାବାକୁଳ ପରିବେଶରେ ବିନାଦ୍ୱିଧାରେ ସେଥିରେ ସମ୍ମତ ହୋଇଥିଲେ ।

ମାମା କଦାପି ନିଜର ସ୍ୱାର୍ଥପାଇଁ କାହାପାଖରେ କୌଣସି ଅନୁରୋଧ କରିନାହାନ୍ତି । କିନ୍ତୁ କେହି ଅସୁବିଧାରେ ପଡ଼ିଥିଲେ, ଏପରିକି କାହାର ପାରିବାରିକ ସମସ୍ୟା ଥିଲେ ବଦଳିପାଇଁ, କାହାର ପଦୋନ୍ନତି ଅଟକି ରହିଥିଲେ କି ଚାକିରୀ ନିୟମିତ ହୋଇନଥିଲେ ବିନା ସଂକୋଚରେ ସେ ପଦସ୍ଥ ବ୍ୟକ୍ତିଙ୍କୁ ଜଣାଉଥିଲେ । ତାଙ୍କର ଏହି ନିଃସ୍ୱାର୍ଥପର ପରୋପକାର ମନୋବୃତ୍ତି ସହିତ ସମସ୍ତେ ପରିଚିତ ଥିବାରୁ ତାଙ୍କର ଅନୁରୋଧ କେହି ଭାଙ୍ଗିପାରୁନଥିଲେ । ସେ ୧୯୬୧ ମସିହାରୁ ୧୯୬୬ ମସିହା ଯାଏ ବିଧାନସଭା ସଭ୍ୟ ଥିଲେ । ସେତେବେଳେ ମଧ ବିଧାନସଭା ଅଧିବେଶନ ସମୟରେ ତାଙ୍କର ୧୪/୨ କ୍ୱାଟରରେ ସଦାସର୍ବଦା କୁଜଙ୍ଗକୁଟୀର ବା ପାରାଦ୍ୱୀପ ଗଡ଼ପରି ଲୋକଙ୍କର ଗହଳଚହଳ ଯିବା ଆସିବା ଲାଗିରହିଥାଏ ।

ଏଠାରେ ପାରାଦ୍ୱୀପ ବନ୍ଦର ନିର୍ମାଣ ସଂବନ୍ଧୀୟ ଆଉ ଏକ ବିଷୟର ଅବତାରଣା କଲେ ଅପ୍ରାସଙ୍ଗିକ ହେବ ନାହିଁ । ବନ୍ଦର ନିର୍ମାଣ ପାଇଁ ସମସ୍ତ ଆନୁଷଙ୍ଗିକ କାର୍ଯ୍ୟ

ଆରମ୍ଭ ହେଲା ପରେ ଏକ ବିରାଟ ସମସ୍ୟା ଦେଖାଦେଲା, ତାହା ହେଲା ପାନୀୟଜଳ । ନାନାପ୍ରକାର ବିଚାର ଆଲୋଚନା ପରେ ତାଳଦଣ୍ଡା କେନାଲର ଗତିପଥ ପରିବର୍ତ୍ତନ କରିବା ସ୍ଥିରହେଲା । ତାଳଦଣ୍ଡା କେନାଲ୍ କଟକର ଜୋବ୍ରାଠାରେ ମହାନଦୀରୁ ବାହାରି ଚଉମୁହାଣି ନିକଟରେ ପୁନର୍ବାର ମହାନଦୀରେ ମିଳିତ ହୋଇଥିଲା । ବର୍ତ୍ତମାନ ତାଳଦଣ୍ଡା କେନାଲ୍‌ର ଏକ ଶାଖା ସିଙ୍ଗ୍‌ଟାଳି ପାଖରୁ ବାହାରି ଅଠରବାଙ୍କିଠାରେ କୁଆରିଆ ନଦୀରେ ମିଶିଲା । ଏହାଦ୍ୱାରା ବନ୍ଦରାଞ୍ଚଳକୁ ଯେ କେବଳ ମଧୁର ପାନୀୟଜଳ ଯୋଗାଇଦିଆଗଲା ସେ କଥା ନୁହେଁ, ଲୁହାପଥର ବୋଝେଇ ନୌକାଗୁଡ଼ିକ ଏହି ଶାଖା କେନାଲ୍ ଦେଇ ସିଧା ବନ୍ଦର ନିକଟରେ ପହଞ୍ଚିପାରିଲା । ଏଠାରେ ତାଳଦଣ୍ଡା କେନାଲ୍‌ର ଆକାର ବେଶ୍ ପ୍ରଶସ୍ତ । ତାଳଦଣ୍ଡା କେନାଲ୍‌ର ଏହି ନୂତନ ଶାଖାକେନାଲ୍‌ଟିର କାର୍ଯ୍ୟ ସଂପୂର୍ଣ୍ଣ ହେଲାବେଳକୁ ବୀରେନ୍ ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦବୀରେ ଥାନ୍ତି । ନୂତନ ଶାଖାକେନାଲ୍ ଉନ୍ମୋଚନ କରିବା ପାଇଁ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଯଥାରୀତି ଏକ ସଭାର ମଧ୍ୟ ଆୟୋଜନ କରାଯାଇଥିଲା । କିନ୍ତୁ ଉତ୍ସବବେଳେ ବୀରେନ୍ ମିତ୍ର ହିଁ ଜେମାଙ୍କୁ ଉନ୍ମୋଚନ କରିବାପାଇଁ ସାଦର ଅନୁରୋଧ କରିଥିଲେ । ଜେମାଙ୍କର ଅକ୍ଳାନ୍ତ କର୍ମଦକ୍ଷତା ଏବଂ ଅକୁଣ୍ଠସେବା ମନୋବୃତ୍ତି ବୀରେନ୍ ମିତ୍ରଙ୍କୁ ପ୍ରଭାବିତ କରିଥିଲା । ଶେଷରେ ବୀରେନ୍ ମିତ୍ରଙ୍କ ଅନୁରୋଧ ରକ୍ଷାକରି ଜେମାହିଁ କେନାଲର ଶୁଭ ଉନ୍ମୋଚନ କରିଥିଲେ ।

୧୯୬୭ ମସିହାରେ ତୃତୀୟଥର ପାଇଁ କଂଗ୍ରେସରୁ ଟିକେଟ୍ ପାଇ ସେ ଏରସମା ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରି ପରାଜିତ ହେଲେ । ଜନଗଣଙ୍କର ସେବାପାଇଁ ପଦପଦବୀ ସହାୟକ ହୋଇପାରେ, କିନ୍ତୁ ଅପରିହାର୍ଯ୍ୟ ନୁହେଁ — ଜେମାଙ୍କର ଏହି ଦୃଷ୍ଟିଭଙ୍ଗୀ ହେତୁ ତାଙ୍କ ନିକଟରେ ଜୟପରାଜୟର କୌଣସି ପାର୍ଥକ୍ୟ ନଥିଲା । ପ୍ରଥମଥର ନିର୍ବାଚନରେ ହାରିଯାଇଥିଲେ ମଧ୍ୟ ନିଖିଳ ଭାରତ ମହିଳା କଂଗ୍ରେସ ସମ୍ମିଳନୀରେ ଯୋଗଦେବା ପାଇଁ ତାଙ୍କ ନିକଟକୁ ଆସାମରୁ ନିମନ୍ତ୍ରଣ ଆସିଥିଲା ଏବଂ ସେ ସେହି ସମ୍ମିଳନୀରେ ଯୋଗଦାନକରିଥିଲେ । ତାଙ୍କର ନିଷ୍କପଟ ଜନସେବା ଏବଂ ଦଳପ୍ରତି ଗଭୀର ଆନୁଗତ୍ୟ ସମ୍ବନ୍ଧରେ ସମସ୍ତେ ଅବହିତ ଥିଲେ ।

ରାଜନୈତିକ ପଦପଦବୀରୁ ଜେମା ସଂପୂର୍ଣ୍ଣ ମୁକ୍ତହୋଇଗଲେ । ସ୍ୱାଧୀନ ଭାବରେ ନିଜର କର୍ମପନ୍ଥା ନିର୍ଣ୍ଣୟକଲେ । ସେ କେବେହେଲେ ଅନ୍ୟାୟ ସହିପାରୁନଥିଲେ । ସେ ସ୍ଥାନକାଳପାତ୍ର ଭୁଲି ଅନ୍ୟାୟର ଭୀଷଣ ପ୍ରତିବାଦ କରୁଥିଲେ । ବିଶେଷତଃ ନାରୀନିର୍ଯ୍ୟାତନା ପ୍ରତିରୋଧ କ୍ଷେତ୍ରରେ ସେ ସବୁପ୍ରକାର ସାହାଯ୍ୟ ସହଯୋଗ କରିବାକୁ ଆଗେଇଆସୁଥିଲେ । ଅନ୍ୟର ବ୍ୟକ୍ତିଗତ ସମସ୍ୟାକୁ ନିଜର ଭାବି ସେ ଲଢ଼େଇ କରୁଥିଲେ । ହସ୍ତରେ ଅସ୍ତ୍ରଧାରଣ ନକରି ମଧ୍ୟ ସେ ସମାଜରୁ ନାନାବିଧ ଦୁର୍ନୀତି

ଦୂରକରିବାପାଇଁ ବୀରାଙ୍ଗନା ରୂପରେ ସମାଜର ରଣକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କୁ କେହି ବର୍ତ୍ତମାନର ରାଜନୀତି ବିଷୟରେ ମତାମତ ପଚାରିଲେ ସେ କହନ୍ତି– "ଆଜିକାଲି ରାଜନୀତି ଆଉ ସଚ୍ଚା ରାଜନୀତି ହୋଇ ରହିନାହିଁ । ଆଜିର କଂଗ୍ରେସ କର୍ମୀ ଆଉ କଂଗ୍ରେସ ହୋଇ ନାହାନ୍ତି । ଗାନ୍ଧୀ ମତେ ଖଦଡ଼ ପିନ୍ଧାଇଥିଲେ; ମୁଁ ତାଙ୍କ ନୀତି ଆଦର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରି ଆସିଛି । ହେଲେ ଆଜି ଯେଉଁମାନେ ଖଦଡ଼ ପିନ୍ଧି କଂଗ୍ରେସ କର୍ମୀ ବୋଲି କହୁଛନ୍ତି, ତାଙ୍କର ସେ ଆଦର୍ଶ ନାହିଁ କି କାର୍ଯ୍ୟରେ ନିଷ୍ଠା ଓ ନୀତିନିୟମ ନାହିଁ । କେବଳ ଖଦଡ଼ ପିନ୍ଧି କଂଗ୍ରେସର ବଦ୍‌ନାମ କରୁଛନ୍ତି । ତେଣୁ ମୁଁ ସେମାନଙ୍କ ରାଜନୀତିକୁ ଘୃଣାକରେ ।"

[କୁଜଙ୍ଗ ମାମା ରତ୍ନମାଳି– ଲେଖିକା - ଶ୍ରୀମତୀ ହାରାମଣି ମହାପାତ୍ର]

ଦୁର୍ଭାଗ୍ୟବଶତଃ ୧୯୯୫ ମସିହାରେ ପଡ଼ିଯାଇ ସ୍ୱାମୀ ନାରାୟଣ ବୀରବର ସାମନ୍ତଙ୍କର ଗୋଡ଼ ଭାଙ୍ଗିଯିବାରୁ ସେ ଚିକିତ୍ସାର ସୁବିଧା ପାଇଁ ତାଙ୍କ ଝିଅ ଡାକ୍ତର ବାଣୀ ସାମନ୍ତଙ୍କ ପାଖରେ କଟଣୀରେ ରହିଲେ । ବୟସାଧିକ୍ୟ ଏବଂ ଅସୁସ୍ଥତା ହେତୁ ସେ ପ୍ରାୟ ଆଉ କୁଆଡ଼େ ଗଲେନାହିଁ । ସୁତରାଂ ଜେମା ମଧ୍ୟ କଟଣୀରେ ତାଙ୍କ ପାଖରେ ରହିଲେ । ତାଙ୍କ ମନ କିନ୍ତୁ ସବୁବେଳେ ପାରାଦ୍ୱୀପ ଗଡ଼ ପ୍ରତି ଆକୃଷ୍ଟ ହୋଇ ରହୁଥିଲା । ସୁଯୋଗ ପାଇଲାମାତ୍ରେ ଅଳ୍ପସମୟପାଇଁ ହେଉ ପଛେ ସେ ପାରାଦ୍ୱୀପ ଗଡ଼କୁ ଚାଲିଯାଉଥିଲେ । ତାଙ୍କ ଆସିବା ଖବର ପାଇବାମାତ୍ରେ କୁଆଡୁ କୁଆଡୁ ସବୁ ଲୋକ ଆସି ଜମିଯାନ୍ତି । ସ୍ତ୍ରୀ, ପୁରୁଷ, ପିଲା, ବୁଢ଼ାଙ୍କର ଧାଡ଼ିଲାଗିଯାଏ ଦେବୀ ଦର୍ଶନ କଲାପରି ।

"ବାଲ୍ୟକାଳୁ ଧର୍ମ-ଧନ ମୁଁ ସଞ୍ଚିବି ଏ ଜୀବନ ଅନିଶ୍ଚିତ"–କବିଙ୍କର ଏହି ବାଣୀର ସତ୍ୟତା ଜେମା ମର୍ମେ ମର୍ମେ ଅନୁଭବ କରିଥିଲେ । ଶୈଶବରୁ ତାଙ୍କର ଧର୍ମାନୁରକ୍ତି ଥିଲା । ନଅରରେ ସ୍ୱନକ୍ଷତ୍ର(ଜନ୍ମଦିନ)ଠାରୁ ଆରମ୍ଭକରି ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ପୂଜା ଅନୁଷ୍ଠାନାଦି ହେଉଥିଲା । ଜେମା କିନ୍ତୁ ପୂଜାପୂଜିର ବାହ୍ୟ ଆଡ଼ମ୍ବରରେ ବିଶ୍ୱାସ କରୁନଥିଲେ । ମାନବଧର୍ମରେ ତାଙ୍କର ଗଭୀର ବିଶ୍ୱାସଥିଲା । ଅଜ୍ଞାନ ବାଳୁତ ଅବସ୍ଥାରେ ମଧ୍ୟ ମଣିଷ ମଣିଷ ଭିତରେ ଥିବା ଭେଦାଭେଦକୁ ନେଇ ତାଙ୍କ ମନରେ ପ୍ରଶ୍ନବାଚୀ ଦେଖାଦେଇଥିଲା । ପରିଣତ ବୟସରେ ଶ୍ରୀ ସାମନ୍ତ ତଥା ରମାଦେବୀ, ସରଳାଦେବୀ, ମାଳତୀ ଦେବୀ, ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ ଇତ୍ୟାଦି ମନୀଷୀମାନଙ୍କର ସଂସ୍ପର୍ଶରେ ଆସି ସେ ତଥାକଥିତ ଭେଦାଭେଦର ଲକ୍ଷ୍ମଣଗାରକୁ ଅତିକ୍ରମ କରିସାରିଥିଲେ । ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ୧୯୩୩ ମସିହାରେ ନାରାୟଣ ବୀରବର ସାମନ୍ତ ଯେତେବେଳେ ପାରେଶ୍ୱର ମନ୍ଦିରରେ ହରିଜନ ପ୍ରବେଶ କରାଇଲେ ରତ୍ନମାଳି ଜେମା ତାଙ୍କୁ ପୂର୍ଣ୍ଣପ୍ରାଣରେ ସମର୍ଥନ ଏବଂ ସହଯୋଗ କରିଥିଲେ ।

ଏବେ ମଧ୍ୟ ପାରେଶ୍ୱର ମନ୍ଦିରର ତତ୍ତ୍ୱାବଧାରକ କୃଷ୍ଣ ମଲିକ ନାମକ ଜଣେ ହରିଜନ । ଜେମା ପାରାଦ୍ୱୀପରେ ଥିବାବେଳେ ସେ ପ୍ରତ୍ୟହ ଆସି ଜେମାଙ୍କୁ ପ୍ରଣାମ କରିଯାନ୍ତି ।

ନାରାୟଣ ବୀରବର ସାମନ୍ତ ବିଧାନସଭାର ଉପ-ବାଚସ୍ପତି ଥିବା ସମୟରେ ନିମିଡ଼ିହରେ ଏକ କନ୍ୟାଶ୍ରମ ସ୍ଥାପନ କରିଥିଲେ । ତାହା କେବଳ ଅସହାୟ ଅସବର୍ଣ୍ଣ କନ୍ୟାମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେଠାରେ ଥିବା ଅନ୍ତେବାସିନୀ ଓ ସେମାନଙ୍କର ଶିକ୍ଷୟିତ୍ରୀମାନଙ୍କର ଦାୟିତ୍ୱ ଜେମା ସ୍ୱେଚ୍ଛାକୃତ ଭାବେ ଗ୍ରହଣ କରିଥିଲେ । ବାରମ୍ବାର ସେଠାକୁ ଯାଇ ବ୍ଲକ୍‌ରୁ ଜିନିଷ ଠିକ୍ ଆସୁଛି କି ନାହିଁ ତଦାରଖ କରୁଥିଲେ ।

୧୯୬୩-୬୪ ମଧ୍ୟରେ ତାଙ୍କର ଜାମାତା ସାହିତ୍ୟକ ମନୋଜ ଦାସ, ପରେ ପରେ ତାଙ୍କର ଜ୍ୟେଷ୍ଠା କନ୍ୟା ପ୍ରତିଜ୍ଞା ଓ ପୁତ୍ର ବିଶ୍ୱମ୍ଭର ସାମନ୍ତ ଶ୍ରୀମା ଶ୍ରୀ ଅରବିନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ପଣ୍ଡିଚେରୀସ୍ଥ ଶ୍ରୀ ଅରବିନ୍ଦ ଆଶ୍ରମକୁ ଚାଲିଗଲେ । ଏହି ଘଟଣାରେ ପରିବାର ମଧ୍ୟରେ ବିଷାଦ ଛାଇଗଲା । ଜେମା କିନ୍ତୁ ନିସ୍ପୃହ । ସେ ବରଂ ଅନ୍ୟମାନଙ୍କୁ ବୁଝେଇଥିଲେ ଯେ ସେ ଏଭଳି ସନ୍ତାନମାନଙ୍କର ଜନନୀ ହୋଇଥିବାରୁ ନିଜକୁ ଭାଗ୍ୟବତୀ ମନେକରନ୍ତି । ପରବର୍ତ୍ତୀକାଳରେ ସେ ନିଜେ ଏବଂ ଶ୍ରୀ ସାମନ୍ତ ଉଭୟ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଦର୍ଶନର ଅନୁଗାମୀ ହୋଇ ସେମାନଙ୍କ ପାଖରେ ନିଜକୁ ସମର୍ପଣ କରିଦେଇଥିଲେ । ସେ ବହୁଲୋକଙ୍କୁ ଏହି ଭଗବତ୍ ଚେତନାରେ ପ୍ରଣୋଦିତ କରି ପଣ୍ଡିଚେରୀ ଆଶ୍ରମକୁ ନେଇ ଯାଇଛନ୍ତି । ସେ ନିଜେ ଯେତେବେଳେ ସୁଯୋଗ ପାଇଛନ୍ତି ପଣ୍ଡିଚେରୀ ଯାଇ ଆଶ୍ରମରେ କିଛି ସମୟ ଶାନ୍ତିରେ ଅତିବାହିତ କରିଛନ୍ତି । ସେ ଧାର୍ମିକ ଅନୁଶୀଳନ ଓ ଆଧ୍ୟାତ୍ମିକତା ମଧ୍ୟରେ ନିର୍ଣ୍ଣିତ ସୀମାରେଖାକୁ ସ୍ପଷ୍ଟ ଭାବରେ ଅନୁଭବ କରିପାରିଥିଲେ । ବସୁଧୈବ କୁଟୁମ୍ବକଂ ଚେତନାରେ ଯେ ଉଦ୍‌ବୁଦ୍ଧ ସେ କୌଣସି ନିର୍ଦ୍ଦିଷ୍ଟ ଧର୍ମର ନିଗଡ଼ ମଧ୍ୟରେ ଆବଦ୍ଧ ହୋଇ ରହିପାରିବନାହିଁ । ଚିରକାଳ ତାଙ୍କର ଚଲାପଥ ତ ଶଗଡ଼ଗୁଳାର ବାହାରେ ।

ଜେମାଙ୍କର ସଂଗ୍ରାମଶୀଳ କଠୋର ଜୀବନର ପରିଚୟ ହୁଏତ ସମସ୍ତେ ଜାଣନ୍ତି । ଖୁବ୍ କମ୍ ଲୋକ ଜାଣିଛନ୍ତି ଯେ ସେ ଚମତ୍କାର ରୋଷେଇକରିପାରନ୍ତି ଏବଂ ସୁନ୍ଦର ଗୀତ ବୋଲିପାରନ୍ତି । ସେ ନିଜେ ନିରାମିଷାଶୀ ହେଲେ ମଧ୍ୟ ମାଛର ବିଭିନ୍ନ ପ୍ରକାର ସୁସ୍ୱାଦୁ ବ୍ୟଞ୍ଜନ ପ୍ରସ୍ତୁତ କରନ୍ତି । ମଣ୍ଡା, କାକରା, ଚକୁଳି, ଚିତୋଉ ପରି ସାଧାରଣ ପିଠା ସହିତ ସୂକ୍ଷ୍ମକାରୁକାର୍ଯ୍ୟପୂର୍ଣ୍ଣ ପିଠା ବି କରନ୍ତି । ବେଳେବେଳେ ତାଙ୍କ ପରିବାରୀମାନଙ୍କ ସହ ମିଶି ରଜାଘରିଆ ବଡ଼ି ବି ପକାନ୍ତି । ରନ୍ଧାରନ୍ଧିରେ କେତେବେଳେ ମନରୁ ବାହାରକରି କ'ଣଟାଏ ନୂଆ ରାନ୍ଧିଦିଅନ୍ତି ଯେ ଖାଇବାଲୋକର ମନରୁ ସେ ସ୍ୱାଦ ଯାଏ ନାହିଁ । ସବୁକ୍ଷେତ୍ରରେ ନୂତନକୁ ସ୍ୱାଗତ କରିବାକୁ ସେ ଉନ୍ମୁଖ । ତାଙ୍କ ହାତତିଆରି ଖିରୀ ଯେ ଥରେ ଖାଇଛି ସେ ତାକୁ ଭୁଲିନାହିଁ । ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା—

ଲକ୍ଷ୍ମୀଠାକୁରାଣୀ ସୁବର୍ଣ୍ଣ ଚଟୁ ଧରି ରୋଷଶାଳାକୁ ଗଲାପରି ସେ ସ୍ୱଳ୍ପ ସମୟ ମଧ୍ୟରେ ନାନାପ୍ରକାର ଖାଦ୍ୟ ପ୍ରସ୍ତୁତ କରି ରଖିଦେଉଥିଲେ । ରୋଷେଇରେ ଅନଭ୍ୟସ୍ତ ହେଲେ ସୁଦ୍ଧା ତାଙ୍କ ହାତତିଆରି ରାନ୍ଧଣା ଅତିଥି ଅଭ୍ୟାଗତ ସମସ୍ତଙ୍କୁ ସନ୍ତୋଷ ପ୍ରଦାନ କରିଛି । ପାକପ୍ରଣାଳୀ ଅପେକ୍ଷା ତାଙ୍କର ଆନ୍ତରିକତାର ସ୍ପର୍ଶ ହୁଏତ ଖାଦ୍ୟକୁ ତୃପ୍ତିକର ଓ ସ୍ୱାଦିଷ୍ଟ କରିଦେଇଥାଏ ।

ସଂଗୀତ କଳାରେ ଜେମା କୌଣସି ତାଲିମ ପାଇନାହାନ୍ତି । ସେ ନିଜେ ନିଜର ଗୁରୁ । ସେ ସୁଲଳିତ କଣ୍ଠରେ ପୁରାତନ ରଚନାରୁ ଏବଂ ସାମନ୍ତଙ୍କ ରଚନାରୁ ଉଦ୍ଧାର କରି ସଂଗୀତ ଗାନକରନ୍ତି । ସେ ପାରାଦ୍ୱୀପରେ ଥିଲାବେଳେ ଅଧିକାଂଶ ଦ୍ୱିପ୍ରହରରେ ନଚେତ୍ ସଂଧ୍ୟାରେ ପାରିବାରିକ ସଂଗୀତ ଆସର ବସେ । ସେ ନିଜେ, ତାଙ୍କର ବଡ଼ ଭଉଣୀ ନକ୍ଷତ୍ରମାଳି ଜେମା, କକାଝିଅ ଭଉଣୀ ଇନ୍ଦୁମାଳି ଜେମା, ଝିଅ ବାଣୀ, ତାଙ୍କର ପୋଷ୍ୟ ଭାଇ ମାଗୁଣି ରଥଙ୍କ ସ୍ତ୍ରୀ ଭବାନୀଦେବୀ, ମ୍ୟାନେଜର ଈଶ୍ୱର, ନିମିଡ଼ିହର ଗୋପୀ, ଭଗବାନସିଂ ଓ ଆହୁରି ଅନେକ ସେ ସଂଗୀତ ଆସରରେ ଯୋଗଦେଇଥାନ୍ତି । ଜଣକ ପରେ ଜଣେ, କେତେବେଳେ ଦ୍ୱୈତ କଣ୍ଠରେ ପରମ ଉତ୍ସାହରେ ସଂଗୀତ ଗାନ ଚାଲିଥାଏ । ଅଧିକାଂଶ ସଂଗୀତ ଭଜନ ଜଣାଣ ଶ୍ରେଣୀର ।

ତମେ ଦୁଃଖୀର ସଙ୍ଗାଳି ପରା, ଦୁଃଖୀ ହେଲେଣି ମହତ ସରା

× × ×

କରୁଣା କଲ ନାହିଁ କିମ୍ପାହେ ଭାବଗ୍ରାହୀ

× × ×

କେନ୍ଦ୍ର ବୈକୁଣ୍ଠେ ବିରାଜ ତ୍ରୈଲୋକ୍ୟର ଜ୍ଞାନୀ

× × ×

କହଇ ନାଗରୀ ବରରେ ସହୀ, କେଉଁ ସଜନୀ ଆଗର
କାଢ଼ିଲି ଓଢ଼ଣା ହେଲି ବାହାରରେ ଶ୍ୟାମବନ୍ଧୁ ହେବେ ମୋର ।

× × ×

ଥୟ ହୋଇଯାଉ ଭୟ ଥରହର ପ୍ରାଣ
ଦଳିତ ଦର୍ଶନେ ଦ୍ରବିଯାଉ ଛାର ଟାଣ
ଧୁଅ ଦୁଃଖ ଧୀରେ
ନିରାଶ ନରନାରୀଙ୍କ ନମ୍ରନେତ୍ର ନୀରେ ।

× × ×

କରିଥିଲି ଯେତେ ପାଞ୍ଚ ମୁଁ କେତେ କହିବି ତାହା
ଅଗ୍ରୀମ ଆକାଶ କୁସୁମ ତୋଳୁଥିଲି ମୁଁ ଆହା ।

× × ×

ଉଠିଲୁ ଏଡ଼େ ବେଗେ କାହିଁକିରେ ଧନ, ଦଧି ମନ୍ଥାଇ ଦେବୁ ନାହିଁକିରେ ।

ଏହିସବୁ ଗାନ ନଅରର ସାଂଧ ପରିବେଶକୁ ଭାବାବେଗରେ ଆଛନ୍ନ କରିଦେଉଥିଲା ।

ଶରୀର ଅସୁସ୍ଥ ହେଲେ ଜେମା ନିହାତି ଦରକାର ନହେଲେ ଡାକ୍ତରୀ ଔଷଧ ଗ୍ରହଣ କରନ୍ତି ନାହିଁ । ତାଙ୍କର ବେଶି ଆସ୍ଥା ପ୍ରାକୃତିକ ଚିକିତ୍ସା ଉପରେ । ପାରାଦ୍ୱୀପ ନଅରର ଚତୁଃପାର୍ଶ୍ୱରେ ନାନାଜାତିର ଫଳପୁଷ୍ପ ବୃକ୍ଷ ପରିପୂର୍ଣ୍ଣ ହୋଇ ରହିଛି । ଆମ୍ବ, ଲେମ୍ବୁ, ବେଲ, ନଡ଼ିଆ, କରମଙ୍ଗା, ପିଜୁଳି, ପିପ୍ପଳୀ, ପାତାଳଗରୁଡ଼, ବିଶଲ୍ୟକରଣୀ, ଜାତି ଜାତି ଚମ୍ପା, କନିଅର, ଟଗର, ତମାଳ, ମନ୍ଦାର ଇତ୍ୟାଦି ବୃକ୍ଷ ରହିଛି । ଥଣ୍ଡାହେଲେ ସେ ତୁଳସିପତ୍ର, ମହୁ କି ଗଙ୍ଗଶିଉଳି ପତ୍ର ମହୁ, ପେଟ ଖରାପ ହେଲେ ଉଷୁମ ପାଣି ଲେମ୍ବୁ କିମ୍ବା ପଇଡ଼ ପାଣି ଇତ୍ୟାଦି ସେବନ କରନ୍ତି । ସେ ପ୍ରତିଦିନ ସ୍ନାନପରେ ତୁଳସୀ ମନ୍ତ୍ର ପଢ଼ି ଚଉରାରେ ପାଣି ଦିଅନ୍ତି । ଶୁଣାଯାଏ ତାଙ୍କ ବାଡ଼ିପଟେ ଯେଉଁ ବୟସ୍କ ବେଲଗଛଟି ଅଛି ତା' ତଳେ ତାଙ୍କ ବାପା ଦାଦା ପିଲାଦିନେ ଖେଳାଖେଳି କରୁଥିଲେ । ସେ ଗଛର ବୟସ କେତେ କେହି କହିପାରିବେନାହିଁ । ଉଦ୍ଭିଦ ବିଶାରଦମାନେ ହୁଏତ ଚେଷ୍ଟା କଲେ ଜାଣିପାରିବେ । ବେଲଫଳ ଓ ପତ୍ର ଯାବତୀୟ ପେଟ ରୋଗପାଇଁ ମହୌଷଧି । ଜେମାଙ୍କ କନିଷ୍ଠା କନ୍ୟା ଡକ୍ଟର ବାଣୀ ସାମନ୍ତଙ୍କ ଉଦ୍ଭିଦପ୍ରୀତି ହେତୁ ସେ ସ୍ଥାନ ବର୍ତ୍ତମାନ ବହୁପ୍ରକାର ବୃକ୍ଷଲତାରେ ପରିପୂର୍ଣ୍ଣ । ବାଣୀସାମନ୍ତ ମଧ୍ୟ ଡାକ୍ତରୀ ଔଷଧ ସହିତ ପ୍ରାକୃତିକ ଚିକିତ୍ସାରେ ବିଶ୍ୱାସ କରନ୍ତି ।

ରାଜନୀତି ନିକଟରୁ ଦୂରେଇ ରହିବାକୁ ଚାହିଁଲେ ମଧ୍ୟ ରାଜନୀତି ତାଙ୍କ ପାଖ ଛାଡ଼ିନାହିଁ । ପାରାଦ୍ୱୀପ ବନ୍ଦର କ୍ଷତିଗ୍ରସ୍ତ 'କୃଷକ ସଂଘ'ର ସେ ଉପଦେଷ୍ଟା । ଜେମା ଯେତେବେଳେ ବିଧାନସଭାର ସଦସ୍ୟା ଥିଲେ ସେତେବେଳେ ପାରାଦ୍ୱୀପ ବନ୍ଦର ଓ ସାରକାରଖାନା ନିର୍ମାଣ ପାଇଁ ସରକାର କେତେଗୁଡ଼ିଏ ବ୍ୟକ୍ତିଗତ ଜମି ଅଧିଗ୍ରହଣ କରିଥିଲେ । ସେ ବାବଦରେ ଯାହା କ୍ଷତିପୂରଣ ଦେଇଥିଲେ ତାହା ଯଥେଷ୍ଟ ନଥିଲା । ସ୍ଥାନୀୟ କୃଷକମାନଙ୍କଠାରୁ ଏକର ପ୍ରତି ମାତ୍ର ଟ୩୫୦ରେ ସରକାର ଜମି ଅଧିଗ୍ରହଣ କରିଥିଲେ । ସେ ସମସ୍ତ ଜମି ସାର କାରଖାନା ଓ ବନ୍ଦର ନିର୍ମାଣ କାର୍ଯ୍ୟରେ ବିନିଯୋଗ ହୋଇନାହିଁ । ସେହି ଉଦ୍‌ବୃତ୍ତ ଜମିକୁ ସରକାର ଏକରପ୍ରତି ୫ଲକ୍ଷରୁ ଦଶଲକ୍ଷ ଟଙ୍କା ମୂଲ୍ୟରେ ଅନେକ ସରକାରୀ, ଅର୍ଦ୍ଧସରକାରୀ ଓ ବେସରକାରୀ ସଂସ୍ଥାକୁ ବିକ୍ରୟ କରୁଛନ୍ତି । ଏହି ପରିପ୍ରେକ୍ଷୀରେ ଯେଉଁ କୃଷକମାନେ ଜମି ହରାଇ ଭୂମିହୀନ ହୋଇଥିଲେ ସେମାନେ ସରକାରଙ୍କଠାରୁ ସେମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ ହାସଲ କରିବାକୁ ଆନ୍ଦୋଳନ କରୁଛନ୍ତି । ଉପରୋକ୍ତ ଜମି ବିକ୍ରିକରି ସରକାର ଲାଭ କରିଥିବା ଟଙ୍କା ସେମାନଙ୍କୁ ଫେରାଇଦେବାକୁ ଏବଂ ସେମାନଙ୍କ ପ୍ରତ୍ୟେକ ପରିବାରରୁ ଅନ୍ତତଃ ଜଣକୁ

ଯୋଗ୍ୟତା ଭିତ୍ତିରେ ଚାକିରୀ ଦେବାକୁ ସେମାନେ ଦାବୀ କରିଛନ୍ତି । ରତ୍ନମାଳୀ ଜେମାଙ୍କ ନେତୃତ୍ୱରେ ପୂର୍ବତନ ବିଧାୟକ ଗୌରୀଶ୍ୟାମ ନାୟକ, ସ୍ୱାଧୀନତା ସଂଗ୍ରାମୀ ସାଧୁଚରଣ ସେଠୀ, କୃଷକ ସଂଘର ସଭାପତି ଗୌରମୋହନ ସାହୁ, କ୍ଷେତ୍ରବାସୀ ଜେନାଙ୍କ ସମେତ ଶତାଧିକ କ୍ଷତିଗ୍ରସ୍ତ କୃଷକ କୁଜଙ୍ଗ ତହସିଲଦାରଙ୍କ ଅଫିସ୍ ସମ୍ମୁଖରେ ବାରମ୍ବାର ଧାରଣାରେ ବସିଛନ୍ତି । ୧୯୯୭, ୧୯୯୯, ୨୦୦୩ ପର୍ଯ୍ୟନ୍ତ ପୃଥକ୍ ପୃଥକ୍ ସମୟରେ ସେ ଧାରଣାରେ ବସି ଜନଜାଗରଣ ସୃଷ୍ଟି କରିଛନ୍ତି । ଏ ବୟସରେ ମଧ୍ୟ ନ୍ୟାୟ ପାଇବା ପାଇଁ ସେ ସଂଗ୍ରାମ ଜାରିରଖିଛନ୍ତି ।

ରାଜନୈତିକ ସମାବେଶ ହେଉ କି କୌଣସି ଆଧ୍ୟାତ୍ମିକ ସମ୍ମିଳନୀ ହେଉ, ତାଙ୍କୁ ଅନୁରୋଧ କଲେ ପ୍ରାଞ୍ଜଳଭାବରେ ସେ ନିଜର ବକ୍ତବ୍ୟ ଉପସ୍ଥାପିତ କରିଥାନ୍ତି । ବର୍ତ୍ତମାନ ସେ ୮୯ ବର୍ଷରେ ପଦାର୍ପଣ କଲେ ମଧ୍ୟ ବକ୍ତୃତା ଦେଲାବେଳେ ତାଙ୍କର ଭାଷାବିନ୍ୟାସରେ ସାମାନ୍ୟତମ ବ୍ୟତିକ୍ରମ ପରିଲକ୍ଷିତ ହୁଏ ନାହିଁ । ସେହିପରି ଓଜସ୍ୱିନୀ ବାକ୍‌ପଟୁତାରେ ସେ ଶ୍ରୋତାମାନଙ୍କୁ ଅଭିଭୂତ କରିପାରନ୍ତି ।

ଜେମାଙ୍କର ଦୀର୍ଘ କର୍ମବହୁଳ ଜୀବନ ଜଞ୍ଜାଳ ମଧ୍ୟରେ ସରଳ ଚପଳ ଶିଶୁଟିଏ ସର୍ବଦା ତାଙ୍କ ମଧ୍ୟରେ ଆତ୍ମଗୋପନ କରି ରହିଥାଏ । ସୁଯୋଗ ପାଇବାମାତ୍ରେହିଁ ସେ ଶିଶୁସୁଲଭ ଚପଳତାରେ ମାତିଯାଆନ୍ତି । ସେ ତାସ୍, ପଶା ଖେଳିବାକୁ ବହୁତ ଭଲପାଆନ୍ତି । ପଶାଖେଳିବା ବେଳେ ସେ ଏତେ ନିମଗ୍ନ ହୋଇଯାଆନ୍ତି ଯେ ମନେହୁଏ ବିପକ୍ଷଦଳକୁ ପରାଜିତ କରିବାକୁ ସତେ ଅବା ସେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି । କେହି ନଥିଲେ ଏକୁଟିଆ ନିବିଷ୍ଟ ଚିତ୍ତରେ ବସି ବ୍ରେନ୍ ଗେମ୍‌ର ଗୋଟିଧରି ଖେଳୁଥାନ୍ତି । ସମୟ ଥିଲେ ମେଳା ମଉଛବରେ ବୁଲିବାକୁ ଭଲପାଆନ୍ତି । ପିଲାମାନଙ୍କ ସାଙ୍ଗରେ ପିଲାଟିଏ ହୋଇ ଖେଳନ୍ତି । ବାଣୀସାମନ୍ତ ରେଲୱେରେ ଡାକ୍ତର ଥିବାରୁ ତାଙ୍କ ସହିତ ସେ ଭାରତର ଅନେକ ସ୍ଥାନ ଭ୍ରମଣ କରିଛନ୍ତି, ତଥାପି ତାଙ୍କର କ୍ଳାନ୍ତି ନାହିଁ । ତାଙ୍କର ଏହି ଖେଳୁଆଡ଼ ମନୋଭାବ ପାଇଁ ଜୀବନରେ ସେ ଜୟ ପରାଜୟକୁ ସମାନ ଦୃଷ୍ଟିରେ ଦେଖିଛନ୍ତି । ବାର୍ଦ୍ଧକ୍ୟ ତାଙ୍କ ନିକଟରେ ପରାଜିତହୋଇଛି । ଏବେ ମଧ୍ୟ ସେ ସିଧାହୋଇ ଚାଲନ୍ତି ଏବଂ ସିଡ଼ିରେ ଓହ୍ଲାଇଲାବେଳେ ବା ଚଢ଼ିଲାବେଳେ ବାଡ଼ର ସାହାଯ୍ୟ ନିଅନ୍ତି ନାହିଁ । କେହି ଯଦି ହାତଧରି ସାହାଯ୍ୟ କରିବାକୁ ଚାହେଁ, ବିରକ୍ତ ହୁଅନ୍ତି ।

ସମାଜରେ ବର୍ତ୍ତମାନ ନାରୀମାନଙ୍କର ବହୁ ପରିବର୍ତ୍ତନ ହେଲାଣି । ସେମାନେ ଅନେକ କ୍ଷେତ୍ରରେ ପୁରୁଷମାନଙ୍କର ସମକକ୍ଷ ହୋଇପାରିଲେଣି । ସେମାନଙ୍କର ଅବସ୍ଥା ସନ୍ତୋଷଜନକ କି ଏବଂ ସେମାନେ ସ୍ୱାଧୀନ କି ବୋଲି ରତ୍ନମାଳି ଜେମାଙ୍କୁ ପ୍ରଶ୍ନ କରିବାରୁ ସେ ଉତ୍ତର ଦେଲେ ଯେ ଆଧୁନିକ ନାରୀର ବହୁ ମଙ୍ଗଳପ୍ରଦ ପରିବର୍ତ୍ତନ ସତ୍ତ୍ୱେ ସେ ଅସଂପୂର୍ଣ୍ଣ; ସ୍ୱୟଂସଂପୂର୍ଣ୍ଣ ହେବାପାଇଁ ଆହୁରି ସାଧନା କରିବାକୁ ପଡ଼ିବ ।

ମହିଳାମାନେ ସାଧାରଣତଃ ଧନଧାନ୍ୟ ସୁଖଶାନ୍ତି ପାଇଁ ଲକ୍ଷ୍ମୀଙ୍କର ଉପାସନା କରନ୍ତି । ଜେମା ସେହି ପରମ୍ପରାର ଏକ ବ୍ୟତିକ୍ରମ । ସେ ମୁଖ୍ୟତଃ ଦେବୀ ଦୁର୍ଗାଙ୍କର ସ୍ତୁତିଗାନ କରିଥାନ୍ତି । ଦୁର୍ଗତିନାଶିନୀ, ମହିଷାସୁରମର୍ଦ୍ଦିନୀ ଶକ୍ତିମୟୀ ଦୁର୍ଗା ହିଁ ତାଙ୍କର ଉପାସ୍ୟା, କନକଦୁର୍ଗା ତାଙ୍କ ବଂଶର ଅଧିଷ୍ଠାତ୍ରୀ ଦେବୀ ।

ସତ୍ୟାନୁବର୍ତ୍ତୀତା, ନୀତିନିଷ୍ଠତା, ନିରହଙ୍କାର ସେବାପରାୟଣତା ଏବଂ ନିରଳସ ଜୀବନଧାରା ଜେମାଙ୍କର ଉଜ୍ଜ୍ୱଳ ଚେହେରା ଓ ମୁଖର ଜ୍ୟୋତିରେ ପ୍ରତିଫଳିତ ହୋଇପଡ଼େ ।

ଏସବୁ ସତ୍ତ୍ୱେ ତାଙ୍କର ବ୍ୟକ୍ତିଗତ ସମସ୍ୟା, ଦୁଃଖ, ବେଦନା ଯେ ନଥିଲା ଚାହା ନୁହେଁ, ସେ କିନ୍ତୁ ସେସବୁପ୍ରତି ଧ୍ୟାନ ଦେଉନଥିଲେ, ଏପରିକି ଅନ୍ୟ ନିକଟରେ ପ୍ରକାଶକରି ନିଜର ଭାରାକ୍ରାନ୍ତ ମନକୁ ହାଲୁକା କରିବାକୁ ଚାହୁଁନଥିଲେ । ଶୈଶବରେ ପିତୃବିୟୋଗ, ବିବାହ ପରେପରେ ମାତୃବିୟୋଗ, ମୃତ୍ୟୁ ପୂର୍ବରୁ ମୃତ୍ୟୁସହ ମାଆଙ୍କର ଯନ୍ତ୍ରଣା କାତର ସଂଘର୍ଷ, ସ୍ୱାମୀଙ୍କର ସ୍ୱାଧୀନତା ଆନ୍ଦୋଳନରେ ବାରମ୍ବାର କାରାବରଣ ଏବଂ ପରିବାର ପରିଚାଳନାରେ ଅମନୋଯୋଗିତା, ଗୁଡ଼ିଏ ଆଶ୍ରିତଙ୍କର ଭରଣପୋଷଣ ଦାୟିତ୍ୱ, ନିଜର ରାଜନୈତିକ ଜୀବନ ଓ ପାରିବାରିକ ଜୀବନ ଜଞ୍ଜାଳରେ ସନ୍ତୁଳନ ରକ୍ଷା ଇତ୍ୟାଦି ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସେ ବ୍ୟସ୍ତ ବିବ୍ରତ ହୋଇପଡ଼ିଥିବେ; ତଥାପି କାହା ପାଖରେ ନିଜର ଦୁଃଖ ଦୁର୍ଦ୍ଦଶା ବୟାନକରି ସମବେଦନା ଗ୍ରହଣ କରିବାକୁ ସେ ସମୟର ଅପଚୟ ବୋଲି ମନେକରୁଥିଲେ । ଇନ୍ଦିରା ଜେନା 'Her Story' ପୁସ୍ତକରେ ରତ୍ନମାଳୀ ଜେମାଙ୍କ ସମ୍ବନ୍ଧରେ ମତ ବ୍ୟକ୍ତ କରିଛନ୍ତି—

"...We felt that there was so much more Ratnamali Jema could have shared, but did not, thinking may be that it was not of much consequences; that she had gone through a lot of pain balancing her personal and political lives, but did not wish to talk about it or even think about it.

It is understandable, because opening up, would probably mean opening up the floodgates of emotion which would create a storm in one's mind and heart, None of us like this to happen, as far as possible. We like to maintain an equilibrium and let life go on. Ratnamali Jema, obviously, is such one. Our frustration was that she and others like her recognise the personal and the political as woven into each other and that their personal pain/pleasure have a validity, even historically, but they don't want to analyse it."

ଜେମାଙ୍କର ସ୍ୱାମୀ ନାରାୟଣ ବୀରବରଙ୍କର ୧୯୯୯ରେ ଦେହାନ୍ତ ହେବା ପରେ ଜେମା ପ୍ରାୟ କଟଣୀରେ ବେଶୀ ସମୟ ରହୁଥିଲେ । କେବେ କେବେ ଅଳ୍ପ ସମୟ ପାଇଁ ପାରାଦ୍ୱୀପ ଆସୁଥିଲେ । ୨୦୦୩ରେ କନ୍ୟା ବାଣୀ ସାମନ୍ତ ସ୍ୱେଚ୍ଛାକୃତ ଅବସର ଗ୍ରହଣ କଲା ପରେ ସେ ପାରାଦ୍ୱୀପରେ ହିଁ ସ୍ଥାୟୀଭାବେ ରହୁଛନ୍ତି । ଏବେ ମଧ ଲୋକଙ୍କର ହାରିଗୁହାରି ଶୁଣନ୍ତି ଏବଂ ସାହାଯ୍ୟ କରନ୍ତି । ପୂର୍ବପରି ନଅରରେ ଏତେ ବେଶୀ କୋଳାହଳ ନଥିଲେ ମଧ କେତେଜଣ ଚିରଆଶ୍ରିତ ତାଙ୍କ ପାଖରେ ରହିଛନ୍ତି । ସଂଧ୍ୟାବେଳେ ପ୍ରତିଦିନ କନକଦୁର୍ଗାଙ୍କ ମନ୍ଦିରକୁ ଯାନ୍ତି । ସମୟହେଲେ ଲୋକନାଥ ମନ୍ଦିରରେ କିଛି ସମୟ ବସି ଗ୍ରାମବାସୀଙ୍କ ସହ ଆଳାପ ଆଲୋଚନା କରି ଫେରନ୍ତି । ମନଧାନ ଦେଇ ଭଜନ ଜଣାଣ ବୋଲନ୍ତି । ପଛକଥା ପଚାରିଲେ ବିଗତ ଜୀବନର ଅଙ୍ଗେନିଭା ଗୌରବମୟ କାହାଣୀ କହିବାକୁ ଭଲପାନ୍ତି । ଘରେ ପାଠଚକ୍ର କରି ଶ୍ରୀମା ଶ୍ରୀ ଅରବିନ୍ଦଙ୍କର ଦର୍ଶନ ଚର୍ଚ୍ଚା କରନ୍ତି । ମଝିରେ ମଝିରେ ବେଶ୍ କିଛିଦିନ ପାଇଁ ପଣ୍ଡିଚେରୀ ଆଶ୍ରମକୁ ଯା'ନ୍ତି । ସେଠାରେ ଆଶ୍ରମର ପବିତ୍ର ପରିବେଶ ସହିତ ପୁତ୍ର, କନ୍ୟା, ଜାମାତାଙ୍କ ସହିତ କିଛି ସମୟ ଅତିବାହିତ କରି ପୁଣି ପାରାଦ୍ୱୀପ ଫେରିଆସନ୍ତି । ପଣ୍ଡିଚେରୀରେ ବି ତାଙ୍କର କ୍ଷୁଦ୍ର ପରିସରଟିଏ ଅଛି । ଜେମାଙ୍କ ଆସିବା ସମ୍ବାଦ ପାଇବାମାତ୍ରେ ସେମାନେ ଆସି ରୁଣ୍ଡହୋଇଯାନ୍ତି ସେଠାରେ । ସେ ସମସ୍ତଙ୍କର 'ମାମା' ।

ନଗର ସଭ୍ୟତାଠାରୁ ଦୂରରେ ଅଗମ୍ୟ ଗ୍ରାମ୍ୟ ପରିବେଶରେ, ରାଜନୈତିକ ତତ୍ପରତାଠାରୁ ବହୁଦୂରରେ ଏପରି ଏକ ତେଜସ୍ୱିନୀ ପ୍ରତିଭାର ସ୍ଫୁରଣ କିପରି ସମ୍ଭବହେଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଏଭଳି ସ୍ୱୟଂସଂପୂର୍ଣ୍ଣ ବିରଳ ବ୍ୟକ୍ତିତ୍ୱ ସୃଷ୍ଟିକର୍ତ୍ତାଙ୍କର ସ୍ୱତନ୍ତ୍ର ଅବଦାନ । ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ମାମାଙ୍କର ଅବଶିଷ୍ଟ ଜୀବନ ଏହିପରି ଦୀପ୍ତିମନ୍ତ ହୋଇ ରହିଥାଉ । କୌଣସି ପ୍ରକାର ଦୁଃଖଶୋକ ତାଙ୍କ ଜୀବନ ପରିଧିକୁ ସ୍ପର୍ଶ ନକରୁ ।

—

ପରିଶିଷ୍ଟ–୧

# ବାବା

– ଗିରିଜା ଭୂଷଣ ପଟ୍ଟନାୟକ

ବଞ୍ଚିଥିଲେ ତାଙ୍କୁ ଶହେ ବର୍ଷ ବୟସ ହୋଇଥାନ୍ତା । ତାହା ଦେଖିବାକୁ ସେ ରହିଲେ ନାହିଁ ।

ସେ ଦେବତା ନଥିଲେ, ଥିଲେ ମଣିଷ । ମଣିଷର ଭଲଗୁଣ ତ୍ରୁଟି ସବୁ ତାଙ୍କର ଥିଲା । ଆମେ ଯେଉଁମାନେ ତାଙ୍କର ପରିବାରଭୁକ୍ତ ଆମଠାରୁ ବେଶି କେହି ଜାଣିଛି କି ସେ ବିଷୟରେ ?

ଏହା ସତ୍ତ୍ୱେ ସେ ଆମର ସ୍ମରଣୀୟ ହୋଇ ରହିବେ ମୃତ୍ୟୁପର୍ଯ୍ୟନ୍ତ । କାରଣ ସେ ଜଣେ କ୍ଲାସିକାଲ ମଣିଷ ଥିଲେ । ସେଭଳି ମଣିଷଟିଏ ମିଳିବା ଏବେକୁ ଦୁରୂହ ହେଲାଣି ।

ସେ କଟକ ଜିଲ୍ଲାର ଲୋକ । ଆଠଗଡ଼କୁ ଗଲେ ପୁଅହୋଇ । କୁଜଙ୍ଗକୁ ଗଲେ ଜ୍ୱାଇଁ ହୋଇ । ତାହା ତାଙ୍କର କର୍ମକ୍ଷେତ୍ର ପାଲଟିଲା ଏବଂ ଲୋକେ ତାଙ୍କୁ 'କୁଜଙ୍ଗ ଗାନ୍ଧୀ'ବୋଲି ଡାକିବାକୁ ଆରମ୍ଭକଲେ । କୁଜଙ୍ଗର ଶେଷ ସ୍ୱାଧୀନ ନରପତି ଷଣ୍ଢ ରାଜାଙ୍କର ସେ ଜ୍ୱାଇଁ । କିନ୍ତୁ ରାଜପରିବାରର ଅହମିକା ନଥିଲା ତାଙ୍କଠି, ଥିଲା ଆତ୍ମ-ପ୍ରତ୍ୟୟ, ରାଜପରିବାରର ଉଦାରତା ଥିଲା ।

ରେଭେନ୍‌ସା କଲେଜରେ ପାଠ ପଢୁଥିବା ସମୟରେ ସେ ହେଲେ ସତ୍ୟାଗ୍ରହୀ । ଭାରତବର୍ଷର ସେ ପ୍ରଥମ ଛାତ୍ର ସତ୍ୟାଗ୍ରହୀ । ଓଡ଼ିଆ ଲୋକଙ୍କୁ ପବ୍ଲିସିଟି ମିଳେନାହିଁ– ତେଣୁ ତାହା ରହିଗଲା ଲୋକ ଅଗୋଚରରେ ।

କେରଳ ତାମିଲନାଡୁରେ ସ୍ୱାଧୀନତା ଆନ୍ଦୋଳନ ସହିତ ମନ୍ଦିର ପ୍ରବେଶ ଆନ୍ଦୋଳନ ଚାଲୁରହିଥିଲା । ଏହା ଫଳରେ ଜାତୀୟ ଆନ୍ଦୋଳନର ଏକ ସ୍ୱତନ୍ତ୍ର ଚରିତ୍ର ରହିଥିଲା ସେଠାରେ । ଜାତିଆଣ ଭେଦ ବିରୁଦ୍ଧରେ ମନ୍ଦିର ପ୍ରବେଶ ଆନ୍ଦୋଳନ ସେ ପାଖର ଆନ୍ଦୋଳନକୁ ରଣ ରୂପ ଦେଇଥିଲା । ଓଡ଼ିଶାରେ ତାହା ହୋଇନାହିଁ । ଶୁଣିଛି ପବିତ୍ରମୋହନ ପ୍ରଧାନ ଏହିପରି କିଛି କରିଥିଲେ ତାଳଚେରରେ । କିନ୍ତୁ ନାରାୟଣ ବୀରବର ସାମନ୍ତ ହିଁ ଏହି ପ୍ରକାର ରଣରୂପ ଦେଇଥିଲେ ସ୍ୱାଧୀନତା ଆନ୍ଦୋଳନକୁ । ମନ୍ଦିର ପ୍ରବେଶ ସହିତ ଜାତିଆଣ ଭେଦ ବିରୁଦ୍ଧରେ ସଂଗ୍ରାମ କୁଜଙ୍ଗ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମକୁ ଏକ ସ୍ୱତନ୍ତ୍ର ଚରିତ୍ର ଦେଇଥିଲା ।

ଧର୍ମ ସହିତ ସ୍ୱାଧୀନତା ସଂଗ୍ରାମର ସମ୍ମିଶ୍ରଣ ମଧ୍ୟ ତାଙ୍କର ଏକ ଅଭିନବ ପରିକଳ୍ପନା । 'ଉଦୟବଟ' କୁଜଙ୍ଗ ଅଞ୍ଚଳର ଏକ ପ୍ରସିଦ୍ଧ ସ୍ଥାନ । ଏହା କେବଳ ଧର୍ମକ୍ଷେତ୍ର ନୁହେଁ, ଏହା ମଧ୍ୟ ସ୍ୱାଧୀନତା ସଂଗ୍ରାମର କ୍ଷେତ୍ର । 'ଉଦୟବଟ'କୁ ଆପଣାର କର୍ମକ୍ଷେତ୍ରର କେନ୍ଦ୍ର କରି ନାରାୟଣ ବୀରବର ସାମନ୍ତ ସ୍ୱାଧୀନତା ସଂଗ୍ରାମକୁ ନୂତନରୂପ ଦେଇଥିଲେ ଏହି ଅଞ୍ଚଳରେ ।

କୁଜଙ୍ଗ ଅଞ୍ଚଳ ସମୁଦ୍ରକୂଳ ଅଞ୍ଚଳ, ତେଣୁ ଲୁଣମରା ଆନ୍ଦୋଳନପାଇଁ ଏହା ଥିଲା ପ୍ରଶସ୍ତ କ୍ଷେତ୍ର । କିନ୍ତୁ ଏହି ଲୁଣମରା ଆନ୍ଦୋଳନର କର୍ମୀମାନଙ୍କ ଭିତରେ ବିଜୁଳିଭଳି ଶିହରଣ ଦେଖାଗଲା ସେହିଦିନ ଯେଉଁଦିନ କେବଳ ଷଣ୍ଢ ରାଜାଙ୍କ ଜ୍ୱାଇଁ ନୁହଁନ୍ତି, ରାଜାଙ୍କର କନିଷ୍ଠା କନ୍ୟା ରତ୍ନମାଳି ଜେମା'ଉଆସ'ଛାଡ଼ି ଯୋଗଦେଲେ ଲୁଣମରା ସତ୍ୟାଗ୍ରହରେ । ଗାଁଗାଁରେ ଏହା ବିଦ୍ୟୁତ୍ ଭଳି ବ୍ୟାପିଯାଇଥିଲା ଏବଂ ପୁରୁଷମାନେ ଯେପରି ବାହାରିପଡ଼ିଥିଲେ ସଂଗ୍ରାମକୁ ଠିକ୍ ସେହିପରି ବାହାରି ଆସିଥିଲେ ଘରର ପର୍ଦ୍ଦା ଓ କଟକଣା ଏଡ଼ାଇ ଝିଅ ବୋହୂମାନେ । ନାରାୟଣ ବୀରବର ସାମନ୍ତଙ୍କ ସେ ଅବଦାନ ଇତିହାସ କେତେଦିନ ମନେରଖିବ କହିପାରିବି ନାହିଁ । ଏହା କେଉଁ ଇତିହାସରେ କେବେ ଲିପିବଦ୍ଧ ହୋଇଛି ତାହା ଜାଣିନାହିଁ । କିନ୍ତୁ ଏଭଳି ରଣକୌଶଳ ଓଡ଼ିଶାରେ କେଉଁଠି ହୋଇଥିଲା ପରି ମୋର ମନେହୁଏନା ।

ବୀରବର ସାମନ୍ତଙ୍କର ଜନପ୍ରିୟତା ବଢ଼ିଲା ଯେପରି ତାଙ୍କ ବିରୁଦ୍ଧରେ ଭାରତୀୟ ଜାତୀୟ କଂଗ୍ରେସରେ ଈର୍ଷା ବଢ଼ିଲା ସେହିପରି । ସେ ବିହାର ଓଡ଼ିଶା ଲେଜିସଲେଟିଭ କାଉନ୍‌ସିଲକୁ ନିର୍ବାଚିତ ହେଲେ । ପରବର୍ତ୍ତୀ କାଳରେ ତାଙ୍କୁ ପ୍ରାର୍ଥୀ ନକରିବାକୁ ମସୁଧା ଚାଲିଥିବାର ସୁରାକ ପାଇ ସେ ଆପଣା ତରଫରୁ ପ୍ରାର୍ଥୀ ନହେବା ପାଇଁ ପ୍ରସ୍ତାବ ଦେଇ ନେତୃତ୍ୱକୁ ସ୍ତବ୍ଧକରିଦେଇଥିଲେ ।

କୌଣସି କାରଣରୁ ସେ ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇପାରିନଥିଲେ । ନୀଳକଣ୍ଠ, ଗୋଦାବରୀଶ ପ୍ରଭୃତିଙ୍କ ସହିତ ତାଙ୍କର ସୌହାର୍ଦ୍ଦ୍ୟ ବା ସେମାନଙ୍କ ପ୍ରତି ଅନୁରକ୍ତି ଯୋଗୁଁ ବା କୌଣସି କାରଣରୁ ଏହା ଘଟିଥିଲା, କିନ୍ତୁ ଏହା ତାଙ୍କର ଜନପ୍ରିୟତାକୁ କ୍ଷୁଣ୍ଣ କରିନଥିଲା, କାରଣ ସବୁବେଳେ ଲୋକଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ନିବିଡ଼ । ପରବର୍ତ୍ତୀ କାଳରେ ଏହା ପ୍ରମାଣିତ ହୋଇଛି– ଯେତେବେଳେ ସେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ଉପବାଚସ୍ପତି ହୋଇଛନ୍ତି । ପତ୍ନୀ ଶ୍ରୀମତୀ ରତ୍ନମାଳି ଜେମା ଓ କମ୍ୟୁନିଷ୍ଟ ଲୋକନାଥ ଚୌଧୁରୀ ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି ତାଙ୍କର ଆଶୀର୍ବାଦ ଓ ସାହାଯ୍ୟ ଲାଭ କରି । ବେଶ୍ କୌତୁହଳପ୍ରଦ ସେ କାହାଣୀ । ଏକମାତ୍ର ପୁତ୍ର ବିଶ୍ୱମ୍ଭର ସାମନ୍ତ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ନାରାୟଣ ବୀବର ସାମନ୍ତ କଂଗ୍ରେସ ନେତାଙ୍କୁ ପ୍ରସ୍ତାବ ଦେଲେ ସେ

ପ୍ରଚାରକୁ ଯିବେନାହିଁ କଂଗ୍ରେସ ପ୍ରାର୍ଥୀଙ୍କ ପାଇଁ, ଏବଂ ତାଙ୍କ ପୁଅ ବିଶ୍ୱମ୍ଭର ଯିବେନାହିଁ କମ୍ୟୁନିଷ୍ଟ ପ୍ରାର୍ଥୀଙ୍କ ପ୍ରଚାର ପାଇଁ । କର୍ତ୍ତୃପକ୍ଷ ରାଜିହେଲେ । କମ୍ୟୁନିଷ୍ଟ ପାର୍ଟି ପାଇଁ ପରୋକ୍ଷରେ ଏହା ସୁବିଧା ହେଲା । ଲୋକେ ବିଶେଷତଃ ଧୀବରମାନେ ଆସିଲେ ସାଆନ୍ତ (ନାରାୟଣ ବୀରବର ସାମନ୍ତ ଏହି ନାମରେ ପରିଚିତ)ଙ୍କ ପାଖକୁ କଟକକୁ । ସେ ସେମାନଙ୍କୁ କହିଲେ "ମୁଁ କଂଗ୍ରେସ ଦଳର ଲୋକ, କିନ୍ତୁ ମୁଁ ତୁମକୁ କହିଲେ କ'ଣ ଶୁଣିବ ? କାରଣ ତୁମେ ଯାହା କର, କମ୍ୟୁନିଷ୍ଟମାନେ ସେଇଆ କରନ୍ତି । ତମେ ସମସ୍ତେ ଏକାଠି ମାଛମାର, ଯାହା ମିଳେ ତାକୁ ସମସ୍ତେ ସମାନ ଭାବରେ ବାଣ୍ଟିନିଅ । ତେଣୁ ତମେମାନେ ତ ସେମାନଙ୍କୁ ଭୋଟ ଦେବ । ମୁଁ କହି ଲାଭ କ'ଣ ?"ଲୋକେ ଏଇଥିରୁ ସବୁ ବୁଝିଗଲେ । ଏଇଥିରୁ ନାରାୟଣ ବୀରବର ସାମନ୍ତଙ୍କ ବିଚକ୍ଷଣତାର ପ୍ରମାଣ ମିଳେ ।

ବଙ୍ଗଳାର ଜଣେ ପ୍ରସିଦ୍ଧ କଂଗ୍ରେସ ନେତାଙ୍କର ଝିଅ ସହିତ ଜଣେ କମ୍ୟୁନିଷ୍ଟ ପ୍ରେମପାଶରେ ଆବଦ୍ଧ ହେଲେ । ପୁଲିସ ଆକ୍ରମଣ ଭୟରେ ସେ ଦୁହେଁ ପଳାଇ ଆସିଲେ କଟକ । ବିଶ୍ୱମ୍ଭର ସାମନ୍ତଙ୍କର ବନ୍ଧୁଭାବରେ ସେମାନେ ଆସି ପହଞ୍ଚିଲେ ଜୋବ୍ରାସ୍ଥିତ କୁଜଙ୍ଗ କୁଟୀରରେ ଏବଂ ସେହିଠାରେ ନାରାୟଣ ବୀରବର ସାମନ୍ତ ସେମାନଙ୍କୁ ବିବାହ କରାଇଦେଲେ ଜୋବ୍ରାସ୍ଥିତ ଏକ ମଠରେ, ଯାହାର କର୍ତ୍ତା ଏକଦା ସ୍ୱାଧୀନତା ସଂଗ୍ରାମୀ ଥିଲେ । ସେମାନଙ୍କୁ ଅନୁଧାବନ କରି ପହଞ୍ଚିଲେ ବଙ୍ଗଳାର ଏକ ତରୁଣ କଂଗ୍ରେସ ନେତା ଯାହାଙ୍କର କି ସେ ଝିଅକୁ ବିବାହ କରିବାର ମସୁଧା ଥିଲା । ବଙ୍ଗଳାର ମୁଖ୍ୟମନ୍ତ୍ରୀ, ଘରୋଇ ମନ୍ତ୍ରୀ ଏବଂ ଆଇ.ଜି. ପୁଲିସଙ୍କ ପାଖରୁ ସେ ଚିଠି ଆଣିଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଘରୋଇ ମନ୍ତ୍ରୀ ଏବଂ ଆଇ.ଜି. ପୁଲିସଙ୍କ ପାଖକୁ । ବର କନ୍ୟା ବିଶ୍ୱମ୍ଭର ସାମନ୍ତଙ୍କ ଘରେ ଥାଇପାରନ୍ତି, ଏ ଖବର ତାଙ୍କୁ ଦେଇଥିଲା ବଙ୍ଗଳା ପୁଲିସ । ସେ ଆସି ପହଞ୍ଚିଲେ କୁଜଙ୍ଗ କୁଟୀରରେ । ଭେଟିଲେ ରଜତଶ୍ମଶ୍ରୁଧାରୀ, ଖଦଡ଼ ପରିହିତ କଂଗ୍ରେସ ନେତା ସାମନ୍ତଙ୍କୁ । ଦାଢ଼ି ଆଉଁସି ଆଉଁସି ସାମନ୍ତ ତାଙ୍କୁ କହିଲେ ଯେ, ବର୍ତ୍ତମାନ ଏ ସଂଗ୍ରାମ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ, ତେଣୁ ସେ ତାଙ୍କୁ ନିଶ୍ଚିତ ଭାବରେ ସାହାଯ୍ୟ କରିବେ ଏବଂ ପୁଅଝିଅ କେଉଁଠି ଅଛନ୍ତି ତାଙ୍କୁ ଠାବ କରିବେ, ତା' ପରେ ମୁଖ୍ୟମନ୍ତ୍ରୀ, ଘରୋଇ ମନ୍ତ୍ରୀ ଓ ପୁଲିସ ଆଇ.ଜି.ଙ୍କ ପାଖକୁ ସାଙ୍ଗହୋଇଯିବେ । ସାଆନ୍ତଙ୍କ ଚେହେରା ଓ କଥାକହିବାର ଢଙ୍ଗ ଠାଣି ଦେଖି ସେ ମୁଗ୍ଧ । ଏହାପରେ ତିନିଚାରିଦିନ ଗଲା, ଅଥଚ ସେହି ଘରର ଆଉ ଏକ କୋଠରୀରେ ପୁଅ ଝିଅ ଥାଆନ୍ତି, ତା'ର ଟେର୍ ବି ସେଇ ତରୁଣ ବଙ୍ଗୀୟ ନେତା ଜଣକ ପାଇପାରିନଥାନ୍ତି । ଏଣେ ବିବାହ ସରିଯାଇଥାଏ । ବାବା (ସାମନ୍ତ) କହିଲେ ସେହି ଯୁବନେତାଙ୍କୁ ଯେ, ସେ ସନ୍ଧାନ ପାଇଛନ୍ତି ସେ ପୁଅ ଓ ଝିଅର ଏବଂ ଜଣେ ମଧ୍ୟସ୍ଥି ଜରିଆରେ ସେ ତାଙ୍କ ସହିତ ଭେଟ

କରାଇଦେବେ । ଆଇ.ଏନ୍.ଜି.ବି. ଅମୂଲ୍ୟ କୃଷ୍ଣ ରାୟଙ୍କ ତତ୍କାଳୀନ ବାସଭବନରେ ହେଲା ସାକ୍ଷାତ । ସାଆନ୍ତେ ଶିଖାଇଦେଇଥିଲେ ସେଇ ଝିଅକୁ କହିବା ପାଇଁ ଯେ, ସେ ସେଇ ଯୁବକ ସହିତ କଲିକତା ଫେରିଯିବା ପାଇଁ ରାଜି, କିନ୍ତୁ ସେ ଅନ୍ତଃସତ୍ତ୍ୱା । ନାଟକୀୟ ଭଙ୍ଗୀରେ ସେ ଝିଅଟି ସେଇଆ କହିଲା । ଏସବୁ ଥିଲା ମନଗଢ଼ା । ବର୍ତ୍ତମାନ ଦେଖ ମଜା – ଝିଅ କହୁଛି ଯିବ, ଅଥଚ ଝିଅକୁ ନେବାପାଇଁ ଆସିଥିବା ପୁଅ କହୁଛି ଯେ, ''ନା, ଥାଉ'' – କାରଣ ସେ ଅନ୍ତଃସତ୍ତ୍ୱା । ମୁଖ୍ୟମନ୍ତ୍ରୀ, ଘରୋଇ ମନ୍ତ୍ରୀ, ଆଇ.ଜି.ଙ୍କ ପାଖକୁ ଯିବା ଆଉ ଦରକାର ପଡ଼ିଲା ନାହିଁ ।

ନାରୟଣ ବୀରବର ସାମନ୍ତ ନିର୍ବିକାର, ନିର୍ଲିପ୍ତ । କୁଜଙ୍ଗ କୁଟୀର ଉପରେ ଚାଳ ମରାମତି ହୋଇନାହିଁ, ପାଣି ଗଳୁଛି । ଶେଷକୁ ଦେଖାଗଲା ଯେ, ସାଆନ୍ତେ ଏକ ଛତା ମୁଣ୍ଡ ଉପରେ ଟେକି ବସିଛନ୍ତି, ପାଣି ଗଳୁଛି ଘରଯାକ । ସେ କିନ୍ତୁ ନିର୍ଲିପ୍ତ ଭାବରେ ବସିଛନ୍ତି ରାତି ପରେ ରାତି । ଘରୁ ଚୋରିହୋଇଛି । ଯେ ନେଇଛି ସେ ଜଣାପଡ଼ିଲାଣି । ସେ ପୁଲିସ ଥାନାକୁ ଯିବେ କ'ଣ, ବୁଝି ପଚାରିଲେ ଲୋକଟିର କ'ଣ ଅଭାବ ଥିଲା ଯେ ସେ ଚୋରି କରିବାକୁ ବାଧ୍ୟ ହେଲା । ଏମିତି ମଣିଷକୁ ପାରିବ କିଏ ?

ସାମନ୍ତେ ଉପବାଚସ୍ପତି ଭାବେ କିଣିଥିଲେ ଗାଡ଼ିଟିଏ । ସେ ଗାଡ଼ିଟିକୁ ଦିନେ ଜଣେ ବନ୍ଧୁଙ୍କ ପୁଅ ହଠାତ୍ ମାଗିନେଲେ ଏବଂ ତାଙ୍କ ସାଇକେଲ୍‌ଟି ଛାଡ଼ି ଚାଲିଯାଇଥିଲେ । ସେ ଗାଡ଼ି ଆଉ ଫେରାଇ ନାହାନ୍ତି କି ସାଇକେଲ ନେଇନାହାନ୍ତି । ଏଣେ ଗାଡ଼ିପାଇଁ ଧାର କରିଥିବା ଟଙ୍କା ଶୁଝିବାକୁ ପରୱାନ ଆସି ପହଞ୍ଚିଲାଣି । ଗାଡ଼ି ଗଲା କୁଆଡ଼େ ? କି ଆଶ୍ଚର୍ଯ୍ୟ ମଣିଷ ! ଗାଡ଼ିଟା ମାଗିନେଇ ଫେରାଇ ନାହିଁ କେମିତି ? ସାମନ୍ତ ନିର୍ବିକାର ଚିତ୍ତରେ ଉତ୍ତର ଦେଲେ— ନା, ନା, ସେ ସାଇକେଲଟି ପରା ଦେଇଛି, ସାଇକେଲଟି ଦେଇ ଗାଡ଼ି ନେଇଯାଇଛି । ଆଉ ସେହି ଗାଡ଼ି ଫେରିନାହିଁ, ଯଦିଓ ସାଆନ୍ତେ ଫେରିଗଲେଣି ଆରପାରିକୁ ।

ପାରାଦ୍ୱୀପରେ ସାଆନ୍ତଙ୍କ ଉଆସ ସମ୍ମୁଖରେ ରାଜପରିବାରର ଆରାଧ୍ୟା କନକଦୁର୍ଗାଙ୍କ ମନ୍ଦିର । ଦୁର୍ଗାମୂର୍ତ୍ତି ମୁଣ୍ଡା ସୁନାରେ ତିଆରି, ଖଟୁଲି ମଧ୍ୟ । କନକଦୁର୍ଗା ପ୍ରତ୍ୟକ୍ଷ ଦେବୀ । ହଠାତ୍ ସେ ମୂର୍ତ୍ତି ଖଟୁଲି ସହ ଚୋରିହୋଇଗଲେ ଦିନେ ରାତିରେ । ପୁଲିସ ଧରପଗଡ଼ ହେଲା, ପିଟାପିଟି ହେଲା । ବାବା ଥିଲେ କଟକରେ । ସେ ତୁରନ୍ତ ସବୁ ପୋଲିସ୍ କାର୍ଯ୍ୟାନୁଷ୍ଠାନ ବନ୍ଦକରିବାପାଇଁ ନିର୍ଦ୍ଦେଶ ଦେଲେ ଏବଂ କହିଲେ ଯେ, କନକଦୁର୍ଗା ମୂର୍ତ୍ତିକୁ ନିଜ ପୁତ୍ର ଏବଂ ତାହାର ସହଯୋଗୀମାନେ ସେମାନଙ୍କ ରାଜନୈତିକ ଦଳର ଆର୍ଥିକ ଆବଶ୍ୟକତା ଦୃଷ୍ଟିରୁ କେବଳ ନେଇଯାଇପାରିବେ— ଆଉ କେହି ଏହା ନେଇପାରିବେ ନାହିଁ ଏବଂ ତାହାହିଁ ସତ୍ୟ । ସେ ଏକ ଅନ୍ୟ କାହାଣୀ ।

ପାରାଦ୍ୱୀପ ବନ୍ଦର ପାଇଁ ତାଙ୍କର ଅବଦାନ ଯେପରି ବିପୁଳ, ଗଡ଼କୁଜଙ୍ଗରେ ଜଗନ୍ନାଥ ମନ୍ଦିର ପୁନଃ ପ୍ରତିଷ୍ଠା ଏବଂ ତା'ର ବିକାଶ ପାଇଁ ତାଙ୍କର ଅବଦାନ ମଧ୍ୟ

ବିପୁଳ । ବାବା ଭାରି ଅମାନିଆ । ଅସୁସ୍ଥ ଥାଆନ୍ତି, କିନ୍ତୁ ସାଇକେଲ ପଛରେ ବସି ଚାଲିଆସିବେ ଭୁବନେଶ୍ୱର କାହାକୁ ନମାନି, ଜଗନ୍ନାଥ ମନ୍ଦିରର ବିକାଶ ପାଇଁ କେଉଁ ମନ୍ତ୍ରୀ ବା ଏମ୍.ଏଲ୍.ଏ.ଙ୍କ ସାଙ୍ଗରେ ଆଲୋଚନା ପାଇଁ । ଦିନେ ଦେଖିଲାବେଳକୁ ସେ ମନ୍ତ୍ରୀ ଦାମୋଦର ରାଉତଙ୍କ ଘରେ ଏକ ବିଶାଳ ମ୍ୟାପ୍ ହାତରେ ଧରିଛନ୍ତି । ଡାକ୍ତର ମନାକରିଥିଲା, କିନ୍ତୁ ଟ୍ରେନ୍‌ରେ ଆସିବାକୁ ତ ମନାକରି-ନାହିଁ– ଏହା ଥିଲା ତାଙ୍କର ଯୁକ୍ତି । ବୟସ ହେଲାଣି, କିନ୍ତୁ ସବୁ ତାଙ୍କର ଉଦ୍ଦାମତା ଆଗରେ ହାରମାନିଛି । ସେ କ୍ରମଶଃ ବେଶି ବେଶି ଅମାନିଆ ହୋଇଉଠିଛନ୍ତି । ଅନେକ କାମ, ଅନେକ ସ୍ୱପ୍ନ– ସେଥିପାଇଁ ରାତି ପାଇବ ନାହିଁ । ତେଣୁ ସେ ଅଧିକରୁ ଅଧିକ ଚଞ୍ଚଳ ହୋଇଉଠୁଥିଲେ ।

ଆମେ ଦଳେ– ଶିବାଜୀ, ପ୍ରବୀର୍‌ଦା, ଯୋଗେନ୍‌ଦା, ବ୍ରଜଭାଇନା, ମୁଁ ଏବଂ କିଛି ପରିମାଣରେ ଅଖିଳବାବୁ ତାଙ୍କ ଘରେ ଆମେ ପରିବାରର ସଦସ୍ୟ – ଅତିଥି ନୋହୁଁ । ବାଣୀକୁ ମାମା ବସାଇଦେବେ ଟେବୁଲ୍ ଉପରେ । ବାଣୀ ଗୀତ ଗାଇବ – ଡମ୍ ଡମ୍ ବେଲ୍, ପୁସି ଇନ୍ ଦି ୱେଲ୍ । ମାମା ଯିବେ ଆମ ପାଇଁ ରୋଷେଇ କରିବାପାଇଁ । ଆମେ ଜୋବ୍ରା ଆନିକଟରେ ଗାଧୋଇ, ଜଳଖିଆ ଖାଇ, ବିଦାୟ ନେଇ ବାହାରିପଡୁ କଲେଜ ଛକକୁ । ବାବା କହିବେ– ସେମାନେ ଫେରିବେ । ଖରାଦିନ, ଖରାଛୁଟି – ସତକୁ ସତ ଆମେ ଫେରିବାବେଳକୁ ମାମା ରୋଷେଇ କରିଥିବେ । ଦିନ ଦିନ ସପ୍ତାହ ସପ୍ତାହ ଧରି ଏହା ଚାଲେ ।

ନାରାୟଣ ବୀରବର ସାମନ୍ତ ଏକ ଇତିହାସ– ବିଂଶଶତାବ୍ଦୀର ଚଳନ୍ତି ଇତିହାସ । ଜାନକୀବାବୁ ଥାଆନ୍ତି ମୁଖ୍ୟମନ୍ତ୍ରୀ । ଦିନେ ହଠାତ୍ ଦେଖିଲାବେଳକୁ ତାଙ୍କ ପାଖରେ ଥୁଆହୋଇଛି ଏକ ବିରାଟ ଗ୍ରନ୍ଥ, ଯୋଗବାଶିଷ୍ଠ ରାମାୟଣ, ଅନୁବାଦକ ହେଉଛନ୍ତି ନାରାୟଣ ବୀରବର ସାମନ୍ତ ।

ଜମି ଥିଲା ବହୁତ, ଘର ଥିଲା କଟକରେ, ଜମି ବି ଥିଲା ଭୁବନେଶ୍ୱରରେ । କୁଆଡ଼େ ଗଲା, କିଏ ନେଲା, କେମିତି ନେଲା, କିଏ କହିବ ? ପେନ୍‌ସନ୍ ମିଳେ ବିଧାନ ସଭାର ପୂର୍ବତନ ସଭ୍ୟଭାବରେ, ସ୍ୱାଧୀନତା ସଂଗ୍ରାମୀ ଭାବରେ, କୁଆଡ଼େ ଯାଏ ସେ ଅର୍ଥ ? ବାବା ନିରୁତ୍ତର ଯାହା ପଚାରିଲେ ।

ଏଭଳି ମଣିଷ ମିଳିବା କଠିନ । ସେ ଥିଲେ ଇତିହାସ, ଏକ ଚଳନ୍ତି ଇତିହାସ ।

ଦି ୟୁନିଭର୍ସ
ମୈତ୍ରୀ ସରଣୀ, କଟକ-୧

—

ପରିଶିଷ୍ଟ–୨

# ଶତାବ୍ଦୀର ସୂର୍ଯ୍ୟାସ୍ତ

– ଗୋଲାପରାଣୀ ସାହୁ

ଶତାବ୍ଦୀର ପ୍ରାରମ୍ଭରେ ନାରାୟଣ ବୀରବର ସାମନ୍ତ ଆବିର୍ଭୂତ ହୋଇଥିଲେ ଦୀପ୍ତିମନ୍ତ ସୂର୍ଯ୍ୟଭଳି । ତାଙ୍କ ପ୍ରଜ୍ଞାରେ ଆଲୋକିତ କରିଥିଲେ କେବଳ କୁଜଙ୍ଗ ନୁହେଁ ସାରା ଓଡ଼ିଶା ଭୂଖଣ୍ଡକୁ । କେନ୍ଦ୍ରାପଡ଼ାର ଇନ୍ଦୁପୁରରୁ ଆରମ୍ଭ ହୋଇ ଆଠଗଡ଼ଯାଏ ଲମ୍ବିଯାଇଥିଲା ଜୀବନର ପଥ । ସେଠାରୁ ଆଲୋକ ରେଖା ବିଚ୍ଛୁରିତ ହୋଇଆସିଲା ବଣିକୁଦକୁ ଓ ସେଠାରୁ ପାରାଦ୍ୱୀପ ଗଡ଼କୁ । କିନ୍ତୁ ଶେଷ ସମୟରେ ତାହା ଅସ୍ତମିତ ହେଲା ଜଟଣିରେ ଥିବା ସାନଝିଅର ସରକାରୀ ବାସଭବନରେ ୧୯୯୯ ମସିହା ଏପ୍ରିଲ ୯ ତାରିଖରେ ।

ଏ ସଂବାଦ ପ୍ରଚାରିତ ହେଲାମାତ୍ରେ ସାରା ମୁଲକ ଶୋକାଭିଭୂତ ହୋଇପଡ଼ିଲା । ବିଶାଳ ଜନ ପଟୁଆର ଛୁଟିଚାଲିଲା ପାରାଦ୍ୱୀପଗଡ଼ର ନଅର ଅଭିମୁଖେ । ଦେହାନ୍ତଖବର ପ୍ରଚାର ହେବା ସଙ୍ଗେ ସଙ୍ଗେ ନଅରର ବାଡ଼ି ଅଗଣା ପରିଷ୍କାର ପରିଚ୍ଛନ୍ନ କରାଗଲା– ସତେ ଯେପରି କେହି ଆଗନ୍ତୁକ ଏହିକ୍ଷଣି ପହଞ୍ଚିଯିବେ । ମରଶରୀର ପହଞ୍ଚିବା ପୂର୍ବରୁ ପୁଲିସବାହିନୀ ପହଞ୍ଚି ସାରିଥିଲେ । ଲୋକେ କୁହାକୁହି ହେଉଥାନ୍ତି ସାମନ୍ତଙ୍କୁ କେଉଁଠାରେ ସମାଧି ଦିଆଯିବ ? କିଏ କହୁଥାଏ ସାମନ୍ତଙ୍କ ଇଚ୍ଛାଥିଲା ଉଦର୍ଯବଟରେ ଶେଷ ବିଶ୍ରାମ ନେବେ । କିଏ କହୁଥିଲା ରାଜାଘର ପରମ୍ପରା ଅନୁଯାୟୀ ତାଙ୍କ ନିଜସ୍ୱ ଶ୍ମଶାନରେ ସମାଧି ନେବେ । କିନ୍ତୁ ସେ ସବୁ ଥିଲା ବିବଦମାନ । ନଅରର ସମ୍ମୁଖଭାଗ ସ୍ଥାନ ସମାଧି ପାଇଁ ସ୍ଥିରକରାଯାଇ ପରିଷ୍କାର କରାଗଲା ଏବଂ ସମାଧି ପାଇଁ ଉପକରଣ ସବୁ ଠିକ୍ ହୋଇ ରଖାଗଲା । ଅତି ପ୍ରିୟ ସାମନ୍ତେ (ବାବା)ଙ୍କ ପାଇଁ ଲୋକେ ଆଗଭର ହୋଇ ମାଟି ଖୋଳି ବିରାଟ ସମାଧି ଗର୍ତ୍ତଟିଏ କରିଦେଲେ ।

ସୂର୍ଯ୍ୟାସ୍ତ ପୂର୍ବରୁ ହିଁ ମରଶରୀର ଆସି ପହଞ୍ଚିଗଲା । କି ପ୍ରବଳ ଜନସମାଗମ ! କ'ଣ ଯାତ୍ରା ମେଳା ହେଉଛି କି ? ପିଲା ବୁଢ଼ାଠାରୁ ଆରମ୍ଭ କରି ଭୁଆଷୁଣୀ ପର୍ଯ୍ୟନ୍ତ ସମସ୍ତେ ଚାଲିଥାନ୍ତି ନଅର ଦିଗରେ । ଯିଏ ଦିନେ ବି ସାମନ୍ତଙ୍କୁ ଦେଖିନି କେବଳ ଶୁଣିଛି ମାତ୍ର, ତା'ର ମଧ୍ୟ ଆଗ୍ରହ ସେହି ଲିଭିଯାଇଥିବା ଦୀପଟିକୁ ଟିକେ ପ୍ରଣାମ କରିବ ।

ବାହାର ଅଗଣାରେ ମରଶରୀରକୁ ରଖାଗଲା । ଜାଳିଦିଆଗଲା ଅଜସ୍ର ଧୂପବତୀ । ବିଭିନ୍ନ ପ୍ରକାର ପୁଷ୍ପରେ ମଣ୍ଡିତ କରିଦିଆଗଲା ମରଶରୀରକୁ । ଶତାବ୍ଦୀପୁରୁଷ ଥକିପଡ଼ି ସତେ ଯେପରି ବିଶ୍ରାମ ପାଇଁ ଟିକେ ଶୋଇଯାଇଛନ୍ତି । ଶେଷଦର୍ଶନ କରିବାପାଇଁ ଆସିଥାନ୍ତି କେନ୍ଦ୍ରମନ୍ତ୍ରୀ ଶ୍ରୀଯୁକ୍ତ କାହ୍ନୁଚରଣ ଲେଙ୍କା । ପଚାରୁଥାନ୍ତି ଅତି ଆତ୍ମୀୟ ଭାବରେ— ସାମନ୍ତଙ୍କ ପାଇଁ କ'ଣ କରାଯାଇପାରେ ? କିନ୍ତୁ ମାମା କିଛି ଉତ୍ତର ଦେଇପାରୁନଥାନ୍ତି । କେବଳ ଏତିକି କହୁଥାନ୍ତି, ''ମତେ କିଛି ପଚାରନା, ବାଣୀକୁ ପଚାର, ବେଙ୍ଗକୁ ପଚାର ।'' ଅତି ଦୁଃଖରେ ସେ ମ୍ରିୟମାଣା । କି ଉତ୍ତର ବା ଦେବେ ! ଆସିଥିଲେ ବିଧାୟକ ବିଜୟ ନାୟକ, ମନ୍ତ୍ରୀ ବସନ୍ତ ବିଶ୍ୱାଳ— ଅନେକ ମାନ୍ୟଗଣ୍ୟ ବ୍ୟକ୍ତି— ଅଜାଡ଼ିଦେଇଥିଲେ ଭକ୍ତିର, ଶ୍ରଦ୍ଧାର, ଲୋତକର ପୁଷ୍ପ ସ୍ତବକ ।

ନଅର ଲୋକାରଣ୍ୟ । କାହିଁ କେତେଦୂରରୁ ଆସିଥାନ୍ତି ଲୋକମାନେ – ତାଙ୍କର ପ୍ରିୟ ମଣିଷଟିକୁ ଶେଷ ସମୟରେ ଟିକେ ଦେଖିଯିବେ – ପାଦଛୁଇଁ ପ୍ରଣାମ କରିଯିବେ । ସୂର୍ଯ୍ୟାସ୍ତ ପୂର୍ବରୁ ତାଙ୍କ ମରଶରୀରକୁ ଅଗଣାରୁ ବଗିଚା ମଧ୍ୟକୁ ନିଆଗଲା । ପୁଷ୍ପରେ ସଜ୍ଜିତ ଏକ ଶଯ୍ୟାରେ ରଖାଗଲା । ପୂର୍ଣ୍ଣ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ତୋପ ସଲାମି ଦିଆଗଲା । ଏହି ଦୃଶ୍ୟ ଦେଖିବା ପାଇଁ ବହୁ ଲୋକ ବଗିଚା ସାରା ବିଛେଇଯାଇଥିଲେ ।

ପାରାଦ୍ୱୀପଗଡ଼ର ଗୋପାଳ ସାହୁ— ପକ୍ଷାଘାତ ରୋଗରେ ପୀଡ଼ିତ— ଉଠିବସିବାର ଶକ୍ତି ନାହିଁ । କିନ୍ତୁ ସାମନ୍ତଙ୍କ ବିୟୋଗ ଖବର ଶୁଣି ଆଖିରୁ ବହିଯାଉଥାଏ ଧାର ଧାର ଲୁହ । ପୁଅକୁ ଅନୁରୋଧ କଲେ, ମତେ ଯେମିତି ହେଉ ନେଇଚାଲ ମୁଁ ଟିକେ ଦେଖିବି । ଛୋଟ ପିଲା ଯାତ୍ରା ଦେଖି ଯିବା ଭଳି ପୁଅ କାନ୍ଧରେ ବସି ଆସିଲେ ନଅରକୁ । ଆପଣାର ମଣିଷକୁ ଟିକେ ଛୁଇଁଦେବେ, ଫୁଲଟିଏ ଦେବେ ପାଦତଳେ, ଏତିକି ତାଙ୍କର କାମନା । ଏଭଳି ଶତାବ୍ଦୀ ପୁରୁଷକୁ ଟିକେ ଦେଖିଦେଲେ ହିଁ ଆତ୍ମା ଶାନ୍ତି ପାଇବ ।

କୀର୍ତ୍ତନ ମଣ୍ଡଳୀଙ୍କ ଦ୍ୱାରା ନାମ ଗାନ କରାଯାଉଥାଏ । ହରିବୋଲ ଧ୍ୱନିରେ ସମଗ୍ର ଗଡ଼ ଗାଁଟି ଉଚ୍ଛୁଳି ଉଠୁଥାଏ । ''ସାମନ୍ତ ଅମର ରହେ'' ଶବ୍ଦରେ ଗଗନ ପବନ ମୁଖରିତ ହୋଇଉଠୁଥାଏ । ଶ୍ରୀମା ବିଦ୍ୟାପୀଠର ଛାତ୍ରଛାତ୍ରୀଙ୍କର ଲମ୍ବା ଧାଡ଼ି ଲମ୍ବିଯାଇଥାଏ ମରଶରୀର ପର୍ଯ୍ୟନ୍ତ । ସମସ୍ତଙ୍କ ହାତରେ ମୁଠାଏ ମୁଠାଏ ଫୁଲ— ଭକ୍ତିର ପୁଷ୍ପାଞ୍ଜଳି । ଆସିଥାଆନ୍ତି ସାମନ୍ତଙ୍କ ନାମରେ ନାମିତ ମହାବିଦ୍ୟାଳୟର ଛାତ୍ରଛାତ୍ରୀ ଓ ଅଧ୍ୟାପକ ଅଧ୍ୟାପିକା ଗଣ । କେତେକ ସାମନ୍ତପ୍ରେମୀ ବ୍ୟକ୍ତି ସେଠାରେ ରୁଣ୍ଡ ହୋଇଥାନ୍ତି, ତା'ର ହିସାବ କିଏ ବା ରଖୁଛି ? ସମସ୍ତେ ଅପଲକ ନୟନରେ

ଚାହିଁ ରହିଛନ୍ତି ସେହି ପ୍ରବାଦପୁରୁଷ ସାମନ୍ତଙ୍କ ନିଷ୍ପ୍ରଭ ମୁଖମଣ୍ଡଳକୁ । ବିଶ୍ୱାସ କରିହେଉନି ଏଡ଼ିକି ଟିକେ ଲୋକ ମୁଣ୍ଡରେ ଯେ କିପରି ଏତେ ଜ୍ଞାନ, ବୁଦ୍ଧି ଲୁଚିରହିଥିଲା !

ସୂର୍ଯ୍ୟ ଲୁଚିଗଲେ ପଶ୍ଚିମ ଆକାଶରେ । ତା' ପରେ ପରେ ସାମନ୍ତଙ୍କ ମରଶରୀରକୁ ସମାଧିସ୍ଥ କରାଗଲା । ପୁଅ ବିଶ୍ୱମ୍ଭର ସାମନ୍ତ ହେଉଛନ୍ତି ପଣ୍ଡିଚେରୀ ଆଶ୍ରମର ସାଧକ, ତେଣୁ ସମସ୍ତ କ୍ରିୟାକର୍ମ କନିଷ୍ଠାକନ୍ୟା ଡାକ୍ତର ବାଣୀ ସାମନ୍ତ ହିଁ ସମ୍ପାଦନ କଲେ । ଲୁଚିଗଲେ କୁଜଙ୍ଗର ଗାନ୍ଧି, ଆଉ ଏକ ଗୋପବନ୍ଧୁ, ଗରିବର ସଖା, ଅନ୍ୟତମ ଶ୍ରେଷ୍ଠ ସଂଗ୍ରାମୀ, ଖ୍ୟାତନାମା କବି ତଥା ଲେଖକ, ଚିରଦିନ ପାଇଁ । ସମବେତ ଜନତାଙ୍କ ହୃଦୟରୁ ଝରୁଥିଲା ଅବାରିତ ଲୁହଧାରା, ଏଇ ଛୋଟିଆ ମଣିଷଟି ପାଇଁ ।

ମୃତ୍ୟୁସିନା କୋଳେଇନେଲା ପାର୍ଥିବ ଶରୀରକୁ, କିନ୍ତୁ ସେ ରହିଗଲେ ସମସ୍ତଙ୍କ ହୃଦୟରେ ଚିର ଜାଜ୍ୱଲ୍ୟମାନ ଦୀପଶିଖାଟିଏ ହୋଇ । ତାଙ୍କ କୀର୍ତ୍ତି ତାଙ୍କୁ ଚିରଦିନ ପାଇଁ ଅମର କରି ରଖିଥିବ । ଏ ଜାତି, ଏ ମୁଲକ ତାଙ୍କ ନାମ ଉଚ୍ଚାରଣ କରୁଥିବ ପ୍ରତ୍ୟେକ ବାକ୍ୟରେ । ସେ ଇତିହାସ ପାଲଟିଗଲେ ମଧ୍ୟ ତାଙ୍କ ପ୍ରେରଣା, ତାଙ୍କ ଆଦର୍ଶ ଆଗାମୀ ବଂଶଧରଙ୍କ ପାଇଁ ପଥପ୍ରଦର୍ଶକ ହୋଇ ରହିବ ।

ସେହି କିଂବଦନ୍ତୀପୁରୁଷଙ୍କୁ ଆମ ସମସ୍ତଙ୍କର ଭକ୍ତିପୂତ ବିନମ୍ର ପ୍ରଣତି । ଅମର ସାମନ୍ତେ, ଅମର ଆମ ବାବା ।

ପାରାଦ୍ୱୀପଗଡ଼

—

